# ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ

# ŚRI BHANJABHUMI KENDUJHARI

## ପ୍ରଥମ ଭାଗ

ପ୍ରଥମ ସଂସ୍କରଣ—୧୯୫୦

ପ୍ରଥମ ପ୍ରକାଶ—୧୯୮[illegible]

ପ୍ରଣେତା—ଶ୍ରୀ ବିପିନ ବିହାରୀ ଦାସ

# ଶ୍ରୀ ଭଞ୍ଜଭୂମି କେନ୍ଦୁଝରୀ

ପ୍ରଣେତା — ଶ୍ରୀ ବିପିନ ବିହାରୀ ଦାସ



ପ୍ରକାଶକ

ଶ୍ରୀ ବିପିନ ବିହାରୀ ଦାସ

ନୀଳାଚଳ ପ୍ରିଣ୍ଟିଂ ୱାର୍କସ

ବଡ଼ବିଲ-୭୫୮୦୩୫

କେନ୍ଦୁଝର



ମୁଦ୍ରାକର

ଶ୍ରୀ ବିପିନ ବିହାରୀ ଦାସ

ନୀଳାଚଳ ପ୍ରିଣ୍ଟିଂ ୱାର୍କସ

ବଡ଼ବିଲ-୭୫୮୦୩୫

କେନ୍ଦୁଝର



— ପ୍ରାପ୍ତି ସ୍ଥାନ —

ନୀଳାଚଳ ପ୍ରିଣ୍ଟିଂ ୱାର୍କସ

ବଡ଼ବିଲ, କେନ୍ଦୁଝର



ମୂଲ୍ୟ-ଦଶଟଙ୍କା

ବନ୍ଧାଇ—ବାରଟଙ୍କା

# ମୁଖବନ୍ଧ

ପ୍ରଥମ ଭାଗ । ପ୍ରଥମ ସଂସ୍କରଣ

ଦେବ ସ୍ନାନ ପୂର୍ଣ୍ଣିମା ୧୯୮୦

ନଗ-ନଦୀ-ନଦୀ-ନଗର ପରିଶୋଭିତ "ଶ୍ରୀ ଭଞ୍ଜଭୂମି କେନ୍ଦୁଝର" ପୁସ୍ତକର ଲେଖକ ଭାବରେ ମୁଁ ତାହାର ମୁଖବନ୍ଧ ଲେଖୁଅଛି । କାରଣ ଏକ ଅନାମଧେୟ ଲେଖକ ଭାବରେ ଗୋଟିଏ ଅଜ୍ଞାତ ଅଞ୍ଚଳର ଇତିହାସ ରଚନା କରି ତାହାର ପ୍ରଶଂସା ମୂଳକ ମୁଖବନ୍ଧ ଜଣେ ସୁନାମଧେୟ ବ୍ୟକ୍ତିଙ୍କ ଠାରୁ ଲେଖାଇ ନେବାକୁ ମୁଁ ଶ୍ରେୟ ମନେ କରିନାହିଁ । ଏହି ପୁସ୍ତକ ରଚନା କରିବାକୁ ମୁଁ ଯେଉଁ ଦୁଃସାହାସିକ ଉଦ୍ୟମ କରିଛି ତାହାର ମୂଳରେ ରହିଛି ପୁଣ୍ୟତୋୟା ବୈତରଣୀ ନଦୀର ସୂତିକାଗାର ଗୋନାସିକା ପର୍ବତର ସର୍ପଗୁମ୍ଫା ଭିତରୁ ମିଳିଥିବା ଶାଶ୍ୱତ ପ୍ରେରଣା ।

କୁଶଭଦ୍ରା ନଦୀ ଉପକଣ୍ଠରେ ଅବସ୍ଥିତ ମୋର ପ୍ରିୟ କର୍ମଭୂମି କେନ୍ଦୁଅ ଗ୍ରାମ ଠାରୁ ମୁଁ ଆରମ୍ଭ କଲି ପଦଯାତ୍ରା ।

କେନ୍ଦୁଝର ଜିଲ୍ଲାର ବନ୍ଧୁରମୟ ଘନ ବନ ପ୍ରଦେଶରେ ନିର୍ଜ୍ଜନ ପଦଯାତ୍ରା । ଦୁର୍ଗମ ଗିରି ଗହ୍ୱରରେ ସତ୍ୟର ସନ୍ଧାନ । ଝରଣାର ଜଳ, ଦରିଦ୍ରା ଅଁଳା ପକ୍ୱ ଫଳର ଭୋଜନ ଓ କେବେ କେବେ ଗିରିଜନ ବସ୍ତିରେ ଅନ୍ନ ଆହାର କରିବାକୁ ପଡ଼ିଛି । ଏହିପରି ପ୍ରାୟ ଏକମାସ କାଳ ବନ ପ୍ରଦେଶରେ ପଦଯାତ୍ରା କରି ମୁଁ ଫାଲ୍‌ଗୁନ ସଂକ୍ରାନ୍ତି ଦିନ ସନ୍ଧ୍ୟା ସମୟରେ ଗୋନାସିକା ଠାରେ ପହଞ୍ଚିଲି । ୩୨୧୯ ଫୁଟ ଉଚ୍ଚତା ବିଶିଷ୍ଟ ଗୋନାସିକା ଗିରିର ପାଦ ଦେଶରେ ଗୋନାସିକା ଗ୍ରାମ ଅବସ୍ଥିତ । ଏହି ଗ୍ରାମରେ ଭୂୟାଁ ଜାତିର ଲୋକେ ବିଶେଷ ଭାବରେ ବାସ କରନ୍ତି । ଏହି ଗୋନାସିକା ଗ୍ରାମରେ ଶ୍ରୀ ବ୍ରହ୍ମେଶ୍ୱର ବିଗ୍ରହ, ମନ୍ଦିର ଓ ବ୍ରହ୍ମକୁଣ୍ଡ ଅବସ୍ଥିତ । ବୈତରଣୀ ନଦୀ ଗୋନାସିକା ପର୍ବତର ୩୧୦୦ ଫୁଟ ଉଚ୍ଚରୁ ନିମ୍ନକୁ ବହି ଆସି ପର୍ବତର ପାଦ ଦେଶରେ ବ୍ରହ୍ମକୁଣ୍ଡ ଠାରେ ସଞ୍ଚିତ ହେଉଅଛି । ଏହା ଆଦ୍ୟ ବୈତରଣୀ ତୀର୍ଥ କ୍ଷେତ୍ର ଅଟେ ।

ବ୍ରହ୍ମେଶ୍ୱରଙ୍କ ମନ୍ଦିର ଠାରୁ ପ୍ରାୟ ୩୧୦୦ ଫୁଟ ଉଚ୍ଚରେ ଶୀର୍ଷ ବୈତରଣୀ ତୀର୍ଥ ଅବସ୍ଥିତ । ସେହିଠାରୁ ବୈତରଣୀର ସର୍ବଦା ଜଳଧାର ଗୋନାସାରୁ କୁଶାଗ୍ର ପରିମାଣ ନିର୍ଗତ ହୋଇ ତ୍ରିବେଣୀ କୁଣ୍ଡରେ ସଞ୍ଚିତ ହୋଇ ପ୍ରଖର ବେଗରେ ବହିଯାଇ ଶ୍ରୀ ବ୍ରହ୍ମେଶ୍ୱରଙ୍କର ଜଟାଜୁଟ ପ୍ରକ୍ଷାଳନ କରି ଶ୍ରୀ ବଲେଇତା କ୍ଷେତ୍ରକୁ ଗମନ କରୁଅଛି । ସେହି ତ୍ରିବେଣୀ କୁଣ୍ଡର ଦକ୍ଷିଣ ପାର୍ଶ୍ୱରେ ସର୍ପଗୁମ୍ଫା ନାମରେ ଏକ ଅନୁଚ୍ଚ ପ୍ରାକୃତିକ ପଥର ଗୁମ୍ଫା ରହିଅଛି । ଏହି ସର୍ପଗୁମ୍ଫାର ସମ୍ମୁଖଭାଗର ଲୋକ ଲୋଚନର ଅନ୍ତରାଳରେ

ମାଟି ଭିତରେ ପୋତି ହୋଇ ରହିଅଛି ଶ୍ରୀ ବୈତରଣୀ ଦେବୀଙ୍କର ପ୍ରତିମୂର୍ତ୍ତି । ସେହି ପ୍ରତିମୂର୍ତ୍ତିର ଅବିକଳ ରୂପ ପୁସ୍ତକର କଭର ପୃଷ୍ଠାର ବ୍ଲକ ହୋଇଅଛି ।

ଗୋନାସିକା ବା ଗୁପ୍ତଗଙ୍ଗା ଗିରିର ଶୀର୍ଷ ଦେଶରେ ଅବସ୍ଥିତ ଶ୍ରୀବୈତରଣୀ ତୀର୍ଥ କ୍ଷେତ୍ର ନୈସର୍ଗିକ ଶୋଭା ସମ୍ଭାରରେ ପରିପୂର୍ଣ୍ଣ ଅଟେ । ନିର୍ଜନ ବନ ପ୍ରଦେଶରେ ଗିରି ନିର୍ଝରିଣୀ ପୁଣ୍ୟତୋୟା ବୈତରଣୀର କଳ କଳ ନାଦ ଦର୍ଶକର ମନରେ ନବ ଝଙ୍କାର ସୃଷ୍ଟି କରେ । ମୁଁ ସର୍ପ ଗୁମ୍ଫା ଠାରେ ହଠାତ୍ ଦେଖିଲି ଜଣେ ଜୀର୍ଣ୍ଣ ଶୀର୍ଣ୍ଣ କାୟ ବୃଦ୍ଧ ସାଧୁ ବସି ଚିଲମ ଟାଣୁ ଅଛନ୍ତି । ମୁଁ ତାଙ୍କୁ ନମସ୍କାର କଲି । ସେ ମୋତେ ବସିବା ପାଇଁ ସଙ୍କେତ ଦେଲେ ମୁଁ ମଧ୍ୟ ବସିଲି । ସାଧୁ ଜଣଙ୍କ ହସ୍ତରେ ଗୋଟିଏ ପଥରର ମସ୍ତକ ଧାରଣ କରିଥାନ୍ତି ଓ ତାଙ୍କର ନାମ ଶକ୍ତିଶୂଳ ଋଷୀ ବୋଲି ସେ କହିଲେ । ସାଧୁଙ୍କର ଅସ୍ଥିମାନ ଶରୀରରୁ ଦିବ୍ୟଜ୍ୟୋତି ବିକଶିତ ହେଉଥିବା ମୁଁ ସ୍ପଷ୍ଟ ଉପଲବ୍ଧ କରୁଥିଲି । ସେହି ସର୍ପ ଗୁମ୍ଫାଠାରେ ମୁଁ ସେହି ସାଧୁବାବାଙ୍କ ଠାରୁ ଯେଉଁ ସବୁ ତଥ୍ୟ ସଂଗ୍ରହ କରିଥିଲି ତାହାହିଁ ହେଉଛି "ଶ୍ରୀ ଭଞ୍ଜଭୂମି କେନ୍ଦୁଝର" ପୁସ୍ତକର ନିର୍ଯ୍ୟାସ ଓ ଶାଶ୍ୱତ ପ୍ରେରଣା ।

ଏହାଛଡ଼ା ପଦଯାତ୍ରା ସମୟରେ ମୋର ହସ୍ତଗତ ହୋଇଥିବା ଗ୍ରାମର ଜାତିଗତ କିମ୍ବଦନ୍ତୀ, କଥା, କାହାଣୀ, ଜନଶ୍ରୁତି, ଗଳ୍ପ, ଢଗ ଢମାଳି, ପ୍ରଭୃତିକୁ ପୁସ୍ତକର ବିଷୟବସ୍ତୁ ରୂପେ ଗ୍ରହଣ କରାଯାଇଅଛି । ଯେଉଁହେତୁ ଭୌଗଳିକ ବିଚ୍ଛିନ୍ନତା ଭିତରେ ଐତିହାସିକ, ସାମାଜିକ, ସାଂସ୍କୃତିକ, ଆର୍ଥନୀତିକ ଓ ରାଜନୀତିକ ଘଟଣା ବିନ୍ୟାସରେ ସଂସ୍କୃତିର ରୂପାନ୍ତରିତ ହୋଇଥାଏ, ସେହେତୁ ପ୍ରତ୍ୟେକ ଅଞ୍ଚଳର ସ୍ୱାତନ୍ତ୍ର୍ୟତା ରହିଅଛି । ଏଣୁ ଅଞ୍ଚଳର ଐକ୍ୟ ଓ ବୈଚିତ୍ର୍ୟ ନିର୍ଣ୍ଣୟ କରିବା ହେଉଛି ଲେଖକର ଅନ୍ତର ନିହିତ ଉଦ୍ଦେଶ୍ୟ । ଏହି ପୃଷ୍ଠ ଭୂମି ଉପରେ "ଶ୍ରୀଭଞ୍ଜଭୂମି କେନ୍ଦୁଝର" ପୁସ୍ତକ ଆଧାରିତ ।

ବୌଦ୍ଧ ଧର୍ମଶାସ୍ତ୍ର ସମୂହକୁ ଭିତ୍ତିକରି ଭଞ୍ଜ ରାଜବଂଶର ସୁଦୃଢ଼ ରାଜନୀତିକ ସ୍ଥିତି ନିର୍ମାଣ କରାଯାଇ ଭଗବାନ ଗୌତମ ବୁଦ୍ଧଙ୍କ ଧର୍ମ ସହାରୁହିଁ ଭଞ୍ଜ ବଂଶର ଆରମ୍ଭ କରାଯାଇଅଛି । ପୁସ୍ତକର ପ୍ରଥମ ଭାଗରେ ପ୍ରାୟ ୩୬୦୦ ବର୍ଷର ଧାର୍ମିକ, ସାଂସ୍କୃତିକ, ସାମାଜିକ, ଆର୍ଥନୀତି ତଥା ରାଜନୀତିକ ଘଟଣାବଳୀ ସନ୍ନିବେଶିତ ହୋଇଅଛି ।

ଶିଳାଲେଖ, ଶୈଳ ଚିତ୍ରାଙ୍କନ, ତାମ୍ର ଶାସନ, ଶାସ୍ତ୍ର ପୁରାଣ, କାଳ୍ପନିକ ତଥା ଅତି ମାନସିକ ତଥ୍ୟ ସମ୍ଭାରରେ ବିଷୟ ବସ୍ତୁ ଉପାଣିତ ହୋଇ ଅଛି । ସୁବିସ୍ତୃତ ସାହିତ୍ୟିକ ପୃଷ୍ଠଭୂମି ଉପରେ ଅନୁସୃତ ହୋଇଅଛି ଭାରତର ପ୍ରାଚୀନତମ ଭଞ୍ଜ ରାଜବଂଶର ଇତିବୃତ୍ତି । କେତେକ କ୍ଷେତ୍ରରେ ଅତୀତର ଭ୍ରମପୂର୍ଣ୍ଣ ସିଦ୍ଧାନ୍ତ ଉପରେ କୁଠାରଘାତ କରାଯାଇ ନୂତନ ଦୃଷ୍ଟିଭଙ୍ଗୀ ଓ ଚିନ୍ତାର ଉନ୍ମେଷ

ହୋଇଅଛି । ଲେଖକ ଇତିହାସର ଧାରାବନ୍ଧା ପରମ୍ପରାରୁ ଓହରି ଯାଇ ସୁପାଠ୍ୟ ଓ ସୁଶ୍ରାବ୍ୟ କରିବା ନିମନ୍ତେ କଥାବସ୍ତୁ ଗାଳ୍ପିକ ଶୈଳୀରେ ପରିବେଷଣ କରିଥିଲେହେଁ ଏହା ଇତିହାସ ରୀତି ଅନୁଯାୟୀ ତଥ୍ୟନିଷ୍ଠ ଅଟେ । ଅତିରଞ୍ଜନ, ତୋଷାମଦି, ସ୍ୱାର୍ଥସାଧନ, ପକ୍ଷପାତିତା ଏଥିରେ ସ୍ଥାନ ପାଇନାହିଁ । ଏହା କେନ୍ଦୁଝର ଓଡ଼ିଶା ଗଡ଼ଜାତ ରାଜ୍ୟର ନିଚ୍ଛକ ଟିପ୍ପଣୀ । ଏହାର ଅବଦ୍ଧ ଜଟିଳ ସାହିତ୍ୟାକାଶରେ ପ୍ରସ୍ଫୁଟିତ ଚନ୍ଦନ କୁସୁମ ସଙ୍କର ଭାଷା ଓ ଭାବରେ ସୁସଜ୍ଜିତ ହୋଇଅଛି ।

ସ୍ୱର୍ଗୀୟ କ୍ଷେତ୍ରମୋହନ ମିଶ୍ରଙ୍କ ରଚିତ କେନ୍ଦୁଝର ଭୂଗୋଳ ଓ ଇତିହାସ ଏବଂ କେନ୍ଦୁଝର ସାହିତ୍ୟ ମାଳାକୁ ସବିଶେଷ ସହାୟକ ଗ୍ରନ୍ଥ ରୂପେ ଗ୍ରହଣ କରାଯାଇଅଛି । ଏହାଛଡ଼ା ପ୍ରାୟ ୨୦୦୦୦ ପୁସ୍ତକ, ପାଣ୍ଡୁଲିପି, ତାଳପତ୍ର ପୋଥି; ପତ୍ର ପତ୍ରିକା, ଗ୍ରନ୍ଥାବଳୀ, ସରକାରୀ ରିପୋର୍ଟ ବେଙ୍ଗଲ, ମୟୂରଭଞ୍ଜ; ସିଂହଭୂମି ଗେଜେଟିୟର ପ୍ରଭୃତିର ସାହାଯ୍ୟ ନିଆଯାଇଅଛି ।

ସର୍ବଶେଷରେ ଏହି ପୁସ୍ତକ ରଚନା ବେଳରେ ପୁରୀ ଜିଲ୍ଲାର ଜଦୟପୁର ଠାରେ ଅବସ୍ଥିତ ବାଣୀନିଧି ପାଠାଗାର ଓ ତାହାର ସମ୍ପାଦକ ମହୋଦୟଙ୍କର ମୂଲ୍ୟବାନ ପରାମର୍ଶ ଓ ପ୍ରେରଣା ଚିରସ୍ମରଣୀୟ ଅଟେ ।

ମୁଁ ଏହି ପୁସ୍ତକର କେବଳ ଲେଖକ ନୁହେଁ । ଏହାର ପ୍ରକାଶକ, ମୁଦ୍ରାକର, ପ୍ରୁଫ୍‌ରିଡର ମଧ୍ୟ ଅଟେ । ଏଣୁ ସବୁ ଜାଣିଥିବା ଲୋକ କହୁ ଜାଣିନଥିବା ନ୍ୟାୟରେ ପୁସ୍ତକରେ ଭ୍ରମ ରହିଯାଇଥିବା ସ୍ୱାଭାବିକ ଅଟେ । ଏହାକୁ ଏକ ପାଣ୍ଡୁଲିପି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଲେଖକ ତାହାର ସମସ୍ତ ଦୋଷ ତ୍ରୁଟି ମାର୍ଜନୀୟ ମନେ କରି ଏହି ପାଣ୍ଡୁଲିପିର ମୂଲ୍ୟାଙ୍କନ ନିମନ୍ତେ ସହୃଦୟ ପାଠକ ମାନଙ୍କ ହାତରେ ବିନମ୍ର ଅର୍ପଣ କରୁଅଛି ।

ପ୍ରଣେତା ।



# – ସୂଚୀପତ୍ର –

# ପ୍ରଥମ ପରିଚ୍ଛେଦ

## ଭଞ୍ଜଭୂମି କେନ୍ଦୁଝର ଜିଲ୍ଲାର ଭୌଗୋଳିକ ଅବସ୍ଥିତି ।

ସ୍ୱାଧୀନ ବକଳାଙ୍ଗ ଓଡ଼ିଶାର ତେର ଗୋଟି ଜିଲ୍ଲା ମଧ୍ୟରେ କେନ୍ଦୁଝର ଜିଲ୍ଲା ତ୍ରୟୋଦଶତମ ଜିଲ୍ଲା ଅଟେ । ଏହା ଉତ୍ତର ଅକ୍ଷାଂଶର ୨୧° ଓ ୨୨°୯ ଏବଂ ପୂର୍ବ ଦ୍ରାଘିମାର ୮୫°୩୨ ଓ ୮୬°୩୧ ମଧ୍ୟରେ ଅବସ୍ଥିତ ଅଟେ । ଏହାର ବିସ୍ତାର ପୂର୍ବ ଓ ପଶ୍ଚିମରେ ଜରଦାଠାରୁ କଣବୁରୁ ପର୍ଯ୍ୟନ୍ତ ପ୍ରାପ୍ତ ୧୨୦ ମାଇଲ ଓ ଉତ୍ତର-ଦକ୍ଷିଣରେ ୪୦ ମାଇଲ ଅଟେ । ଏହା ସମୁଦ୍ର ପତ୍ତନଠାରୁ ୧୫୭୫ ଫୁଟ ଉଚ୍ଚରେ ଅବସ୍ଥିତ ଅଟେ । ଏହାର କ୍ଷେତ୍ର ଫଳ ୩୨୧୭ ବର୍ଗ ମାଇଲ ମଧ୍ୟରୁ ପ୍ରାପ୍ତ ୨୦୦୦ ବର୍ଗ ମାଇଲ କୃଷୋପଯୋଗୀ ଜମି ଓ ଅବଶିଷ୍ଟାଂଶ ଘନବନ ପର୍ବତ ପରିପୂର୍ଣ୍ଣ ଖନିଜ-ବନଜ ଅଞ୍ଚଳ ଅଟେ । ଏହି ଜିଲ୍ଲାର ଉତ୍ତରରେ ସିଂହଭୂମି ଓ ମୟୂରଭଞ୍ଜ ଜିଲ୍ଲା ପୂର୍ବରେ ବାଲେଶ୍ୱର ଜିଲ୍ଲା, ଦକ୍ଷିଣରେ କଟକ ଜିଲ୍ଲା ଓ ପଶ୍ଚିମରେ ଢେଙ୍କାନାଳ ଓ ସୁନ୍ଦରଗଡ଼ ଜିଲ୍ଲା ଅବସ୍ଥିତ । ଏହା ଦେଖିବାକୁ ତ୍ରିଭୂଜାକାର ଅଟେ । ଏହି ଜିଲ୍ଲାର ଉତ୍ତରରେ ଶାଳୁକୀ ଶୈଳ ସମ୍ଭବା ଶାଳନ୍ଦୀ, ମଧ୍ୟ ଦେଶରେ ନାସା ସଦୃଶ ଅବସ୍ଥିତ ଗୋନାସା ଶୈଳ-ତନୁଜା ବୈତରଣୀ ଓ ଦକ୍ଷିଣ ପାର୍ଶ୍ୱରେ ମେଘାସନ ପର୍ବତ ଉଦ୍‌ଭବା କୁଶଭଦ୍ରା ନଦୀ ସମୂହ ପ୍ରବାହିତ ହେଉ ଅଛନ୍ତି । ଇଡ଼ା, ପିଙ୍ଗଳା ଓ ସୁଷୁମ୍ନା ନାଡ଼ୀ ସମୂହ ଜୀବ ଶରୀରକୁ ପୁଷ୍ଟ କଲପରି ଉପର ବର୍ଣ୍ଣିତ ନଦୀ ସମୂହ କେନ୍ଦୁଝର ରାଜ୍ୟର ପୁଷ୍ଟି ସାଧନ କରି ଏହି ପାର୍ବତ୍ୟ-ସମତଳ ପ୍ରଦେଶକୁ ଏକ ନଦୀ-ମାତୃକା ଭୂମି ରୂପେ ଗଢ଼ି ତୋଳିଛନ୍ତି ।

ପ୍ରାକୃତିକ ଅବସ୍ଥିତି ଦୃଷ୍ଟିରୁ ସମଗ୍ର ଜିଲ୍ଲାଟି ତିନି ଭାଗରେ ବିଭକ୍ତ ହୋଇ ଅଛି । ଯଥା :—

(୧) ସମତଳ ପ୍ରଦେଶ – ଆନନ୍ଦପୁର ସବ୍‌ଡ଼ିଭିଜନ — ୬୩୭ ବର୍ଗ ମାଇଲ
(୨) ପାର୍ବତ୍ୟ ,, – ସଦର ,, — ୧୯୯୦ ,,
(୩) ,, ସମତଳ ,, – ଚଂପୁଆ ,, — ୫୯୦ ,,

ସର୍ବମୋଟ ୩୨୧୭ ବର୍ଗ ମାଇଲ

ସଦର ଓ ଚଂପୁଆ ସବ୍‌ଡିଭିଜନ ଦ୍ୱୟକୁ ଅପର କେନ୍ଦୁଝର ଓ ଆନନ୍ଦପୁର ସବ୍‌ଡ଼ିଭିଜନକୁ ଲୋଅର କେନ୍ଦୁଝର ବୋଲି ଯାଏ ।

# ଲୋକ ସଂଖ୍ୟା

୧୯୭୧ ଜନଗଣନା ଅନୁସାରେ କେନ୍ଦୁଝର ଜିଲ୍ଲାର ଲୋକ ସଂଖ୍ୟା ୯୫୫୫୧୪ ଜଣ ଅଟେ । ଏହାର କ୍ଷେତ୍ରଫଳ ବା ଆୟତନ ୮୨୪୦୦ ବର୍ଗ କିଲୋମିଟର ଅଟେ । ୧୯୦୧ ମସିହାରେ ଉକ୍ତ ଜିଲ୍ଲାର ଲୋକ ସଂଖ୍ୟା ଥିଲା ୨୮୫୭୫୮ ଜଣ । ଏହା ବୃଦ୍ଧି ପାଇ ୧୯୫୧ରୁ ୧୯୭୧ ମସିହା ଭିତରେ ଲୋକ ସଂଖ୍ୟା ଶତକଡ଼ା ୨୨.୩ ଭାଗ ବୃଦ୍ଧି ପାଇଲା । ମାତ୍ର ଏହି ସମୟ ଭିତରେ ଗାଁ ଗହଳର ଲୋକ ସଂଖ୍ୟା ଶତକଡ଼ା ୨୨.୮ ଭାଗ ବୃଦ୍ଧି ପାଇଥିବା ସ୍ଥଳେ ସହରାଞ୍ଚଳର ଲୋକ ସଂଖ୍ୟା ଶତକଡ଼ା ୨୪.୨ ଭାଗ ବୃଦ୍ଧି ପାଇ ଅଛି ।

ଜିଲ୍ଲାର ସର୍ବମୋଟ ଲୋକ ସଂଖ୍ୟା ୯୫୫୫୧୪ ଜଣଙ୍କ ମଧ୍ୟରୁ ଆଦିବାସୀମାନଙ୍କର ସଂଖ୍ୟା ୪୪୮୨୭୫ ଜଣ ଓ ହରିଜନମାନଙ୍କର ୧୦୩୮୪୦ ଜଣ ଅଟେ । ଏହି ଜିଲ୍ଲାର ଶତକଡ଼ା ୭୦ ଭାଗ ଲୋକ ଆଦିବାସୀ ଓ ହରିଜନ ଶ୍ରେଣୀର ହୋଇଥିବାରୁ ଭାରତ ସରକାର ଏହାକୁ ଏକ ଅନୁନ୍ନତ ଜିଲ୍ଲା ଘୋଷଣା କରି ଅଛନ୍ତି ।

ଜନଗଣନା ସମୀକ୍ଷାରୁ ଜଣାଯାଏ ଯେ, ଏହି ଅନୁନ୍ନତ ଜିଲ୍ଲାରେ କ୍ରମଶଃ ଆଦିବାସୀ ଅନୁନ୍ନତ ଶ୍ରେଣୀର ସଂଖ୍ୟା କମି ଯାଉଛି, ଏବଂ ଅପର ଦିଗରେ ଅଣ ଆଦିବାସୀମାନଙ୍କର ସଂଖ୍ୟା ବୃଦ୍ଧି ପାଉ ଅଛି ।

ଏହି ଜିଲ୍ଲାରେ କେନ୍ଦୁଝର ଓ ବଡ଼ବିଲ ପୌରପରିଷଦ ଓ ଯୋଡ଼ା ଆନନ୍ଦପୁର ନାମକ ଦୁଇ ଗୋଟି ବିଜ୍ଞାପିତ ଅଞ୍ଚଳ ରହି ଅଛି । ଜିଲ୍ଲାର ସଦର ମହକୁମା କେନ୍ଦୁଝର ପୌରପରିଷଦର ଲୋକ ସଂଖ୍ୟା ୧୯୩୪୦ ଜଣ ହୋଇଥିବା ସ୍ଥଳେ ଖଣି-ଶିଳ୍ପ ସହର ବଡ଼ବିଲ ପୌରପରିଷଦର ଲୋକ ସଂଖ୍ୟା ୨୪୩୫୫ ଜଣ ଅଟେ । ଆନନ୍ଦପୁର ବିଜ୍ଞାପିତ ଅଞ୍ଚଳର ଲୋକ ସଂଖ୍ୟା ପ୍ରାୟ ୧୨୦୦୦ ଜଣ ହୋଇଥିବା ସ୍ଥଳେ ଯୋଡ଼ା ବିଜ୍ଞାପିତ ଅଞ୍ଚଳର ଲୋକ ସଂଖ୍ୟା ୧୭୩୫୩ ଜଣ ଅଟେ । ଏଥିରୁ ଅନୁମିତ ହେଉଅଛି ଯେ, ବଡ଼ବିଲ ଓ ଯୋଡ଼ା ଖଣି ଶିଳ୍ପ ସହରର ଲୋକ ସଂଖ୍ୟା କ୍ରମଶଃ ବୃଦ୍ଧି ପାଉଅଛି । ଏଣୁ ଏହି ସହର ହୃଦୁ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ହୋଇ ଥିଲେ ହେଁ ଏଠାରୁ ଆଦିବାସୀମାନଙ୍କର ସଂଖ୍ୟା କ୍ରମଶଃ କମି ଯାଉଅଛି । ଏହା ନିଶ୍ଚିତ ଭାବେ ଉଦ୍‌ବେଗ ଜନକ ଅଟେ ।

—: ୦ :—

# ପର୍ବତମାଳିନୀ କେନ୍ଦୁଝରୀ

କେନ୍ଦୁଝର ଜିଲ୍ଲା ଗୋଟିଏ ପାର୍ବତ୍ୟ ପ୍ରଦେଶ ଅଟେ । ରାଜ୍ୟରେ ପର୍ବତ ଗୁଡ଼ିକ ପୂର୍ବ ପଶ୍ଚିମ ଓ ଉତ୍ତର ଦକ୍ଷିଣ ଭାବରେ ଦଣ୍ଡାୟମାନ ରହି ଥିବାରୁ ଜିଲ୍ଲାର ସମତଳ ଅଞ୍ଚଳ ଗୁଡ଼ିକ ପର୍ବତ ଗହ୍ୱର ବେଷ୍ଟନରେ ଅବସ୍ଥିତ ଅଟେ । ପର୍ବତ ମାଳିନୀ କେନ୍ଦୁଝରରେ ଶୋଭା ପାଉଥିବା ପର୍ବତ ଗୁଡ଼ିକ ମଧ୍ୟରେ ଗୋନାସିକା, ଖଣ୍ଡାଧାର, ମେଘାସନ, ମାଲ୍ୟଗିରି, ସପ୍ତଶୃଙ୍ଗ, ବୋଲଲା, ଠାକୁରାଣୀ, ବଳୀ ବୈଭ୍ୟାସ୍ତ୍ର ଗନ୍ଧମାର୍ଦ୍ଦନ ପର୍ବତ ଅନ୍ୟତମ ଅଟେ । ଏହି ସବୁ ପର୍ବତ ଗୁଡ଼ିକ ଖଣିଜ, ବନଜ ଓ ବନୌଷଧି ପୂର୍ଣ୍ଣ ଅଟନ୍ତି ।

କେନ୍ଦୁଝର ଗଡଠାରୁ ତିନ ମାଇଲ ଦୂରରେ ଅବସ୍ଥିତ ଗନ୍ଧମାର୍ଦ୍ଦନ ପର୍ବତର ଉଚ୍ଚତା ୩୪୭୯ ଫୁଟ ଅଟେ । ବର୍ତ୍ତମାନ ଏଠାରୁ ଲୁହା ପଥର ଉତ୍ତୋଳିତ ହୋଇ ପାରାଦୀପ ବନ୍ଦର ବାଟେ ବିଦେଶକୁ ରପ୍ତାନୀ ହେଉଅଛି । ଏହି ପର୍ବତର ପାଦ ଦେଶରେ ରାଜ୍ୟ ସରକାରଙ୍କର ଗୋଟିଏ ଔଷଧି ବନ ରହିଅଛି । କଥିତ ଅଛି କୋଷ୍ଠ ରୋଗର ଉପସମ ପାଇଁ ଏଠାରେ ଭ୍ରମରମାରୀ ଔଷଧ ବୃକ୍ଷ ରହିଅଛି । ପୌରାଣିକ କିମ୍ବଦନ୍ତୀରୁ ଜଣା ଯାଏ ଯେ, ତ୍ରେତା ଯୁଗରେ ରାମ ରାବଣ ମଧ୍ୟରେ ହୋଇଥିବା ଯୁଦ୍ଧରେ, ଲକ୍ଷ୍ମଣଙ୍କର ଶକ୍ତିଭେଦ ସମୟରେ ବନ୍ୟ ପଶୁ ଜାମ୍ବବାନ ଓ ସୁଷେଣ ବୈଦ୍ୟଙ୍କ ନିର୍ଦ୍ଦେଶ କ୍ରମେ; ବୀରହନୁମାନ ଏହି ଗନ୍ଧମାର୍ଦ୍ଦନ ପର୍ବତରୁ ବିଶଲ୍ୟକରଣୀ ଓ ମୃତ ସଞ୍ଜିବନୀ ନାମକ ବନୌଷଧି ନେଇ ଲକ୍ଷ୍ମଣଙ୍କୁ ବଞ୍ଚାଇ ଥିଲେ । ଏହି ପର୍ବତ ବନୌଷଧି ପୂର୍ଣ୍ଣ ହୋଇଥିବାରୁ ଏହା ଗନ୍ଧର୍ବମାନଙ୍କର ବାସ ସ୍ଥାନ ଅଟେ । ଏହାର ପବନ ସୁଗନ୍ଧମୟ ଓ ରୋଗ ନାଶକ ଅଟେ । ତେଣୁ କବି ଲେଖିଛନ୍ତି :—

"କେତେ ଥର ଦେଖି ଅଛି ଖଣ୍ଡଗିରି
ଦେଖିଛି ଉଦୟଗିରି ଚିରୁଶିରି ।
ଦକ୍ଷିଣରେ ଭ୍ରମି ମହେନ୍ଦ୍ରର ତନୁ
ଦେଖିଛି ଯା, ପୁଣି ନପିବଇଁ ମନୁ ।
ଗନ୍ଧମାର୍ଦ୍ଦନର ଶିଖରେ ମୁଁ ଥରେ
ବସି କେତେ ଚିନ୍ତା ଚିତ୍ତ ଥିଲି କରେ ।
କିନ୍ତୁ କାହିଁ କେବେ କହିଲେ ସୁନ୍ଦରୀ
ଦେଖିନାହିଁ ପୁଣି ଛବିଳ ତୋ ଶିରୀ ।
ଧନ୍ୱନ୍ତରୀଙ୍କର ପ୍ରିୟ ସ୍ଥଳ ଯେଣୁ
ନାନା ବନସ୍ପତି ରଖି ଅଛୁ ତେଣୁ ।
ତୋ ହୃଦେ ଲୁଚାଇ ରଖିଛୁ ଗୁପତେ
ଔଷଧ ଆଳୟ ତୁ ସିନା ମରତେ ।
କୁଷ୍ଠ ରୋଗୀଙ୍କର ଦୁଃଖନାଶ ପାଇଁ
କହିଲେ ରଖିଛୁ ଲୁଚାଇ ତୁ କାହିଁ ।
ଭ୍ରମର ମାରଣ ତୋ ଗର୍ଭ ପ୍ରଦେଶେ
ଦେଉଛୁଟି କଷ୍ଟେ ନୃପତି ଆଦେଶେ ।
କେତେ କେତେ ଦେଶୁଁ ଅଗଣିତ ଜନ
ବର୍ଷେ ବର୍ଷେ ଆସି ନଅନ୍ତି ଏ ଧନ ।"

ପର୍ବତ ମାଳିନୀ କେନ୍ଦୁଝରର ପ୍ରସିଦ୍ଧ ପର୍ବତ ଗନ୍ଧମାର୍ଦ୍ଦନ ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ହେଲେ ହେଁ, ବନସ୍ପତି ପ୍ରଦାନ କରିବାରେ ଏହା ଧନ୍ୱନ୍ତରୀଙ୍କର ଅବ୍ୟୟ ଔଷଧ ଭଣ୍ଡାର ଅଟେ । ଏହି ପର୍ବତର ଶୀର୍ଷ ଦେଶରେ ପ୍ରବାହିତ ପବନ ସୁଗନ୍ଧଭରା ହୋଇଥିବାରୁ ଏହା ଭଞ୍ଜ ରାଜବଂଶର ଅଧିଷ୍ଠାତ୍ରୀ ଦେବୀ 'ଦଣ୍ଡାଦେବୀ'ଙ୍କର କ୍ରୀଡାସ୍ଥଳୀ ଅଟେ ।

ଏହି ରାଜ୍ୟକୁ ଉତ୍କଳ କମଳାର ଅବ୍ୟୟ ରତ୍ନ ଭଣ୍ଡାର ଓ ଧନ୍ୱନ୍ତରୀଙ୍କର ଅମୂଲ୍ୟ ଔଷଧ ଭଣ୍ଡାର ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ ।

ଗନ୍ଧମାର୍ଦ୍ଦନ ପର୍ବତ ଭୂୟାଁ ପୀଡ଼ରେ ଅବସ୍ଥିତ ଥିବାରୁ ଏହା କେନ୍ଦୁଝରର ଆଦିମ ଅଧିବାସୀ ଭୂୟାଁମାନଙ୍କର ବାସସ୍ଥଳୀ ଅଟେ ।

ରଶ୍ମିରେଖା ଚୁମ୍ବି ଧାଇଁ ଆସିଥିବ
ପଲକେ ଗନ୍ଧମାର୍ଦ୍ଦନେ;
ଦଣ୍ଡ ଦେବୀ ଅଧି- ଷ୍ଠିତ ସେହି ଶୈଳେ
ଶାଳ କାଠ କରି ଗଦା,
ଅନଳ ଲଗାଇ ହୋଇଥିବେ ମତ୍ତ
ସଙ୍ଗୀତେ ଭୂୟାଁ ପ୍ରମଦା ।
ସ୍ତରେ ସ୍ତରେ ଶାଳ ଶୃଙ୍ଗମାନ ନଭେ
ଠେକିଛନ୍ତି ଗିରି ଘେରି,
ଯାର ତୁଙ୍ଗ ତଟେ ବନସ୍ପତି ପୁଞ୍ଜ
ତାର ପୁଞ୍ଜ ସଂଚରଇ ।"

ଏହି ରାଜ୍ୟଟି ପୁଣ୍ୟ ତୋୟା ବୈତରଣୀ ନଦୀର ଆବିର୍ଭାବ ସ୍ଥଳୀ ଓ ସ୍ୱଚ୍ଛନୀରା ଶାଳନ୍ଦୀ ନଦୀର କ୍ରୀଡ଼ାସ୍ଥଳୀ ଅଟେ ।

"ବ୍ରହ୍ମାଣ୍ଡ ପାଳନୀ ବ୍ରାହ୍ମୀ, ଗୋନାସା ଶୈଳଜା,
ପୁଣ୍ୟତୋୟା ବୈତରଣୀ ( ସ୍ନାନ କରି ଯହିଁ
ଲଭନ୍ତି ପରମ ଗତି ବିନା ତତ୍ତ୍ୱଜ୍ଞାନେ ନରେ )
ଦେବଃ ମନ ପ୍ରାପ୍ତ ପୂତ ସ୍ୱଚ୍ଛଜଳା,
ଶାଳନ୍ଦୀ ଶାଳ୍ମଳୀ ଶୈଳ ତନୁଜା ସୁନ୍ଦରୀ ।"

ଏତଦ୍‌ବ୍ୟତୀତ କୁଶଭଦ୍ରା, ସେଣ୍ଡେଇ, ଲୋନ, ଅରଡେଇ, ସୀତା, ମୁଷଳ, ମୁହାଣ, ମାଛକାନ୍ଦଣା ଆଦି ଗିରି ନିର୍ଝରଣୀ ଗୁଡ଼ିକ ଏହି ରାଜ୍ୟକୁ ନଦୀମାତୃକା ରୂପେ ଗଢ଼ି ତୋଳିଛନ୍ତି ।



# କେନ୍ଦୁଝର ରାଜ୍ୟର ଉତ୍ପତ୍ତି

ଭୂତତ୍ତ୍ୱବିତ୍‌ମାନଙ୍କ ମତରେ ଭୂଗର୍ଭର ଆଭ୍ୟନ୍ତରୀଣ ପ୍ରଦେଶ ଉତପ୍ତ ଅବସ୍ଥାରେ ରହିଥିବାରୁ କୌଣସି ଏକ ଭୂକଂପନ ସମୟରେ ଭୂଗର୍ଭ ମଧ୍ୟରେ ସଞ୍ଚିତ ଥିବା ତରଳ ଧାତବ ପଦାର୍ଥ ସମୂହ ଭୂପୃଷ୍ଠରେ ଅବସ୍ଥାନ କରିବା ଦ୍ୱାରା ପ୍ରକୃତିର ଗନ୍ଧାଘର କେନ୍ଦୁଝର ରାଜ୍ୟର ଉତ୍ପତ୍ତି ହୋଇଥିବା ସ୍ୱାଭାବିକ ଅଟେ ।

ଏହିପରି ଏକ ଆବର୍ତ୍ତନ ଓ ବିବର୍ତ୍ତନଶୀଳ ପ୍ରାଚୀନ ପୃଥିବୀ ପୃଷ୍ଠରେ କେନ୍ଦୁଝର ରାଜ୍ୟର ଇତିହାସ ବର୍ଣ୍ଣନା କରିବା ସ୍ୱଳ୍ପ ଆୟୁ ବିଶିଷ୍ଟ ମନୁଷ୍ୟ ପକ୍ଷରେ ବସ୍ତୁତଃ ଅସମ୍ଭବ ହେଲେହେଁ; ଓଡିଆ ଭାଷା-ସାହିତ୍ୟ ଉଦ୍ୟାନରେ ପ୍ରସ୍ଫୁଟିତ ସୁଗନ୍ଧ କୁସୁମତୁଲ୍ୟ ଅମୂଲ୍ୟ ଐତିହାସିକ ତଥ୍ୟ ଗୁଡିକର ସଂଗ୍ରହ, ସମୀକ୍ଷା, ଓ ସାଧନ କରି ମୁଁ ମୋର ବିବେକ ସୂତ୍ରରେ ମାଳା ଗୁନ୍ଥି ବିନମ୍ର ଭାବରେ ଉତ୍କଳ-କମଳାର କନିଷ୍ଠ ଭଗ୍ନି ଧନଶ୍ରୀ ଓ ବନଶ୍ରୀ କେନ୍ଦୁଝରର କଣ୍ଠ ମଣ୍ଡନ କରିଅଛି । ଇତିହାସ ବସ୍ତୁତଃ ଅତୀତ ଘଟଣାବଳୀ ଉପରେ ପର୍ଯ୍ୟବସିତ ହୋଇଥିବାରୁ ଏହା କସ୍ମିନ କାଳେ ବ୍ୟକ୍ତି ସର୍ବସ୍ୱ ହୋଇ ନପାରେ । ଏଣୁ ମୋର ରଚିତ ଏହି ପୁସ୍ତକରେ ଯେଉଁ ସବୁ ଐତିହାସିକ ତଥ୍ୟାବଳୀ ସନ୍ନିବେଶିତ ହୋଇ-ଅଛି, ସେ ଗୁଡ଼ିକ ବ୍ୟକ୍ତି ସର୍ବସ୍ୱ ନହୋଇ ପରନ୍ତୁ ସଂଗୃହିତ ହୋଇଅଛି ବୋଲି କହିଲେ ଯଥାର୍ଥ ହେବ ।

ଆବହମାନ କାଳରୁ ମଣିଷ ବାସ କରି ଆସୁଥିବା ଏହି ପ୍ରାଚୀନ ପୃଥିବୀ ପୃଷ୍ଠରେ ଭାରତ ତଥା ଓଡିଶା ମଧ୍ୟରେ ଅବସ୍ଥିତ ବିଶ୍ୱ ବିଖ୍ୟାତ ଖଣିଜ-ବନଜ-ଜଳଜ ବହୁଳ, ପ୍ରାକୃତିକ ଶୋଭା ପରିପୂର୍ଣ୍ଣ, ନଭସ୍ପର୍ଶୀ ନୀଳ ଶୈଳ ବିମଣ୍ଡିତ, ନୈସର୍ଗିକ ଶୋଭା ସମ୍ଭାର ସୁଶୋଭିତ, ଶସ୍ୟ ଶ୍ୟାମଳା, ସୁଜଳା ସୁଫଳା ଗିରି ନିର୍ଝରିଣୀ ଚଂପାବରଣୀ ବୈତରଣୀ, ଶାଳନଦୀ ଶାଳ୍ମଳୀ ଶୈଳ ତନୁଜା ସୁନ୍ଦରୀ ନଦୀ ପ୍ରବାହିତା, ବନଗିରିବାସୀ ଅଧ୍ୟୁଷିତା, ପରମପୂଜ୍ୟା, ବିଶ୍ୱବନ୍ଦନୀୟା, ଗତିମୁକ୍ତି ପ୍ରଦାୟିନୀ ମାତୃ ଶ୍ରେଷ୍ଠା ଜନ୍ମଭୂମି କେନ୍ଦୁଝର ବିଶାଳ ବିଶ୍ୱ ବକ୍ଷରେ ଗୋଟିଏ କ୍ଷୁଦ୍ରତମ ବିନ୍ଦୁ ହେଲେହେଁ ଏହାର ଐତିହ୍ୟପୂର୍ଣ୍ଣ, ଜାଜ୍ୱଲ୍ୟମାନ, ଗୌରବମୟ ଇତିହାସ ଯେପରି ପ୍ରାଚୀନତମ ସେହିପରି ଗୁରୁତ୍ୱପୂର୍ଣ୍ଣ ମଧ୍ୟ ଅଟେ ।

# ମନ୍ଦିରମାଳିନୀ କେନ୍ଦୁଝରୀ

ପୁଣ୍ୟତୋୟା ସୁରଗଙ୍ଗା ବୈତରଣୀ ସ୍ନାତା କେନ୍ଦୁଝର ନାନା ଦେବଦେବୀଙ୍କର ଚୀରସ୍ଥାୟୀ ବାସସ୍ଥଳୀ ଅଟେ । ସମଗ୍ର ରାଜ୍ୟର ବିଭିନ୍ନ ପ୍ରାନ୍ତରେ ଶୋଭା ପାଉଥିବା ଅସଂଖ୍ୟ ଦେବ ଦେବୀ ମନ୍ଦିର ଗୁଡିକ ଏହାକୁ ଏକ ମନ୍ଦିରମାଳିନୀ ନଗରୀ ରୂପେ ଗଢି ତୋଳିଛି । ଏହି ସବୁ ମନ୍ଦିର ଗୁଡ଼ିକରେ ଯେଉଁପରି ଐଶ୍ୱର୍ଯ୍ୟମୟ ପୂଜା ଆରାଧନାର ବ୍ୟବସ୍ଥା ଆବହ-ମାନ କାଳରୁ ପ୍ରଚଳିତ ରହି ଅଛି, ତାହା ଅନ୍ୟତ୍ର କ୍ୱଚିତ ଦେଖାଯାଏ । ଏହାହିଁ ହେଉଛି

ଦେବଭୂମି କେନ୍ଦୁଝର ରାଜ୍ୟର ରାଜା ପ୍ରଜା ପୁଞ୍ଜଙ୍କର ଧର୍ମପରାୟଣତାର ପ୍ରକୃଷ୍ଟ ନିଦର୍ଶନ । ଘଟଗାଁଠାରେ ବର୍ତ୍ତମାନ ରାଜ୍ୟର ଅଧିଷ୍ଠାତ୍ରୀଦେବୀ, ତ୍ରିକାଳ ବନ୍ଦନୀୟା, ଅଶେଷ କରୁଣାମୟୀ, ଭକ୍ତପ୍ରିୟା ମା'ତାରିଣୀ ପରମ ଆରାଧ୍ୟା ଦେବୀ ଓ ବଳଦେବ ଜୀଉଙ୍କ ବିଗ୍ରହ ପ୍ରଧାନ ଉପାସ୍ୟ ଦେବତା ଅଟନ୍ତି । ଏଠାରେ ପୁରୀ ବଡଦେଉଳ ଅନୁକରଣରେ ସେଆଁଙ୍କର ସେବା କାର୍ଯ୍ୟ ସମାହିତ ହୁଏ ।

ତନ୍ତ୍ରଭୂମି :— ତନ୍ତ୍ର ସାଧନା ଦିଗରେ କେନ୍ଦୁଝର ରାଜ୍ୟର ଉତ୍କଳ ତଥା ଭାରତ ବର୍ଷରେ ପ୍ରାଚୀନ ପ୍ରସିଦ୍ଧ ରହି ଆସିଛି । କିମ୍ବଦନ୍ତୀ କହେ କୁଶଭଦ୍ରା ନଦୀତୀରବାସୀ ସହରେଇଁ ଗ୍ରାମର ସ୍ୱର୍ଗୀୟ ସୁଦର୍ଶନ ମିଶ୍ର ମହାଭୈରବୀ ତନ୍ତ୍ର ବଳରେ ବଳଦେବ ଜୀଉଙ୍କ ମନ୍ଦିରର ଶୀର୍ଷ ଦେଶରେ ନୀଳଚକ୍ର ପ୍ରତିଷ୍ଠା କରିଥିଲେ । ଶ୍ରୀମନ୍ଦିରର ଶୀର୍ଷ ଦେଶରେ ଶୋଭା ପାଉଥିବା ନୀଳଚକ୍ର, ନୀଳମହୋଦଧିର ନୀଳାଦ୍ରି ବିନ୍ଦୁରେ ପ୍ରତିବିମ୍ବିତ ହେଲାପରି, ବିଶାଳକାୟ ବଳଦେବ ଜୀଉଙ୍କ ମନ୍ଦିରର ଶୀର୍ଷ ଦେଶରେ ଅବସ୍ଥାପିତ ନୀଳଚକ୍ରର ପ୍ରତିବିମ୍ବ, ରାଜପ୍ରାସାଦର ଦକ୍ଷିଣପାର୍ଶ୍ୱରେ ଅବସ୍ଥିତ ଚନ୍ଦନ ପୁଷ୍କରିଣୀର ଦାଣ୍ଡିଖୁଣ୍ଟ ମୂଳରେ ଦୃଶ୍ୟମାନ ହୋଇଥାଏ । ଏହାହିଁ ହେଉଛି ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି ସୁରକ୍ଷା କ୍ଷେତ୍ରରେ କେନ୍ଦୁଝର ରାଜ୍ୟର ଚରମ ନିଷ୍ଠାପରତା ।

ଏହା ଛଡା ଭଞ୍ଜ ରାଜବଂଶର ଅଧିଷ୍ଠାତ୍ର ଦଣ୍ଡଦେବୀଙ୍କର ତାନ୍ତ୍ରିକ ପୂଜା ପଦ୍ଧତି, ଗୋର-ନର,-ପଶୁ ପକ୍ଷୀ ବଳୀର ବହୁଳ ପ୍ରସାର, ସର୍ବୋପରି ରାଜ୍ୟରେ ସର୍ବତ୍ର ଶିବଶକ୍ତି ପୂଜା ଏହାକୁ ଶୈବଶାକ୍ତ କ୍ଷେତ୍ର ରୂପେ ଗଢି ତୋଳିଛି । ଭୂଭାଗରେ ଏପରି କୌଣସି ରାଜ୍ୟ ନାହିଁ ଯାହାର ପ୍ରତି ଏକକୋଶ ଦୂରତ୍ୱରେ ଗୋଟିଏ ଗୋଟିଏ ଶିବଲିଙ୍ଗ ପୂଜିତ ହେଉ ଅଛନ୍ତି ।

—: ୦ :—

## ଶିଳ୍ପ ନିପୁଣତା

ଶିଳ୍ପ ଓ ସଙ୍ଗୀତ ବିଦ୍ୟାରେ ମଧ୍ୟ କେନ୍ଦୁଝରର ପ୍ରାଚୀନ ପ୍ରସିଦ୍ଧି ରହିଅଛି । ସୀତାର ବାଦ୍ୟ ବାଦନ ପାଇଁ ବ୍ୟବହୃତ ହେଉଥିବା ସୂକ୍ଷ୍ମ ଲୌହତାର ଏଠାରେ ନିର୍ମିତ ହେଉଥିଲା ।

"ବିମ୍ବା ଧରୀଙ୍କର ଚଂପକ ଅଙ୍ଗୁଳି
କଂପନେ ମଧୁ ଝଙ୍କାର
ଉପୁଜିବା ଆଶେ କେନ୍ଦୁଝରେ ଗଢ଼ା
ହେଉଥିଲା ଲୌହତାର ।"

ଏପରି କି କୋଣାର୍କ ମନ୍ଦିର ଗାତ୍ରରେ ବ୍ୟବହୃତ ହୋଇଥିବା ବିଶାଳକାୟ ଲୌହଦଣ୍ଡ, ଢ଼ଗୁକ, କୁଶଭଦ୍ରା ନଦୀତୀରରେ ଅବସ୍ଥିତ ବାହୁଣୀପାଳ ଗ୍ରାମର ଲୁହୁରା ନାମକ ଜାତି ଦୈତ୍ୟାରୀ-ଟମକା ପର୍ବତରୁ ଲୁହାପଥର ସଂଗ୍ରହ କରି ତାହାକୁ ଗ୍ରାମ୍ୟଭାଟି ପ୍ରଣାଳୀରେ ତରଳାଇ ନିର୍ମାଣ କରିଥିଲେ । ଏହାର ପ୍ରମାଣ ସ୍ୱରୂପ ଉକ୍ତ ଗ୍ରାମର ଚତୁଃପାର୍ଶ୍ୱରେ

ଗଦା ଗଦା ହୋଇ ଲୌହମଳ ବହୁତ ବନରୁ ପଡ଼ି ରହିଛି । ଏପରିକି ବର୍ତ୍ତମାନ ମଧ୍ୟ ଜିଲ୍ଲାର ବିଭିନ୍ନ ସ୍ଥାନରେ ଏହି ଲହୁରା ଜାତିର ଲୋକମାନେ ବାସ କରି ପର୍ବତରୁ କଞ୍ଚା ଲୁହାପଥର ସଂଗ୍ରହ କରି ତାହାକୁ ଗ୍ରାମ୍ୟ ଭଟି ପ୍ରଣାଳୀରେ ତରଳାଇ ତହିଁରୁ ଲୌହପିଣ୍ଡ ଉତ୍ପନ୍ନ କରି ଜୀବିକା ନିର୍ବାହ କରି ଆସୁ ଅଛନ୍ତି ।

ଗଜପତି ପୁରୁଷୋତ୍ତମଦେବଙ୍କର କାଞ୍ଚି ଯୁଦ୍ଧଯାତ୍ରାରେ କେନ୍ଦୁଝର ରାଜକୁମାର ଗୋବିନ୍ଦ ଭଞ୍ଜଙ୍କର ଓଡ଼ିଆ ସେନାବାହିନୀର ସେନାପତିତ୍ୱ ଗ୍ରହଣ ଓ ଆନନ୍ଦପୁର ସବ୍‌ଡିଭିଜନ ସହିତ ଶିରପା ଓ ଜୟ ଗୋବିନ୍ଦ ଉପାଧି ପ୍ରାପ୍ତି, ରାଜା ବଳଭଦ୍ର ନାରାୟଣ ଭଞ୍ଜଙ୍କ ଶାସନ କାଳରେ ବାମଣ୍ଡା ଓ ଢେଙ୍କାନାଳ ସମର ସଜ୍ଜା, ରାଜା ଜନାର୍ଦ୍ଦନ ନାରାୟଣ ଭଞ୍ଜଙ୍କ ରାଜତ୍ୱରେ ଇଂରେଜ ଶାସନ ବିରୁଦ୍ଧରେ ହୋଇଥିବା ସିପାହୀ ବିଦ୍ରୋହ ଦମନ ପାଇଁ ପୋଡ଼ାହାଟର ରାଜା ଅର୍ଜ୍ଜୁନ ସିଂହଙ୍କୁ ଧରାଇ ଦେବା ପାଇଁ ଇଷ୍ଟଇଣ୍ଡିଆ କମ୍ପାନୀଙ୍କୁ ସୈନ୍ୟ ଓ ଅର୍ଥ ସହାଯ୍ୟ, ମହାରାଜା ଧନୁର୍ଜ୍ଜୟ ନାରାୟଣ ଭଞ୍ଜଙ୍କ ରାଜତ୍ୱ ବିରୁଦ୍ଧରେ ଭାରତର ସର୍ବ ପ୍ରଥମ ପ୍ରଜା ଆନ୍ଦୋଳନ ଧରଣୀ ବିଦ୍ରୋହ, କଟକରେ ଥିବା ବିଭିନ୍ନ ଶିକ୍ଷାନୁଷ୍ଠାନ ଗୃହ ଓ ଛାତ୍ରାବାସ ନିର୍ମାଣ ଓ ଉତ୍କଳ ବିଶ୍ୱ ବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଅଜସ୍ର ଅର୍ଥଦାନ, ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତିର ପ୍ରସାର ପାଇଁ ସମଗ୍ର ରାଜ୍ୟରେ ମନ୍ଦିର ନିର୍ମାଣ, ବିଗ୍ରହ ପ୍ରତିଷ୍ଠା ଓ ରଥଯାତ୍ରା ପ୍ରଚଳନ, ବେଦ ବିଧାନର ସୁରକ୍ଷା ପାଇଁ ଏକାଧିକ ବ୍ରାହ୍ମଣ ଶାସନ ପ୍ରତିଷ୍ଠା ଓ ନିଷ୍କର ଭୂମି ବଣ୍ଟନ ଭଞ୍ଜ ରାଜବଂଶର ବୀରତ୍ୱ ଓ ସ୍ୱଦେଶାନୁ ରାଗର ପରିଚାୟକ ଅଟେ ।

"ଅହୋ ! କାହା ନାମ ପୁଣି ପଡ଼ିଗଲା ମନେ, କ୍ଷତ୍ରୀୟ ରାଜନ୍ୟୋଚିତ ଗୁଣ ବିଚକ୍ଷଣ,
ନୃପ ଧନୁର୍ଜ୍ଜୟ ଭଞ୍ଜ ଧନଞ୍ଜୟୋପମ, ପ୍ୟାରୀ ଏକାଡେମୀ ଗୃହ ତାର ଗୁଣବାବାସ,
ବାଳିକା ବିଦ୍ୟା ଆଗର ଟିନିହେଁ କଟକେ ଧରିଛନ୍ତି ସେ କୃତିର କୀର୍ତ୍ତିର ନିଶାଣ,
କ୍ଷତ୍ରୀୟ ତେଜେ ତେଜସ୍ୱୀ ନଥିଲେ କେବଳ ରାଏ, ଜାଣିଥା ତେଜର ସୁଦ୍ଧା ଥିଲା ସେତ୍ତୁ
ସତତ ତେଜସ୍ୱୀ, ତେଣୁ ସ୍ୱଦେଶୀଙ୍କର ଥିଲା ପୂର୍ଣ୍ଣ ପକ୍ଷପାତ, କରି ଥିଲା ପୁଣି
ସ୍ୱଦେଶୀ ଗୁଣୀଗଣର ସମ୍ୟକ ଆଦର ।"

ସୀତାବିଞ୍ଜି, ଅଶନପାଟ, ବଇଦାଖିଆ, 'ଛେଲଆଡ଼ା, ସନ୍ଭେଇଭଞ୍ଜ ଗୁମ୍ଫା ପ୍ରଭୃତି ଶିଳାଭିଲେଖ ଓ ଶୈଳ ଚିତ୍ରାଙ୍କନ, କୁଶଳେଶ୍ୱର, ସିଦ୍ଧମଠ, ବାଇଆ ପାଗଳା ସାଧୁଙ୍କର ଜନ୍ମ ଓ ସିଦ୍ଧି ସ୍ଥାନ, ଅମ୍ବିକା ବିଳାସ ଭଞ୍ଜ ମହୋଦୟମ ପ୍ରଭୃତି ସାହିତ୍ୟ ସୃଷ୍ଟି ବାସ୍ତବରେ ଏହି ରାଜ୍ୟରେ ଗୌରବୋଜ୍ଜ୍ୱଳ ଇତିହାସ ଅଟେ । ସ୍ଥୂଳତଃ କହିବାକୁ ଗଲେ ଅନ୍ୟ ଦେଶୀୟ ରାଜ୍ୟ ଗୁଡ଼ିକର ଇତିହାସଠାରୁ କେନ୍ଦୁଝର ରାଜ୍ୟର ଇତିହାସ ଉନ୍ନତ ଓ ପ୍ରାଚୀନତମ ହୋଇଥିଲେ ହେଁ, ଏହା ବନଗିରିବାସୀ ଅଧ୍ୟୁଷିତ ଅଟବିକ ଅଞ୍ଚଳ ହୋଇ ଥିବାରୁ ଏହାର ଗୌରବମୟ ଇତିହାସ ଓ ରାଜା ପ୍ରଜାଙ୍କର କାର୍ଯ୍ୟକଳାପ ଗିରିଗହ୍ୱର ଅନ୍ତରାଳ ଭେଦ କରି ବାହାର ଜଗତରେ ପ୍ରକାଶିତ ହୋଇ ପାରି ନାହିଁ । ଏହି ରାଜ୍ୟର ଗୁପ୍ତ ତଥ୍ୟ ଗୁଡ଼ିକ ଉନ୍ମୋଚନ କରି ଲୋକ ଲୋଚନକୁ ଆଣିବା ଏହି ପୁସ୍ତକର ଲକ୍ଷ୍ୟ ଅଟେ ।

# ପ୍ରାଚୀନ ସାହିତ୍ୟରେ କେନ୍ଦୁଝର

ସ୍ୱର୍ଗୀୟ ଐତିହାସିକ କ୍ଷେତ୍ରମୋହନ ମିତ୍ରଙ୍କ ରଚିତ କେନ୍ଦୁଝର ଇତିହାସ ପୁସ୍ତକରେ ଲେଖା ଅଛି ଯେ, ୧୧୨୮ ଖ୍ରୀଷ୍ଟାବ୍ଦରେ କେନ୍ଦୁଝର ରାଜ୍ୟ ତାହାର ଜ୍ୟେଷ୍ଠଭ୍ରାତୃ ରାଜ୍ୟ ମୟୂରଭଞ୍ଜ ରାଜ୍ୟରୁ ବିଚ୍ଛିନ୍ନ ହୋଇ ଗୋଟିଏ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲା । ଏହାର ପ୍ରଥମ ରାଜା ହେଲେ ଜ୍ୟୋତିଭଂଜ ଓ ରାଜ୍ୟର ନାମ ହେଲା ଜ୍ୟୋତିପୁର । ତେଣୁ କେନ୍ଦୁଝର ରାଜ୍ୟର ପ୍ରାଚୀନ ଇତିହାସ ଜାଣିବାକୁ ହେଲେ ଆମ୍ଭମାନଙ୍କୁ ଏହାର ଜ୍ୟେଷ୍ଠ ଭ୍ରାତୃ ରାଜ୍ୟ ମୟୂରଭଞ୍ଜ ରାଜ୍ୟର ଇତିହାସ ସମ୍ବନ୍ଧରେ ସମ୍ୟକ ଜ୍ଞାନ ଆହରଣ କରିବା ବିଧେୟ ।

ମୟୂରଭଂଜ ରାଜ୍ୟ ଉତ୍ତର ଅକ୍ଷାଂଶର ୨୧°୧୭ ଓ ୨୨°୩୪ ଏବଂ ପୂର୍ବ ଦ୍ରାଘିମାର ୮୫°୪୦ ଓ ୮୭°୧୦ ମଧ୍ୟରେ ଅବସ୍ଥିତ ଅଟେ । ଏହାର କ୍ଷେତ୍ରଫଳ ୪୦୨୨ ବର୍ଗ ମାଇଲ ଅଟେ ।

ବର୍ତ୍ତମାନର କେନ୍ଦୁଝର ଓ ମୟୂରଭଂଜ ଜିଲ୍ଲା ଦ୍ୱୟ ପୂର୍ବେ ଏକତ୍ର ମିଶିଯାଇ ଖିଜିଙ୍ଗ ମଣ୍ଡଳ ନାମରେ ଏକ ବିଶାଳ ଭଞ୍ଜ ସାମ୍ରାଜ୍ୟ ଗଠନ କରି ସମଗ୍ର ଉତ୍ତର ଓଡିଶାରେ ଶକ୍ତି-ଶାଳୀ ଶାସନ ପ୍ରତିଷ୍ଠା କରିଥିଲେ । ଖିଜିଙ୍ଗ ମଣ୍ଡଳର କ୍ଷେତ୍ରଫଳ ଥିଲା ୭୨୩୯ ବର୍ଗ ମାଇଲ । ଏହି ରାଜ୍ୟର ରାଜଧାନୀର ନାମ ଥିଲା ଖିଚିଙ୍ଗକୋଟ ବା ଆଧୁନିକ ଖିଚିଙ୍ଗ ସହର ।

ପ୍ରତ୍ନତାତ୍ତ୍ୱିକ ଗବେଷଣାରୁ ଜଣାଯାଏ ଯେ, ପ୍ରାୟ ବିଗତ ପଚିଶ ସହସ୍ର ବର୍ଷ ଧରି ଏହି ଅଂଚଳରେ ମଣିଷ ବସବାସ କରି ଆସୁଅଛି । ଖିଜିଙ୍ଗ ମଣ୍ଡଳର ଆଦିମ ଅଧିବାସୀମାନେ ବ୍ୟବହାର କରୁଥିବା ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ର ଗୁଡିକ ଏସିଆ, ୟୁରୋପ ଓ ଆଫ୍ରିକା ପ୍ରଭୃତି ମହାଦେଶରେ ବ୍ୟବହୃତ ହେଉଥିବା ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ରଶସ୍ତ୍ରଠାରୁ ଅଧିକ ଉନ୍ନତ ଓ ମସୃଣ ଥିଲା ।

ଏହି ସଭ୍ୟତା ନଦୀମାତୃକା ଖିଜିଙ୍ଗ ମଣ୍ଡଳରେ ପ୍ରବାହିତ ହେଉଥିବା ବୁଢାବଳଙ୍ଗ, ସୁବର୍ଣ୍ଣରେଖା, ଖଇରାଭଣ୍ଡାର, ବୈତରଣୀ, ଶାଳନ୍ଦୀ, କୁଶଭଦ୍ରା ପ୍ରଭୃତି ନଦୀ ଅବବାହିକାରେ ପ୍ରସିଦ୍ଧି ଲାଭ କରିଥିଲା । ନଦୀ ଅବବାହିକା ଗୁଡ଼ିକ ଅପେକ୍ଷାକୃତ ଅଳ୍ପ ଜଙ୍ଗଲପୂର୍ଣ୍ଣ ହୋଇ-ଥିବାରୁ ଏବଂ ନଦୀତୀର ଦେଶରେ ସ୍ନାନପାନ ଭୋଜନ ପାଇଁ ପ୍ରଚୁର ପରିମାଣରେ ଜଳ, ମତ୍ସ୍ୟ ଓ ପଶୁପକ୍ଷୀ ମିଳୁଥିବାରୁ ଖିଜିଙ୍ଗ ମଣ୍ଡଳର ଆଦିମ ଅଧିବାସୀ ନଦୀ ଉପତ୍ୟକାରେ ବାସ କରି ପ୍ରାକୃତିକ ଜୀବନ ଯାପନ କରୁଥିଲେ । ହୁଏତ ସେମାନଙ୍କର ଆକୃତି ଆଜି କାଲିର ମଣିଷମାନଙ୍କ ପରି ନହୋଇ ମେରୁଦଣ୍ଡ ବକ୍ର ଥିଲା । ଏବଂ ସେମାନେ ସିଧା ଚାଲି ପାରୁ ନଥିଲେ । ସେମାନଙ୍କର ତଳ ପାଟିରେ ହାଡ ନ ଥିବାରୁ କଥା କହି ପାରୁ ନଥିଲେ । ସେମାନଙ୍କ ଦେହ ଘନ ଲୋମାବୃତ ଥିଲା । ମନୁଷ୍ୟମାନଙ୍କ ପରି ସେମାନଙ୍କର ମୂର୍ଦ୍ଧ, କପାଳ, ମସ୍ତିଷ୍କ, କ୍ଷୁଦ୍ର କ୍ଷୁଦ୍ର ବାହୁ ଓ ଅଙ୍ଗୁଳି ଥିଲା । ଏମାନେ ଆଦି ମାନବ ରୂପରେ କଥିତ ଅଟନ୍ତି ।

କ୍ରମ ବିବର୍ତ୍ତନ ଓ ପ୍ରଯୋଜନ ପ୍ରକ୍ରିୟା ଫଳରେ ଆଦିମ ମନୁଷ୍ୟର କ୍ରମୋନ୍ନତି ହୋଇ ପ୍ରକୃତ ମାନବ ରୂପେ ଦେଖାଦେଲା ପ୍ରାୟ ପଚାଶ ସହସ୍ର ବର୍ଷ ପୂର୍ବେ । ଜୀବଜଗତର ବିବର୍ତ୍ତନ ଫଳରେ ପ୍ରକୃତ ମାନବର ସୃଷ୍ଟି ଏକ ବିଶିଷ୍ଟ ଘଟଣା ଅଟେ । ସେମାନେ ପର୍ବତ ଗୁହାରେ ଓ ବଣଜଙ୍ଗଲରେ ଗଛ କୋରଡ଼ରେ ପଶୁଙ୍କ ପରି ବାସ କରୁଥିଲେ । ସେମାନେ ବନ୍ୟ ପଶୁ ପକ୍ଷୀ ଓ ମୃତ ଜୀବର କଞ୍ଚା ମାଂସ ଭକ୍ଷଣ କରି ଜୀବିକା ନିର୍ବାହ କରୁଥିଲେ । ତେଣୁ ଉଲଗ୍ନ ରହୁଥିଲେ ବା ପତ୍ର, ବକ୍କଳ, ଚମଡ଼ାକୁ ବସ୍ତ୍ର ରୂପେ ବ୍ୟବହାର କରୁଥିଲେ । ବିଭିନ୍ନ ସ୍ୱର ଓ ଠାର ଦ୍ୱାରା ସେମାନେ ଭାବ ପ୍ରକାଶ କରୁଥିଲେ । ଶିକାର କରିବା ଓ ଆତ୍ମ ରକ୍ଷା ପାଇଁ ସେମାନେ ଯେଉଁ ସବୁ ପ୍ରସ୍ତର ଅସ୍ତ୍ରଶସ୍ତ୍ର ଗୁଡ଼ିକ ବ୍ୟବହାର କରୁଥିଲେ । ତାହା ପ୍ରାଚୀନ ପ୍ରସ୍ତର ଯୁଗର ଥିଲା । ସେମାନେ କାଳକ୍ରମେ ଦଳବଦ୍ଧ ହୋଇ ସାମାଜିକ ଜୀବନ ଯାପନ କରିବାକୁ ଶିଖିଲେ । ନିଆଁର ବ୍ୟବହାର ଜାଣି ହିଂସ୍ର ଜନ୍ତୁଙ୍କ ଆକ୍ରମଣ ଓ ଶୀତରୁ ରକ୍ଷା ପାଇଲେ । ସେମାନେ ପୋହଳାର ମାଳ ପିନ୍ଧୁଥିଲେ ଏବଂ ଦେହକୁ ବିଭିନ୍ନ ପ୍ରକାର ରଙ୍ଗମାଟିରେ ରଙ୍ଗାଉ ଥିଲେ । ସେମାନଙ୍କର ସଭ୍ୟତା ନିମ୍ନ ସ୍ତରର ଥିଲେ ମଧ୍ୟ ଚିତ୍ରକଳା ଅନୁନ୍ନତ ନଥିଲା । କଳା, ଧଳା, ହଳଦିଆ, ନାଲି, ନେଳି ପ୍ରଭୃତି ରଙ୍ଗରେ ସେମାନେ ନାନା ପ୍ରକାର ଚିତ୍ର ପର୍ବତ ଓ ପାହାଡ଼ର ଗୁମ୍ଫାମାନଙ୍କରେ ଆଙ୍କିଥିଲେ । ସୀତାବିଞ୍ଜିଠାରେ ଥିବା ଶୈଳଚିତ୍ର ଏହାର ପ୍ରକୃଷ୍ଟ ପ୍ରମାଣ ଅଟେ । କ୍ରମଶଃ ପ୍ରକୃତ ମନୁଷ୍ୟ ଉନ୍ନତ ହୋଇ ଶିକାର ଓ ବନ୍ୟ ଫଳମୂଳ ସଂଗ୍ରାହକ ନହୋଇ କୃଷି ଓ ପଶୁପାଳନ କରି ଉତ୍ପାଦକ ପଦବାଚ୍ୟ ହେଲା । ତେଣୁ ସେମାନେ ଯାଯାବର ଜୀବନ ତ୍ୟାଗ କରି ନଦୀ ଉପତ୍ୟକାରେ ଚିରସ୍ଥାୟୀ ବସତି ସ୍ଥାପନ କଲେ । ଶିକାର ପରିବର୍ତ୍ତେ କୃଷି ପ୍ରଧାନ ଜୀବିକା ହେବାରୁ ତାହାର ଜୀବନ ଯାତ୍ରା ପ୍ରଣାଳୀରେ ଘୋର ପରିବର୍ତ୍ତନ ଘଟିଲା ଏବଂ ସ୍ଥାୟୀ ବସତି ଆରମ୍ଭ ହୋଇ ସାମାଜିକ ଜୀବନର ଉନ୍ନତି ଘଟିଲା ।

ମନୁଷ୍ୟ ଏକ ସ୍ଥାନରେ ବସବାସ କରିବା ଦ୍ୱାରା ପରସ୍ପର ମଧ୍ୟରେ ସାମାଜିକ ସଂପର୍କ ଦୃଢ଼ ହେବାକୁ ଲାଗିଲା । ଜୀବନ ଯାପନ ପ୍ରଣାଳୀ ସଭ୍ୟ, ଉନ୍ନତ ଓ ସୁଖମୟ ହେଲା । ମନରେ ଧର୍ମ ବିଶ୍ୱାସ ଜାଗ୍ରତ ହୋଇ ପୂଜା ପଦ୍ଧତିର ବିକାଶ ଘଟିଲା । ସେମାନେ କ୍ରମେ ଏକ ରାଷ୍ଟ୍ରର କଳ୍ପନା କରି ସଂଗଠିତ ଶାସନ ପ୍ରଣାଳୀର ଭିତ୍ତିସ୍ତମ୍ଭ ପ୍ରତିଷ୍ଠା କଲେ । ଲେଖା ପଢ଼ା ପାଇଁ ଛବିଲିପି ଉଦ୍ଭାବନ କରି ମନର ଭାବ ପ୍ରକାଶ କଲେ ।



# ବୈତରଣୀ ସଭ୍ୟତା

ଚୀନ, ମିଶର, ସୁମେରିଆ ଓ ଭାରତର ସିନ୍ଧୁ ନଦୀ ଉପତ୍ୟକାର ସଭ୍ୟତା ପରି କେନ୍ଦୁଝରରେ ଏକ ପ୍ରାଚୀନ ନଦୀ ଉପତ୍ୟକା ସଭ୍ୟତା ଗଢି ଉଠିଥିଲା । ଏହି ସଭ୍ୟତା ବୈତରଣୀ ସଭ୍ୟତା ନାମରେ ଖ୍ୟାତ ଅଟେ ।

ପଣ୍ଡିତମାନଙ୍କ ମତରେ ଆର୍ଯ୍ୟ ସଭ୍ୟତାର ବିକାଶ ପୂର୍ବରୁ ଦ୍ରାବିଡମାନେ ଆଜକୁ ପ୍ରାୟ ପାଞ୍ଚ ସହସ୍ର ବର୍ଷ ପୂର୍ବେ ସିନ୍ଧୁ ସଭ୍ୟତା ପ୍ରତିଷ୍ଠା କରିଥିଲେ ମେହେଞ୍ଜୋଦାରୋ ଓ ହରପ୍ପାଠାରେ । ସେହିପରି ବୈତରଣୀ ନଦୀ ତୀରରେ ବାସ କରୁଥିବା ଆଦିମ ଅଧିବାସୀମାନେ ସୀତାବିଞ୍ଜି, ଅଶନପାଟ ପ୍ରଭୃତି ସ୍ଥାନରେ ଉନ୍ନତ ନଗ୍ର ଗଠନ କରି ଶୈଳଚିତ୍ର ଓ ଶିଳାଙ୍କନ କରି ଅଛନ୍ତି । ଏହିପରି ଶୈଳଚିତ୍ର ଅନ୍ୟତ୍ର କ୍ୱଚିତ ଦେଖାଯାଏ ।

ଯେତେବେଳେ ସମଗ୍ର ବିଶ୍ୱରେ ମାନବ ସମାଜ ଉଲଗ୍ନ ଜୀବନ ଯାପନ କରୁଥିଲା ଏବଂ ଯୌନ ପ୍ରବୃତ୍ତି ସାଧନ ପାଇଁ କୌଣସି ପ୍ରକାର ବାଛବିଚାର ନଥିଲା, ସେହି ଉଚ୍ଛୃଙ୍ଖଳିତ ସମାଜର ଶୃଙ୍ଖଳାଗତ ବିଧାନ ପାଇଁ ଗୋନାସିକାଠାରେ ଦୀର୍ଘତମା ନାମକ ଜଣେ ଋଷି ସର୍ବପ୍ରଥମେ ମାନବ ସମାଜରେ ବୈବାହିକ ବ୍ୟବସ୍ଥା ପ୍ରଚଳନ କରାଇ ଥିଲେ । ତେଣୁ ସିନ୍ଧୁ ସଭ୍ୟତା ବିକାଶର ବହୁ ପୂର୍ବରୁ ଯେ ବୈତରଣୀ ସଭ୍ୟତା ପ୍ରସିଦ୍ଧି ଲାଭ କରିଥିଲା ଏଥିରେ ସନ୍ଦେହ ନାହିଁ ।

ପୌରାଣିକ ବର୍ଣ୍ଣନାରୁ ଜଣାଯାଏ ଯେ, ଦକ୍ଷିଣ ସମୁଦ୍ର ବେଳାଭୂମିଠାରୁ ବୈତରଣୀ ନଦୀର ଦକ୍ଷିଣ ତୀର ଦେଶ ପର୍ଯ୍ୟନ୍ତ ଅଞ୍ଚଳ ମତ୍ସ୍ୟଦେଶ ନାମରେ ଓ ବୈତରଣୀ ନଦୀର ଉତ୍ତର ତୀର ଦେଶରୁ ଗଙ୍ଗା ନଦୀର ଦକ୍ଷିଣ ପାର୍ଶ୍ୱ ପର୍ଯ୍ୟନ୍ତ ସମୁଦାୟ ଅଞ୍ଚଳ ମଦ୍ର ଦେଶ ନାମରେ ବିଖ୍ୟାତ ଅଟେ । ବିରାଟ ପର୍ବରେ ବର୍ଣ୍ଣିତ ହୋଇଅଛି ଯେ, ମଦ୍ର-ମତ୍ସ୍ୟ ରାଷ୍ଟ୍ରଦ୍ୱୟ ବିରାଟ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ସେହି ଦିନଠାରୁ ମଦ୍ର-ମତ୍ସ୍ୟ ରାଷ୍ଟ୍ରଦ୍ୱୟ ପରସ୍ପର ସହିତ ମିଶି ଯାଇ ଗୋଟିଏ ବିଶାଳ ରାଜ୍ୟ ଗଠନ କରିଥିଲେ । କାଳକ୍ରମେ ଏହି ମଦ୍ରମତ୍ସ୍ୟ ଦେଶଦ୍ୱୟ ଖିଜିଙ୍ଗ ମଣ୍ଡଳ ନାମରେ ଅଭିହିତ ହୋଇଥିବା ଅନୁମାନ କରାଯାଏ । ବର୍ତ୍ତମାନର ମୟୂରଭଞ୍ଜ ରାଜ୍ୟ ମହାଭାରତ ଯୁଗରେ ମଦ୍ରଦେଶ ଥିବାର ପ୍ରମାଣ ସ୍ୱରୂପ ଖିଚିଙ୍ଗଠାରେ ବିରାଟଗଡର ଧ୍ୱଂଶାବଶେଷ ଓ କିଚକେଶ୍ୱରୀ ମନ୍ଦିର ଅଦ୍ୟାବଧି ବିଦ୍ୟମାନ ରହିଅଛି । "ବିଶ୍ୱକୋଷ" ପୁସ୍ତକ ବର୍ଣ୍ଣନାରୁ ଦେଖାଯାଏ ଯେ, ମୟୂରଭଞ୍ଜ ଅନ୍ତର୍ଗତ କୋଇଁସାରି ଗ୍ରାମ ବିରାଟପୁର ନାମରେ ପରିଚିତ ଅଟେ । କୋଇଁସାରିଠାରୁ ନୀଳଗିରି ପର୍ଯ୍ୟନ୍ତ ଅଞ୍ଚଳରେ ବିରାଟ ବଂଶ ରାଜ୍ୟ ଶାସନ କରୁଥିଲେ ।

ଅପର ପକ୍ଷରେ ବୈତରଣୀ ନଦୀର ଦକ୍ଷିଣ ପାର୍ଶ୍ୱରେ ଅବସ୍ଥିତ ମତ୍ସ୍ୟଦେଶ ବନାମ ଆଧୁନିକ କେନ୍ଦୁଝର ରାଜ୍ୟର ଚଂପୁଆ ନିକଟରେ ହସ୍ତିନା, ଜଇନ୍ତ୍ରା, ବାରୁଣା, ଯମପ୍ରସ୍ଥ ଓ ଇନ୍ଦ୍ରପ୍ରସ୍ଥ ନାମକ ପାଞ୍ଚ ଗୋଟି ଗ୍ରାମ ଅଦ୍ୟାବଧି ବିଦ୍ୟମାନ ରହି ପାଣ୍ଡବମାନଙ୍କର ନାମକୁ ସ୍ମରଣ କରାଇ ଦେଉଛି । ଏତଦ୍‌ବ୍ୟତୀତ ଅଶନପାଟଠାରେ ଥିବା ଶିଳାଭି

ଲେଖରେ ପାଣ୍ଡବମାନଙ୍କର ଯୁଦ୍ଧ ଯାତ୍ରାର ଚମତ୍କାର ବର୍ଣ୍ଣନା ଦର୍ଶାଇ ଧାରଣାକୁ ଅଧିକ ଦୃଢ଼ କରୁଅଛି । ତେଣୁ ଦ୍ୱାପର ଯୁଗରେ ମଦ୍ର ମତ୍ସ୍ୟ ଦେଶଦ୍ୱୟ କିଛି କାଳ ପାଇଁ ବିରାଟ ରାଜାଙ୍କ ନେତୃତ୍ୱରେ ଗୋଟିଏ ସାମ୍ରାଜ୍ୟଭୁକ୍ତ ହୋଇଥିଲେ ହେଁ, ଇତିହାସ ଯୁଗର ପ୍ରାରମ୍ଭରେ ଏହି ଦୁଇ ରାଜ୍ୟ ଖିଜିଙ୍ଗ ମଣ୍ଡଳ ନାମରେ ଅଭିହିତ ହୋଇ ଦ୍ୱାଦଶ ଶତାବ୍ଦୀରେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ଯାଇ ମୟୂରଭଞ୍ଜ ଓ କେନ୍ଦୁଝର ନାମକ ଦୁଇ ଗୋଟି ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହେଲେ ।

ମହାଭାରତରୁ ପ୍ରମାଣ ମିଳେ ଯେ ଖ୍ରୀଷ୍ଟପୂର୍ବ ୩୧୦୦ ବର୍ଷ ପୂର୍ବେ କେନ୍ଦୁଝର ରାଜ୍ୟ କେତେବେଳେ କଳିଙ୍ଗ ବା କେତେବେଳେ ଉତ୍କଳ ରାଜ୍ୟର ଅଙ୍ଗବିଶେଷ ହୋଇ ଦୁର୍ଦ୍ଧର୍ଷ ଯୁଦ୍ଧପ୍ରିୟ ବନଗିରିବାସୀଙ୍କ ଦ୍ୱାରା ଶାସିତ ହେଉଥିଲା । ସେତେବେଳେ ଏହାର ନାମ ଗିରି-ନଝର ବା ଗୁଝର ବା ଝର ରାଜ୍ୟ ଥିବାର ଅନୁମାନ ହୁଏ ।

ବୌଦ୍ଧ ଧର୍ମ ଶାସ୍ତ୍ର "ବିନୟପିଟକ"ରେ ଲେଖା ଅଛି ଯେ, ଖ୍ରୀ: ପୂ: ୬୦୦ ବର୍ଷ ପୂର୍ବେ ଖିଜିଙ୍ଗ ମଣ୍ଡଳ ଉତ୍କଳ ରାଜ୍ୟର ଅଙ୍ଗ ବିଶେଷ ଥିଲା ଏବଂ ସେଠାରେ ଯେଉଁ ଭାନା ଜାତିର ଲୋକ ବାସ କରୁଥିଲେ, ସେମାନେ ଭଞ୍ଜ ରାଜବଂଶର ମୂଳ ବଂଶଧର ଅଟନ୍ତି ।

—: ୦ :—

## କଳିଙ୍ଗୋଡ୍ରୋତ୍କଳ

ଆଜି ଓଡ଼ିଶା ପ୍ରଦେଶ କହିଲେ ଯେଉଁ ବିକଳାଙ୍ଗ ଓଡ଼ିଶା ଭୂଖଣ୍ଡକୁ ବୁଝାଉ ଅଛି ତାହା କଳିଙ୍ଗ, ଓଡ୍ର ଓ ଉତ୍କଳ ନାମକ ତିନି ଗୋଟି ରାଷ୍ଟ୍ରକୁ ନେଇ ଗଠିତ ହୋଇ ସତ୍ତ୍ୱ, ରଜୋ ଓ ତମୋ ନାମକ ତ୍ରିଗୁଣର ମିଶ୍ରଣରେ ଜୀବ ଦେହର ଉତ୍ପତ୍ତି ହେଲାପରି କଳିଙ୍ଗ, ଓଡ୍ର ଓ ଉତ୍କଳ ରାଷ୍ଟ୍ର ତ୍ରୟର ମିଳନ ଫଳରେ ଓଡ଼ିଶା ପ୍ରଦେଶ, ଓଡ଼ିଆ ଜାତି ଓ ଓଡ଼ିଆ ଭାଷା ସଂସ୍କୃତିର ଉତ୍ପତ୍ତି ନିତ୍ୟ ସତ୍ୟ ଅଟେ । ଏହି ମହାମିଳନର ନିଦର୍ଶନ ସ୍ୱରୂପ ଓଡ଼ିଆ ଜାତିର ପରମ ଇଷ୍ଟଦେବତା ତ୍ରୟର ସଗୁଣ ପ୍ରକାଶ-ଅଭିନବ ପରିକଳ୍ପନା ଅଟେ । ଏହାହିଁ ହେଉଛି ଓଡ଼ିଆ ଜାତିର ବିଶ୍ୱବନ୍ଦନୀୟ ବର୍ଣ୍ଣାଢ୍ୟ ବିକାଶ ।

ଆଦିମ ଯୁଗରୁ ଏଠାରେ ଶାବରୀ ସଂସ୍କୃତିର ବିଶାଳ ଗର୍ଭରେ ଦ୍ରାବିଡ ଓ ଆର୍ଯ୍ୟ ସଭ୍ୟତା ଆଶ୍ରୟ ନେଇ ମହାଭାରତୀୟ ସଭ୍ୟତାର ପ୍ରାଣ କେନ୍ଦ୍ର ହୋଇ ରହି ଆସିଛି । ଉତ୍ତର ଓ ଦକ୍ଷିଣ ଭାରତର କେନ୍ଦ୍ର ବିନ୍ଦୁରେ ଅବସ୍ଥିତ କଳିଙ୍ଗୋଡ୍ରୋତ୍କଳ ପ୍ରଦେଶର ବିଶାଳ ଶାବରୀ ସଂସ୍କୃତି ଆର୍ଯ୍ୟ ଓ ଦ୍ରାବିଡ ନାମକ ବିବଦମାନ ସଂସ୍କୃତି ମଧ୍ୟରେ ଭାରସାମ୍ୟ ରକ୍ଷା କରି ଧର୍ମ-ଐକ୍ୟ ଧ୍ୱଜା ଉଡ଼ାଇ ଅଛି । ଓଡ଼ିଶାର ଶାବରୀ ସଂସ୍କୃତି ସହିତ ଆର୍ଯ୍ୟ ଓ ଦ୍ରାବିଡ ସଂସ୍କୃତିର ମହାମିଳନ ଘଟି ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି ନାମରେ ମହାଭାରତୀୟ ଧର୍ମ ସଂସ୍କୃତିର ଉତ୍ପତ୍ତି ହୋଇଥିଲେ ହେଁ ଏହାଠାରେ ବିଶ୍ୱ ମାନବ ସଂସ୍କୃତି ଏଥିରେ ସନ୍ଦେହ ନାହିଁ ।

ଶାବରୀ, ଦ୍ରାବିଡ ଓ ଆର୍ଯ୍ୟ ସଂସ୍କୃତିର ମହାମିଳନର ନିଦର୍ଶନ ସ୍ୱରୂପ ଶ୍ୱେତାଙ୍ଗ ବଳଦେବ, ଲୋହିତାଙ୍ଗ ସୁଭଦ୍ରା ଓ କୃଷ୍ଣାଙ୍ଗ ଜଗନ୍ନାଥ ମୂର୍ତ୍ତି ତ୍ରୟ କଳ୍ପିତ ହୋଇଥିବା ସ୍ୱାଭାବିକ ଅଟେ ।

ମଧ୍ୟ ଭାରତ ଉତ୍କଳର ଶାବରୀ ସଂସ୍କୃତି ସହିତ ଦକ୍ଷିଣ ଭାରତର ଦ୍ରାବିଡାନୁସୃତ ରୁଦ୍ର ସଂସ୍କୃତି ଓ ଉତ୍ତର ଭାରତର ଆର୍ଯ୍ୟାନୁସୃତ ବ୍ରାହ୍ମଣ୍ୟ ସଂସ୍କୃତିର ମହାମିଳନ ଘଟି ଭାରତୀୟ ଜାତୀୟ ସଂସ୍କୃତି, ଧର୍ମ ଐକ୍ୟ ଓ ବିଶ୍ୱ ଭ୍ରାତୃପ୍ରୀତି ପ୍ରତିଷ୍ଠିତ ହୋଇ ଅଛି । ଅପର ପକ୍ଷରେ ବିଶ୍ୱ ମାନବ ସମାଜ ଶ୍ୱେତ, ଲୋହିତ ଓ କୃଷ୍ଣ-ତ୍ରିବର୍ଣ୍ଣ ବିଶିଷ୍ଟ ହୋଇଥିବାରୁ ତାହାର ବର୍ଣ୍ଣାଢ୍ୟ ବିକାଶ ସ୍ୱରୂପ ଓଡ଼ିଶୀ ସଂସ୍କୃତି ଜନ୍ମ ଲାଭ କରି ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ବିଶ୍ୱ ମାନବ ପ୍ରତି ପ୍ରଚାର କରୁଅଛି । ଓଡ଼ିଶୀ ଧର୍ମ ସଂସ୍କୃତିରେ ଏହିପରି ବର୍ଣ୍ଣାଢ୍ୟ ପ୍ରକାଶ ଅଭିନବ ଧାରଣା ଅଟେ ।

ସ୍ୱାଧୀନ ଭାରତର ଜାତୀୟ ପତାକା ଶ୍ୱେତ, ଲୋହିତ ଓ ପୀତ-ତ୍ରିବର୍ଣ୍ଣ ଧାରଣ କରି ସତ୍ୟ, ଶାନ୍ତି ଓ ଅହିଂସା ବାର୍ତ୍ତା ପ୍ରଚାର କରି ବିଶ୍ୱ ପ୍ରସିଦ୍ଧି ଲାଭ କରିଅଛି । ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି ଓଡ଼ିଆ ଜାତିର ନିଜସ୍ୱ ଧର୍ମ ଧାରଣା ହେଲେ ହେଁ, ବାସ୍ତବରେ ଏହା ବିଶ୍ୱ ମାନବ ଧର୍ମର ପ୍ରାଣ କେନ୍ଦ୍ର ଅଟେ । ଅହଂକାରୀ ଅଣଓଡ଼ିଆ ଓଡ଼ିଆ ଜାତିର ଏହି ମହାନୁଭବତାକୁ ମୁଖରେ ସ୍ୱୀକାର କରିବାକୁ କୁଣ୍ଠାବୋଧ କରୁଥିଲେ ହେଁ, ତାହା ହୃଦୟର ନିଭୃତ କୋଣରେ ଯେ ଏହି ଚିରନ୍ତନ ସତ୍ୟକୁ ଗୋପନ ରଖିଛି ଏଥିରେ ସନ୍ଦେହ ନାହିଁ ।

କଳିଙ୍ଗ, ଉଡ୍ର ଓ ଉତ୍କଳ-ଏହି ତିନି ରାଷ୍ଟ୍ର ଗୋଷ୍ଠୀର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ମିଳନ ଘଟି ଓଡ଼ିଶା ଦେଶ, ଓଡ଼ିଆ ଜାତି ଓ ଭାଷା ସଂସ୍କୃତିର ଉତ୍ପତ୍ତି ହୋଇଥିବା ପ୍ରମାଣ ନିମ୍ନ ମତେ ପ୍ରତିପାଦିତ ହୁଏ । ଯଥା :—

| | (୧) | | | (୨) | \| |
|---|---|---|---|---|---|
| ଓ | ଡ଼ | ଶା | ଉଷା | ଦିବସ | ରାତ୍ରି |
| ଅ | ଉ | ମ | ସୂର୍ଯ୍ୟାୟଣ | ଚନ୍ଦ୍ରାୟଣ | କୃଷ୍ଣାୟଣ |
| ସତ୍ତ୍ୱ | ରଜ | ତମୋ | ଜନ୍ମ | ଜରା | ମୃତ୍ୟୁ |
| ଋକ୍ | ସାମ | ଯଜୁଃ | ବାତ | ପିତ୍ତ | କଫ |
| ଶୁକ୍ଳ | ଲୋହିତ | କୃଷ୍ଣ | ହରିଡ଼ା | ବହେଡ଼ା | ଅଁଳା |
| ରୁଦ୍ର | ବ୍ରହ୍ମା | ବିଷ୍ଣୁ | ଇଅଁଳା | ପିଅଁଳା | ସୁଷୁମ୍ନା |
| ମନ | ଚନ୍ଦ୍ର | ପବନ | ଗଙ୍ଗା | ଯମୁନା | ସରସ୍ୱତୀ |
| ଶିବ | ସୁନ୍ଦର | ସତ୍ୟ | ପୁଂ | ସ୍ତ୍ରୀ | କ୍ଲୀବ |
| ବଳଦେବ | ସୁଭଦ୍ରା | ଜଗନ୍ନାଥ | ଭାଷା | ସ୍ୱର | ଲିପି |
| ଆର୍ଯ୍ୟ | ଦ୍ରାବିଡ଼ | ଶାବରୀ | ନିହାଣ | ମୁଗୁର | ବାଇଶି |
| ବ୍ରାହ୍ମଣ | କ୍ଷତ୍ରିୟ | ଶୂଦ୍ର | କୃଷି | ଶିଳ୍ପ | ବାଣିଜ୍ୟ |
| ଜାତି | ଧର୍ମ | ବର୍ଣ୍ଣ | କଳିଙ୍ଗ | ଉଡ୍ର | ଉତ୍କଳ |
| ବିଦ୍ୟାପତି | ଇନ୍ଦ୍ରଦ୍ୟୁମ୍ନ | ବିଶ୍ୱାବସୁ | ଓ | ଡ଼ | ଆ |
| ସ୍ଥିତି | ସୃଷ୍ଟି | ପ୍ରଳୟ | | | |

# ଦ୍ୱିତୀୟ ( ୧୩ ) ପରିଚ୍ଛେଦ

## ପୂଣ୍ୟତୋୟା ବୈତରଣୀ

କେନ୍ଦୁଝର ଗିରନିର୍ଝର ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳ ହୋଇଥିବାରୁ ମହାଓଡ଼ିଶା, ଭାରତ ତଥା ପୃଥିବୀ ପୃଷ୍ଠରେ ଏକ ପ୍ରାଚୀନତମ ସ୍ଥାନ ଅଟେ । ପୂଣ୍ୟତୋୟା ବୈରତଣୀ ନଦୀ ଯେଉଁ ପର୍ବତରୁ ବାହାରିଅଛି ତାହାର ଆକୃତି ଗୋନାସିକା ସାଦୃଶ୍ୟ ହୋଇଥିବାରୁ ଏହି ପର୍ବତର ନାମ ଗୋନାସିକା ଅଟେ । ଗୋନସିକା ପର୍ବତ କେନ୍ଦୁଝରଗଡଠାରୁ ଦଶ ମାଇଲ ଦକ୍ଷିଣରେ କେନ୍ଦୁଝର-ତେଲକୋଇ ରାସ୍ତାର ଅନତି ଦୂରରେ ଅବସ୍ଥିତ । ଏହାର ଉଚ୍ଚତା ୩୨୧୯ ଫୁଟ ଅଟେ । ବୈତରଣୀ ନଦୀ ଏହି ପର୍ବତର ୩୧୦୦ ଫୁଟ ଉଚ୍ଚରୁ ନିମ୍ନ ଦେଶକୁ ପ୍ରବାହିତ ହୋଇ ୩୪୪ କି: ମି: ପଥ ଅତିକ୍ରମ କରି ଧାମରା ମୁହାଣରେ ଅବସ୍ଥିତ ବୃନ୍ଦାବନଠାରେ ପୂର୍ବ ସାଗର ସହିତ ମିଶିଅଛି । ଏହାର ଅବବାହିକା ୧୦୪୪୦ ବର୍ଗ କି:ମି: ଅଟେ । ଏହି ନଦୀ କେନ୍ଦୁଝର ଜିଲ୍ଲା ମଧ୍ୟରେ ୨୦୦ ବର୍ଗ କି: ମି: ପ୍ରବାହିତ ହୋଇଅଛି ।

ଶାସ୍ତ୍ରୀୟ ପ୍ରବାଦ ଅଛି ସତ୍ୟ ଯୁଗରେ ରାଜା ଯଜାତିଙ୍କ ନିମନ୍ତ୍ରଣ କ୍ରମେ ବ୍ରହ୍ମା ବିରଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞ କାର୍ଯ୍ୟ ସମାପନ ନିମନ୍ତେ ସ୍ୱର୍ଗର ଦେବତାମାନଙ୍କ ସହିତ ସୁରଗଙ୍ଗା ବୈତରଣୀଙ୍କୁ ନିମନ୍ତ୍ରଣ କରିଥିଲେ । ଗଙ୍ଗା ନବଧା ଅଟନ୍ତି ଓ ତନ୍ମଧ୍ୟରେ ବୈତରଣୀ ଅନ୍ୟତମ । ସ୍ୱର୍ଗସରଣୀ ବୈତରଣୀ ମର୍ତ୍ତ୍ୟରେ ପ୍ରବାହିତ ହେବା ପାଇଁ ଗୋନାସିକା ପର୍ବତର ଶୀର୍ଷ ଦେଶରେ ହଠାତ୍ ଯେଉଁ ସ୍ଥାନରେ ପ୍ରକାଶ ପାଇଲେ ତାହା ଆରଣ୍ୟକ ଜାତି ଜୁଆଙ୍ଗମାନଙ୍କର କ୍ରିଡାସ୍ଥଳୀ ହୋଇଥିବାରୁ ସେମାନେ କର୍କଷ ପଥରବକ୍ଷରେ ଆକସ୍ମିକ ଜଳ ପ୍ରବାହ ଦେଖି ତାହାର ନିର୍ଗମପଥ ନିରୋଧ କରିବା ନିମନ୍ତେ ନିକଟରେ ପଡିଥିବା ଗୋଟିଏ ଗୋରୁ ମୁଣ୍ଡକୁ ଗୋଟାଇ ଆଣି ଗର୍ତ୍ତଦ୍ୱାରରେ ଠେସ ଦେଲେ । ମାତ୍ର ଏଥିରେ ଜଳଧାର ବନ୍ଦ ନ ହୋଇ ଗୋମୁଣ୍ଡର ଗୋଟିଏ ନାସାରୁ ଜଳ ଓ ଅପର ନାସାରୁ ବାଲି ନିର୍ଗତ ହୋଇ ବହିବାକୁ ଲାଗିଲା । ଏହି ଏଠାରୁ ବୈତରଣୀର ନାମ ଗୋନାସା ପ୍ରଭବା ଓ ପର୍ବତର ନାମ ଗୋନାସିକା ହେଲା ।

ଜୁଆଙ୍ଗ ଜାତି :— ବୈତରଣୀ ନଦୀର ଇତିହାସ ଯେପରି ପ୍ରାଚୀନତମ ଅଟେ ସେହିପରି ଗୋନାସିକା ପର୍ବତର ପାଦ ଦେଶରେ ବାସ କରୁଥିବା ଜୁଆଙ୍ଗ ଜାତିର ଇତିହାସ ମଧ୍ୟ ପ୍ରାଚୀନତମ ଅଟେ । ସେମାନେ ଜହ୍ନୁ ଋଷିଙ୍କର ଅଙ୍ଗଜ ହୋଇଥିବାରୁ ଜୁଆଙ୍ଗ ନାମରେ ଖ୍ୟାତ ଅଟନ୍ତି । ବୈଦିକ ଧର୍ମ ମତରେ ପ୍ରତ୍ୟେକ ମନୁଷ୍ୟ "ଋଷିପୁତ୍ରାଃ" ହୋଇଥିବାରୁ ଜୁଆଙ୍ଗମାନେ ଯେ, ଜହ୍ନୁ ଋଷିଙ୍କ ପୁତ୍ର ଏଥିରେ ସନ୍ଦେହ ନାହିଁ ।

ଜୁଆଙ୍ଗମାନେ ଭୂୟାଁମାନଙ୍କ ଅପେକ୍ଷା ଅଧିକ ଦିନର ଆଦିମ ଅଧିବାସୀ ଅଟନ୍ତି ଓ କେନ୍ଦୁଝରଗଡ଼ର ଦକ୍ଷିଣ ଭାଗ ପର୍ବତରେ ଅଧିକ ପରିମାଣରେ ଦେଖାଯାନ୍ତି । ସେମାନଙ୍କର କଥିତ ଭାଷା ସ୍ୱତନ୍ତ୍ର ଓ ଏହା ନାକରୁ ଉଚ୍ଚାରଣ ହେଲପରି ଶୁଣାଯାଏ । ଯଥା :—

"ଅଲୁ ମିସ୍ଥିଡିଆନ୍ ବଡ ମହରଗିଆନ୍ ମିସନ୍ ଏଡାବଅମ୍ କନାଡେ ଟିଲେଇକ୍ୟା ଖୋସ୍ ଆରେନ୍ ଅଖସିରିଆନ୍ କବ କପିକା ।"

ଅର୍ଥାତ ଅଳ୍ପଦିନ ପରେ ବଡ ଦୁର୍ଭିକ୍ଷ ଉପସ୍ଥିତ ହେବାରୁ ଜୁଆଙ୍ଗ ଖାଦ୍ୟାଭାବରେ ବଡ ଶୋକ କଷ୍ଟ ଅନୁଭବ କରିଥିଲେ ।

ଭାଇ-କକ୍, ଭଉଣୀ-ବକଲଇଏ, ପୁଅ-ଲାଣ୍ଡା, ମରଦ-କାମେଲ, ସ୍ତ୍ରୀ-ଜୁଆଙ୍ଗଡା, ଗାଈ-ଓଲେଇ, କୁକୁର-ସେଲେକ୍, ନାକ-ମଡ଼େଇ, ପାଟି-ଅମଡ୍, ଆଖି-ଅମଟ୍, ପାନଆ-କାଟ୍, ଆରଶି-ଦର୍ପଣ, ଘଡ, ଛଅଣ ବା ଚରକାଶି-ଆରଗ୍ରା, ତେଲ-ହଜନ୍, ପିକା-କାହାଳ, ଦୋକ୍ରା-ବଳେସିଂ ।

ଜୁଆଙ୍ଗମାନେ ଦେଖିବାକୁ ସାଧାରଣତଃ ମୋଟା ଓ କଦାକାର । ସେମାନେ ଶାନ୍ତିପ୍ରିୟ ଜାତି ଅଟନ୍ତି । ଚେଲା ଚାଷ ସେମାନଙ୍କର ପ୍ରଧାନ ଜୀବିକା ଅଟେ । ସେମାନେ ହାଣ୍ଡିଆ ଖାଇ ଚାଙ୍ଗୁ ବଜାଇ ନୃତ୍ୟ କରିବାକୁ ଭଲ ପାଆନ୍ତି । ସ୍ତ୍ରୀମାନେ ପୁରୁଷଠାରୁ ଅଳ୍ପ ଖର୍ବକାୟ । ଜୁଆଙ୍ଗ ଯୁବତୀମାନେ ବେକରେ ବିଭିନ୍ନ ବର୍ଣ୍ଣର ପଥର ଗୋହଲା ମାଳ ପକାଇ ହୃଦୟ ଦେଶ ପର୍ଯ୍ୟନ୍ତ ଆବୃତ ରଖିଥାନ୍ତି । ନାକରେ ଏକ ପ୍ରକାର ଲମ୍ବା ପିତଳ କାଠି ପିନ୍ଧନ୍ତି ଓ ହାତରେ କଙ୍କଣ ମାଳ ବାନ୍ଧିବାର ଦେଖାଯାଏ । ଏହା ସେମାନଙ୍କର ଅତିପ୍ରିୟ ଗହଣା ଅଟେ । ସେମାନେ ହାତ, ଗୋଡ ଓ ମୁଣ୍ଡରେ ଚିତା କୁଟାନ୍ତି । ଜୁଆଙ୍ଗମାନେ ଗୋମାଂସ ଓ ମୃତପଶୁର ମାଂସ ଭକ୍ଷଣ କରନ୍ତି । ଏମାନେ ଏକତ୍ର ବାସ କରନ୍ତି ଓ ଜଣଙ୍କୁ ଦଳପତି ରୂପେ ମାନନ୍ତି । ବୈତରଣୀ ଦେବୀ ଏମାନଙ୍କର ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି । ଏମାନେ ଭୂତ ପ୍ରେତ ବିଶ୍ୱାସ କରନ୍ତି । ମୃତ ଲୋକର ଶବକୁ ପୋତି ଦିଅନ୍ତି । ଏମାନେ ଖଜୁରି ପଟିଆ ବୁଣି ବିକ୍ରୟ କରନ୍ତି । ଏମାନଙ୍କର ସ୍ୱହସ୍ତ ନିର୍ମିତ ବାଂଶ ପାନିଆ ଦେଖିବାକୁ ଅତି ସୁନ୍ଦର ।

ପୃଥିବୀର ଅନ୍ୟତ୍ର ଏହି ଜାତିର ଲୋକ କ୍ୱଚିତ ଦେଖାଯାନ୍ତି । କେନ୍ଦୁଝରରେ ଏମାନଙ୍କ ସଂଖ୍ୟା ପ୍ରାୟ ଛ' ହଜାର ହେବ । ଦାରିଦ୍ର୍ୟ, ଅଶିକ୍ଷା ଓ ଅସ୍ୱାସ୍ଥ୍ୟ କର ବାସଭୂମି ଓ ଅଖାଦ୍ୟ ଭକ୍ଷଣ ଏମାନଙ୍କୁ ଅସଭ୍ୟ ବର୍ବର ଜାତି କରି ରଖିଅଛି । ଏହି ସଂପ୍ରଦାୟର ଲୋକେ ବଞ୍ଚି ରହିବାର ଅଧିକାରରୁ ବଞ୍ଚିତ ହୋଇ କ୍ରମଶଃ ନିଃଶେଷ ହୋଇ ଯାଉଛନ୍ତି । ୧୯୫୧ ମସିହାରେ ଏମାନଙ୍କର ସଂଖ୍ୟା ୧୭୦୦୦ ଥିଲା । ଦଶ ବର୍ଷ ପରେ ୧୯୬୧ ମସିହାରେ ତାହା ୧୨୦୦୦ କୁ ଖସି ଆସିଲା । ୧୯୭୧ ମସିହା ଜନଗଣନାରେ ଏମାନଙ୍କର ସଂଖ୍ୟା ୯୦୦୦ ହୋଇଛି । ରୋଗ ଓ ସୁଷମ ଖାଦ୍ୟର ଅଭାବ ଏହାର ମୁଖ୍ୟ କାରଣ ଅଟେ । ଏହି ସ୍ୱାଭିମାନୀ ଜୁଆଙ୍ଗମାନେ ଦୁଧବାଲାଠାରୁ ଆରମ୍ଭ କରି ଛୋଟ ଛୋଟ କର୍ମଚାରୀମାନଙ୍କ ଦ୍ୱାରା ଶୋଷିତ ହେଉ ଅଛନ୍ତି । ରାଜ୍ୟ ପୋଲିସ ବିଭାଗ ଏହି ଶୋଷଣର ସମାପ୍ତି ଘଟାଇ ସେମାନଙ୍କର ଅଧିକାର ସୁରକ୍ଷା କରିବାକୁ ଦୃଢ ପରିକର । ଜାତୀୟ ସରକାର ଜୁଆଙ୍ଗପୀଡ଼ ଯୋଜନା ଗ୍ରହଣ କରି ବହୁ ସାମାଜିକ ଓ ଅର୍ଥନୈତିକ ପଦକ୍ଷେପ ନେଇଛନ୍ତି । ପ୍ରତ୍ୟେକ ଜୁଆଙ୍ଗକୁ ଏକରେ ଲେଖାଏଁ ଜମି ଚାଷ କରିବାକୁ ଦିଆ ଯାଇଅଛି । ଚାଷ ଉପକରଣ, ବିହନ, ସାର, ଗୃହପାଳିତ ପଶୁ ପକ୍ଷୀ ପ୍ରଭୃତି ଯୋଗାଇ ଦିଆ ଯାଇଛି । କିନ୍ତୁ ରାଜ୍ୟ ପୋଲିସ ବିଭାଗର ସକ୍ରିୟ ସହଯୋଗ ବିନା ଆବଶ୍ୟକୀୟ ପରିବର୍ତ୍ତନ ସମ୍ଭବ ନୁହେଁ । ଯୋଜନା କର୍ତ୍ତୃପକ୍ଷ ଓ ପୋଲିସଙ୍କ ଘନିଷ୍ଠ ସହଯୋଗରେ ସଂପ୍ରତି କାର୍ଯ୍ୟ ଚାଲିଛି ।

"ତୋ କୋଳରେ ଯିନା ଜୁଆଙ୍ଗ ବସନ୍ତି
ଆହାକ ସୁନ୍ଦର ବ୍ରହ୍ମେଶ୍ୱର କନ୍ତି. ।
ଯୁଆଙ୍ଗ ଯୁବତୀ ଆହାକ ସୁନ୍ଦରୀ
ଅଛନ୍ତି ଆନନ୍ଦେ ସୁତସୁତା ଧରି ।
ରକତ ବରନ ଗୁଞ୍ଜା ଥାଉଁ ଥାଉଁ
ସୁନା ରୂପା ହାର ଖୋଜିବ ବା କାହିଁ ।
କେହ୍ବ କେବେ ପିନ୍ଧେ ପ୍ରବାଳର ହାର
ଅମୂଲ୍ୟ ସେ ପୁଷ୍ପି ନଥାଏ କାହାର ।
ସୁଗନ୍ଧ ସୁମନ ଯା ଅଙ୍ଗ ଭୂଷଣ
କୃତ୍ରିମ ଧାତୁରେ ଦେବ କିବା ମନ ।
ପରିଶ୍ରମେ ରତ ରଜନୀ ଦିବସ
ଶୋଭା ପାଏ ସଦା ମୁଖ ହସ ହସ ।
ଆଉ କଏ ପିନ୍ଧେ କୋଇଲି ସୁତାଏ
ସୁନା ସୁତା ଅବା ଗଳେ ଶୋଭା ପାଏ ।
କାହିଁବା ଯୁବକ ହୋଇ ଦଳ ଦଳ
ବୁଲନ୍ତି, କଙ୍କର ଯେଣୁ ମହାବଳ ।
କାଣ୍ଡ, ବଠା, ଠାଙ୍ଗି ଧରିଥାନ୍ତି କରେ
ଏହିତ ସମ୍ବଳ ଧନ ନାହିଁ ଘରେ ।
ବନ୍ୟ ଫୁଲ ଫଳେ ପୂରନ୍ତି ଉଦର
ଦୁର୍ଭିକ୍ଷେ ନଥାଏ ତିଳେ ମାତ୍ର ଡର ।
ମାଂସ ପୁଡ଼ା ବାନ୍ଧି ବୁଲେ ଶିଶୁ କାହିଁ ?
ପୃଷ୍ଠେ ଧନୁଶର ଦେଇଛନ୍ତି ଝୁଲଇ ।
କେହ୍ବ ଅବା ବୁଲେ ବଠା ହାତେ ବନେ
ଭୀତି ଉପୁଜାଇ ବିହଙ୍ଗମ ମନେ ।
ଶ୍ୟାମ ଲତାକୁଞ୍ଜେ ବସିଛନ୍ତି ଗୁପତେ
ଭୀମ ଦନ୍ତାବଳ ବଧିବକ ସତେ ।
ଦନ୍ତାବଳ ମାରି ଘେନିବ ଦଶନ
ନୃପଙ୍କୁ ସତ୍ୱର କରିବ ଦର୍ଶନ ।
ଭେଟି ତାହା ସୁଖେ ଆସିବ ସଦନେ
ପୁରସ୍କାର ଲଭି ଅତି ହୃଷ୍ଟମନେ ।
କାହିଁ ଅବା ବାଳା ଲୋଟନ୍ତି ଭୂତଳେ
ପୁଂସ କାନ୍ଧେ ହାତ ଦେଇ କୁତୁହଳେ ।
ସୁସ୍ୱରେ ବୋଲଇ ମଧୁର ସଙ୍ଗୀତ
ଶୁଣି ଅବା ମୁଗଧ ନହେବ କା ଚିତ୍ତ ।

ପ୍ରେମେ ଯେଣୁ ବନ୍ଧା ଦୁହେଁ ପରସ୍ପରେ
ଭଳେ ଅଦର୍ଶନେ ବ୍ୟକଳ ଅନ୍ତରେ ।
କ୍ଷଣେ କେହ୍ନ କେବେ ହୋଇଲେ ଅନ୍ତର
ବେନଙ୍କ ମାନସେ ଦୁଃଖ ଗୁରୁତର ।
ମନେ ନାହିଁ ଦକା ଲଗେ ଗୁରୁଜନେ
କାନନେ ବୁଲନ୍ତ ଉଲ୍ଲସିତ ମନେ ।
ଲତା ନକୁଞ୍ଜରେ ଖେଳୁଥାନ୍ତ ଦୋଳି
ଏକ ଭୁଜେ ଆନ ଦେଉଥାଏ କୋଳି ।
ଫୁଲ ତୋଳ ଯୁବା ଯୁବତୀର ଗଳେ
ସେ ଗୁଡ଼ ରହସ୍ୟ ବଚନକୁ ବଳେ ।
ବୃକ୍ଷ କୋଟରେ କେବେ ତନୁବାସ
ପିନ୍ଧାଇ ବାଳାରେ ହାସ ପରିହାସ ।
ଦୁର୍ଦ୍ଧର୍ଷ ଜୁଆଙ୍ଗ ଦିଗମ୍ବର ବେଶ
ନାହିଁ ତହିଁ ମାତ୍ର କୁଟମାତ୍ର ଲେଶ ।
ମିଥ୍ୟା ନଜାଣଇ କଦାପି ଜୀବନ
ଫଳ ମୂଳାହାରୀ ପଲ୍ଲବ ବସନ ।
ପର ପଦାର୍ଥରେ ନଥାଏ ମାନସ
ଉଚ୍ଛୁଳେ ହୃଦୟେ ଦେଶ ଭକ୍ତି ରସ ।"

ଗୋନାସିକା ପର୍ବତ ପାଦ ଦେଶରେ ବାସ କରୁଥିବା ଏହି ଜୁଆଙ୍ଗମାନଙ୍କ ଦ୍ୱାରା ବୈତରଣୀ ନଦୀର ପବିତ୍ର ଜଳଧାର ଗୋରକ୍ତ ରଞ୍ଜିତ ହୋଇ ଅପବିତ୍ର ହେବାରୁ ଜଳଧାର ଉତ୍ପତ୍ତି ସ୍ଥଳରୁ କିଛି ଦୂର ପ୍ରବାହିତ ହୋଇ ଗୁପ୍ତଗଙ୍ଗା ଗ୍ରାମଠାରେ ବା ବରେଜା ଗ୍ରାମଠାରେ ଗୋଟିଏ କ୍ଷେତ୍ର ମଧ୍ୟରେ ଗୁପ୍ତ ହୋଇ ଯାଇଛି । ଏହି ସ୍ଥାନକୁ ଗୁପ୍ତ ଗଙ୍ଗା ବୋଲିଯାଏ ।

ବରେଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞର ପୁରୋଧା ବ୍ରହ୍ମା ଯୋଗ ବଳରେ ବୈତରଣୀ ନଦୀର ଅନୁପସ୍ଥିତିର କାରଣ ଜାଣି ପାରି ଗୁପ୍ତ ଗଙ୍ଗା ଗିରିଠାରେ ପ୍ରବେଶ କରି ଭୂଭାଗର ଆଦ୍ୟକୁଶ ଲିଙ୍ଗ ବ୍ରହ୍ମେଶ୍ୱର ଲିଙ୍ଗ ସ୍ଥାପନ କରିଥିଲେ । ବ୍ରହ୍ମକୁଣ୍ଡ ନାମକ ଯଜ୍ଞକୁଣ୍ଡ ଖୋଳାଇ ତହିଁରେ ଶୈବାଗ୍ନି ପ୍ରତିଷ୍ଠା କରି ଅଜପା ମନ୍ତ୍ରଣରେ ଘୃତାହୁତି ପ୍ରଦାନ କରନ୍ତେ ଯଜ୍ଞକୁଣ୍ଡ-ଠାରେ ଅବସ୍ଥିତ ଗୋଟିଏ ବୃହତ ପଥର ବକ୍ଷ ଫଟାଇ ବ୍ରହ୍ମ ବିନ୍ଦୁ ରୂପେ ଜଳବ୍ରହ୍ମଧାର ନିର୍ଗତ ହୋଇ ଯଜ୍ଞକୁଣ୍ଡରେ ପ୍ରବେଶ କରି ଯଜ୍ଞ ଶାନ୍ତ ପୂର୍ବକ ମୂଷଳ ଧାରାରେ ନିମ୍ନକୁ ଗତି କରି ନିଧାରରେ ପର୍ବତ ପଥ ଅତିକ୍ରମ କରି ପୂର୍ବ କ୍ଷୀର ସାଗରରେ ପତିତ ହୋଇଅଛି । ବ୍ରହ୍ମା ଯେଉଁ କୁଣ୍ଡରେ ଯଜ୍ଞ କରିଥିଲେ ଓ ଯେଉଁ କୁଣ୍ଡରେ ସଞ୍ଚିତ ହୋଇ ବୈତରଣୀ ନଦୀ ମୂଷଳ ଧାରରେ ପ୍ରବାହିତ ହେଉଅଛି ତାହାକୁ ବ୍ରହ୍ମକୁଣ୍ଡ ବୋଲିଯାଏ । ବୈତରଣୀ ନଦୀ ନିମ୍ନକୁ ପ୍ରବାହିତ ହୋଇ ତୀର୍ଥ ରାଜ ବରେଜା କ୍ଷେତ୍ରର ପାଦ ପ୍ରକ୍ଷାଳନ କରି ସାଗର ସଙ୍ଗମ

କରନ୍ତି ଧାମରା ମୁହାଣଠାରେ । ଏହି ଧାମରା ମୁହାଣର ଉପକଣ୍ଠରେ ଅବସ୍ଥିତ ଚନ୍ଦ୍ରବାଲି ବା ଚୁନ୍ଦବାଲି ସହର ପୂର୍ବେ କଳିଙ୍ଗର ପ୍ରଧାନ ବନ୍ଦର ଥିଲା । ବ୍ରହ୍ମେଶ୍ୱର ମହେଶ ଆଦ୍ୟ-କୁଶ-ଲିଙ୍ଗ, ଝାଡ଼େଶ୍ୱର ମଧ୍ୟ-କୁଶଲିଙ୍ଗ ଓ ଅଖଣ୍ଡଳମଣି ପାଦ-କୁଶଲିଙ୍ଗ ଅଟନ୍ତି । ବୈତରଣୀର ଉତ୍ପତ୍ତି ସ୍ଥଳରେ ଅବସ୍ଥିତ ବ୍ରହ୍ମେଶ୍ୱରଙ୍କର ଠାରୁ ପାଦଲିଙ୍ଗ ପର୍ଯ୍ୟନ୍ତ ପ୍ରତି ଏକକୋଶ ଦୂରତ୍ୱରେ ଗୋଟିଏ ଗୋଟିଏ କୁଶଲିଙ୍ଗ ବିଦ୍ୟମାନ । ବର୍ତ୍ତମାନ ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ ବ୍ରହ୍ମେଶ୍ୱର ଲିଙ୍ଗ, ବ୍ରହ୍ମକୁଣ୍ଡ, ବରେହ୍ଦା ବା ବରେଡ଼ା ଗ୍ରାମ, ବୈତରଣୀ ଦେବୀଙ୍କର ପ୍ରତିମୂର୍ତ୍ତି ଓ ଜୁଆଙ୍ଗ ଜାତିର ଅବଶେଷ ଦେଖିବାକୁ ମିଳେ ।

ବ୍ରହ୍ମକୁଣ୍ଡଠାରୁ ତିନି ମାଇଲ ଦୂରରେ ଗୁପ୍ତଗଙ୍ଗା ଗିରିର ୩୦୦୦ ଫୁଟ ଉଚ୍ଚରେ ଗୋନାସାରୁ ବିନ୍ଦୁ ଆକାରରେ ଜଳ ନିର୍ଗତ ହୋଇ ଯେଉଁ ପଥର କୁଣ୍ଡରେ ସଞ୍ଚିତ ହୋଇ ନିମ୍ନକୁ କିଛି ଦୂର ପ୍ରବାହିତ ହୋଇ ଗୁପ୍ତଗଙ୍ଗା ଗ୍ରାମଠାରେ ଗୁପ୍ତ ହୋଇଗଲେ ତାହାର ନାମ ତ୍ରିବେଣୀ କୁଣ୍ଡ ଅଟେ । ଏହି ତ୍ରିବେଣୀ କୁଣ୍ଡର ଚଟାଣରେ "ଆଦ୍ୟ ବୈତରଣୀ ଓ ଲକ୍ଷ୍ମୀ ନାରାୟଣ ଭଞ୍ଜ" ବୋଲି ଖୋଦିତ ହୋଇଛି । ଏଠାରେ କେନ୍ଦୁଝର, ମୟୂରଭଞ୍ଜ, ସିଂହଭୂମ, ଧଳଭୂମ, ବଣେଇ, ସୁନ୍ଦରଗଡ଼, ଢେଙ୍କାନାଳ, ପାଲଲହଡ଼ା, ବାମଣ୍ଡା ପ୍ରଭୃତି ରାଜ୍ୟର ପିତୃଭକ୍ତ ପୁତ୍ରମାନେ ସେମାନଙ୍କର ପିତୃଗଣଙ୍କର ଅସ୍ଥି ବିସର୍ଜନ କରିଥାନ୍ତି । ଏଠାରେ ସ୍ନାନ ତର୍ପଣାଦି କଲେ ଗୋବ୍ରହ୍ମ ହତ୍ୟା ଦୋଷ ବିନଷ୍ଟ ହୋଇଥାଏ । ଏହା ଭାରତର ପ୍ରସିଦ୍ଧ ତୀର୍ଥ କ୍ଷେତ୍ର ଅଟେ । ତ୍ରିବେଣୀ କୁଣ୍ଡର ପଶ୍ଚିମ ତୀର ଦେଶରେ ଗୁପ୍ତଗଙ୍ଗା ଗୁମ୍ଫା ଓ ପୂର୍ବ ପାର୍ଶ୍ୱରେ ଦୁଇହସ୍ତ ବିଶିଷ୍ଟ ଅମୃତ କୁମ୍ଭ ଧାରଣ କରିଥିବା ଦ୍ୱାଦଶ ବର୍ଷୀ ନବ ଯୌବନା ବୈତରଣୀ ଦେବୀଙ୍କର ଅର୍ଦ୍ଧ ବିକଶିତ ଅପୂଜିତ ପ୍ରସ୍ତର ମୂର୍ତ୍ତି ବିଦ୍ୟମାନ । ଗୁପ୍ତଗଙ୍ଗା ଗୁମ୍ଫାରେ ଯୋଗାବିଷ୍ଟ ଅଷ୍ଟବକ୍ର ଋଷି ପ୍ରଥମେ ଭଗୀରଥଙ୍କୁ ଏହି ସ୍ଥାନରେ ସୁରଗଙ୍ଗା-ଙ୍କର ଧ୍ୟାନ କରିବା ପାଇଁ ମନ୍ତ୍ର ଉପଦେଶ ଦେଇ ଥିବାର ପ୍ରବାଦ ଅଛି ।

କଥିତ ଅଛି ବ୍ରହ୍ମପ୍ରଳୟ ସମୟରେ ମାରବତୀ କନ୍ୟା ରଜୋବତୀ ହୋଇ ଗୁପ୍ତଗଙ୍ଗା ଗୁମ୍ଫାର ଗର୍ତ୍ତରୁ ରକ୍ତସ୍ରାବ ହୋଇଥାଏ । ଏହା ବିଶ୍ୱଯୋନୀ ମଣ୍ଡଳ ନାମରେ ଖ୍ୟାତ ଅଟେ ।

ଦୃଷ୍ଟାନ୍ତ ସ୍ୱରୂପ ତ୍ରିବେଣୀ କୁଣ୍ଡଠାରୁ ୩୦୦ ଫୁଟ ଉଚ୍ଚରେ ଗୁପ୍ତଗଙ୍ଗା ଗିରିର ଶୀର୍ଷ ଦେଶରେ ଅବସ୍ଥିତ ଗୋଟିଏ ପଥର ବକ୍ଷ ଫଟାଇ ହସ୍ତୀଶୁଣ୍ଢ ପ୍ରାୟ ଜଳଧାର ପ୍ରବାହିତ ହେଉଅଛି । ଏହାହିଁ ହେଉଛି ଆଦ୍ୟ ବୈତରଣୀର ଆଦ୍ୟ ପବିତ୍ର ଜଳଧାର । ଯେଉଁ ସୁପୁତ୍ର ଏହିଠାରେ ପିତୃ ପୁରୁଷମାନଙ୍କୁ ଜଳ ତିଳ ତର୍ପଣ କରେ ତାହାର ପିତୃ ପୁରୁଷଗଣ ଗୋବ୍ରହ୍ମ ହତ୍ୟା ପାପରୁ ବିମୁକ୍ତ ହୋଇ ସ୍ୱର୍ଗବାସ କରନ୍ତି ।

"ତୀର୍ଥ ମଧ୍ୟେ ବୈତରଣୀ
ସୁରଗଙ୍ଗା ପ୍ରବାହିନୀ
ବହେ ପତିତ ପାବନୀ ପିୟୂଷ ଧାର
ସେ ଜଳେ ଯେ କରେ ସ୍ନାନ
ଖଣ୍ଡେ ତାର ପାପ ମାନ
ତା ପାଇଁ ଇନ୍ଦ୍ର ବିମାନ ପଠାନ୍ତି ତ୍ୱରା ।

ଆରେ ତ୍ରିସେ ଦେବ ସମାନେ
ବସେ ଯାଇ ସ୍ୱର୍ଗ ପୁରେ ଶଙ୍କ ସମାନେ ।"

ଉତ୍ପତ୍ତି କ୍ଷେତ୍ରରୁ ଏହି ଜଳଧାର କିଛିଦୂର ପ୍ରବାହିତ ହେବାପରେ, ଗିରିବକ୍ଷରେ ଗୁପ୍ତ ହୋଇ ଯାଇ; ପୁନର୍ବାର ଗୋନାସିକା ସାଦୃଶ୍ୟ ପଥର ବକ୍ଷରୁ କୁଶବିନ୍ଦୁ ପରି, ତ୍ରିଧାରରେ ନିର୍ଗତ ହୋଇ, ତ୍ରିବେଣୀ କୁଣ୍ଡରେ ସଞ୍ଚିତ ହୋଇ, ସେଠାରୁ ମୂଷଳ ଧାରରେ ପ୍ରବାହିତ ହୋଇ ପୁନର୍ବାର ଗୁପ୍ତଗଙ୍ଗା ଗ୍ରାମଠାରେ ଗୁପ୍ତ ହୋଇଯାଇ ବ୍ରହ୍ମକୁଣ୍ଡରେ ଯାଜ୍ଞିକ ପ୍ରକାଶ ଲାଭ କରିଅଛି । ଗୁପ୍ତଗଙ୍ଗା ଗିରିର ଶୀର୍ଷ ଦେଶରେ ଯେଉଁଠାରେ ବୈତରଣୀର ଆଦ୍ୟ ଜଳ ଧାର ହସ୍ତୀଶୁଣ୍ଡ ପ୍ରାପ୍ତ ପ୍ରବାହିତ ହେଉଅଛି ସେସ୍ଥାନର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ଗୋଟିଏ ବୃହତ୍କାୟ ପଥରବକ୍ଷ ଫାଟିଯାଇ ତହିଁରୁ ସର୍ବଦା ରକ୍ତସ୍ରାବ ହେଉଅଛି । ଏହାହିଁ ହେଉଛି ଗିରିବତୀ କନ୍ୟା ରଜୋବତୀ ହେବାର ପ୍ରତ୍ୟକ୍ଷ ପ୍ରମାଣ । ମାତ୍ର ଏହି ସ୍ଥାନ ଘନ ଅରଣ୍ୟ ପୂର୍ଣ୍ଣ ଓ ଶ୍ୱାପଦଶଙ୍କୁଳ, ବନ୍ୟପଶୁ ବହୁଳ ବିଶ୍ୱଯୋନୀ ମଣ୍ଡଳ ହୋଇଥିବାରୁ ନିଷେଧ ସ୍ଥାନ ବା ଅଗମ୍ୟ ଅଟେ । ସାଧାରଣ ଦର୍ଶକ ତ୍ରିବେଣୀ କୁଣ୍ଡଠାରୁ ବୈତରଣୀ ନଦୀର ଆଦ୍ୟ ଜଳଧାର ଉତ୍ପତ୍ତି ହୋଇଅଛି ବୋଲି ମନେ କରିଥାଏ ।

ମୁଁ କେନ୍ଦୁଝର ଜିଲ୍ଲାର ବନ ପ୍ରଦେଶରେ ପଦଯାତ୍ରା କରୁଥିବା ସମୟରେ ଗୋନାସିକାର ତ୍ରିବେଣୀ କୁଣ୍ଡଠାରେ ଜଣେ ଅପରିଚିତ ବୃଦ୍ଧ ସନ୍ନ୍ୟାସୀଙ୍କର ଅନୁକମ୍ପା ଲାଭ କରି ଏହି ଗୁପ୍ତ ସ୍ଥାନ ଦର୍ଶନ କରିବାର ପରମ ସୌଭାଗ୍ୟ ଲାଭ କରିଅଛି । ସେହି ସନ୍ନ୍ୟାସୀ ଗୁରୁଙ୍କ ନିର୍ଦ୍ଦେଶ କ୍ରମେ ମୁଁ ଏହି ପୁସ୍ତକ ଲେଖିବା ଆରମ୍ଭ କଲି । ଏହି କଥା ପାଠକମାନଙ୍କ ପ୍ରତି କପୋଳ କଳ୍ପିତ ହେଲେହେଁ, ମୋ ପକ୍ଷରେ ଏହା ଯେ ସତ୍ୟ ଓ ଚିରଭାସ୍ୱର ଏଥିରେ ସନ୍ଦେହ ନାହିଁ ।

"କାହିଁ ଅବା ଜଣେ ଜଣେ ବ୍ରହ୍ମଋଷି
ଶିଖରୁ ଆସନ୍ତି ଓଁକାର ଉଚ୍ଚରି ।
ଦୀର୍ଘ ଜଟା ଜୁଟେ ମସ୍ତକ ମଣ୍ଡିତ
ଶୁକ୍ଳ ଶ୍ମଶ୍ରୁ ରାଜି ଅଧରେ ଶୋଭିତ ।
ଆଜାନୁ ଲମ୍ବିତ ବାହୁ କି ସୁନ୍ଦର
କରେ କମଣ୍ଡଳୁ ଆହାକି ରୁଚିର ।
ଭସ୍ମ ବିମଣ୍ଡିତ ଧୃତ ଅପଘନ
ନିରେଖି ନହେବ କାହିଁକାର ମନ ।
ଦିବ୍ୟ ଶଙ୍ଖ ଧ୍ୱନି ମୁଖରୁ ନିଃସ୍ୱରେ
କେହିବା ଆସନ୍ତି ସଶିଷ୍ୟେ ସ୍ନେହରେ ।
କାହା ବାମକରେ ଶୋଭଇ ଅଜିନ
କେହୁ ବିଭୂଷିତ ପଲ୍ଲବ ବସନ ।"

ଧନ୍ୟ ଗୋନାସିକା ! ଧନ୍ୟ ତୋହର ମହିମା !

# "ବୈତରଣୀ" ନାମର ଉତ୍ପତ୍ତି

ବୈତରଣୀ ନଦୀ ଏକ ଧାରାରେ ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ପୁରରେ ପ୍ରବାହିତ ହୋଇ ଏହି ତ୍ରିପୁରକୁ ତାଣ କରୁଥିବାରୁ ଏହାର ନାମ ବୈତରଣୀ ଅଟେ ।

ମର୍ତ୍ତ୍ୟପୁରରେ ପ୍ରବାହିତ ବୈତରଣୀ ନଦୀର ଅନ୍ୟତମ ନାମ ଶୋଣିତ-ସୁରା-ଗଙ୍ଗା ଅଟେ । କାରଣ ଗୁପ୍ତଗଙ୍ଗା ଗିରିର ଶୀର୍ଷ ଦେଶରେ ଜଳ ଓ ରଜ ଏକତ୍ର ପ୍ରବାହିତ ହୋଇଥିବାରୁ, ତ୍ରିବେଣୀ କୁଣ୍ଡଠାରେ ପୁନର୍ବାର ନିର୍ଗତ ସମୟରେ ଜୁଆଁଙ୍ଗମାନଙ୍କ ଦ୍ୱାରା ଗୋରକ୍ତ ରଞ୍ଜିତ ହୋଇଥିବାରୁ ଓ ବ୍ରହ୍ମକୁଣ୍ଡରେ ପତିତ ଜଳଧାର ରଜପର୍ବ ଦିନ ପଶୁ ରକ୍ତ ରଞ୍ଜିତ ହେଉଥିବାରୁ ଶୋଣିତ-ଗଙ୍ଗା ନାମରେ ଏହାର ପ୍ରସିଦ୍ଧି ରହିଅଛି । ଜନଶ୍ରୁତି ଅଛି ରାଜା ଯଯାତି ବିରଜା କ୍ଷେତ୍ରରେ ଦଶାଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୁତି ପାଇଁ ବ୍ରାହ୍ମଣମାନଙ୍କର ବ୍ରହ୍ମତ୍ୱର ପରୀକ୍ଷା କରିବା ନିମନ୍ତେ ବୈତରଣୀ ଜଳଧାରରେ ଅଗ୍ନି ସଂଯୋଗ କରାଇବାକୁ ବ୍ରାହ୍ମଣମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ଜଳରେ ଅଗ୍ନି ସଂଯୋଗ କରିବା ସହଜ ବ୍ୟାପାର ହୋଇ ନଥିବାରୁ ନିମନ୍ତ୍ରିତ ବ୍ରାହ୍ମଣମାନେ ଲଜ୍ଜା ପାଇବା ଭୟରେ ଯଜ୍ଞ କ୍ଷେତ୍ର ଛାଡି ପଳାଇ ଗଲେ । କଥିତ ଅଛି ବ୍ରାହ୍ମଣ ସମାଜର ମର୍ଯ୍ୟାଦା ରକ୍ଷା କରିବା ଚିନ୍ତା କରି ଜନୈକ ବୃଦ୍ଧ ବ୍ରାହ୍ମଣ ସ୍ଥାନୀୟ ଶୁଣ୍ଢୀର ସାହାଯ୍ୟରେ ନଦୀର ଜଳଧାରରେ ମଦ୍ୟ ଢ଼ାଳାଇ ଜଳରେ ଅଗ୍ନି ସଂଯୋଗ କରାଇଥିଲେ । ତେଣୁ ଯାଜପୁରଠାରୁ ବୈତରଣୀର ନାମ ଶୋଣିତ-ସୁରା-ଗଙ୍ଗା ନାମରେ କଥିତ ଅଟେ ।

ପ୍ରବାଦ ଅଛି ବୈରୋଚନ ନାମକ ଦୈତ୍ୟ ଏକଦା ବନ ପ୍ରଦେଶରେ ଭ୍ରମଣ କରୁ କରୁ ଗୋନାସିକାର ପାର୍ବତ୍ୟ ପ୍ରଦେଶରେ ଜଳାଭାବ ଲକ୍ଷ୍ୟ କରି କ୍ରୋଧରେ ପର୍ବତ ବକ୍ଷରେ ତ୍ରିଶୂଳ ପ୍ରହାର କରନ୍ତେ ପଥର ବକ୍ଷ ଫାଟି ଯାଇ ଯେଉଁ ତ୍ରିଧାର ଜଳ ପ୍ରବାହିତ ହେଲା ତାହାର ନାମ ବୈରୋଚନୀ ବା ବୈତରଣୀ ଅଟେ ।

କେନ୍ଦୁଝର ରାଜ୍ୟର ପ୍ରାକୃତିକ ଆକୃତି ତ୍ରିଭୁଜାକାର ହୋଇଥିବାରୁ ଏବଂ ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ ଏହି ରାଜ୍ୟ ତିନି ଗୋଟି ପ୍ରଦେଶରେ ବିଭକ୍ତ ହୋଇଥିବାରୁ ଏହାର ନାମ ବୈତରଣୀ ହୋଇଥିବାର ଅନୁମାନ କରାଯାଏ । ବିଶେଷତଃ ବୈତରଣୀ ଜଳଧାର ତ୍ରିବାର ଗୁପ୍ତ ଓ ତ୍ରିବାର ପ୍ରକାଶ ପାଇଥିବାରୁ ଏହାର ନାମ ବୈତରଣୀ ଅଟେ । ଏହା ଶୀର୍ଷ ଦେଶରେ ବ୍ରହ୍ମେଶ୍ୱର, ମଧ୍ୟ ଦେଶରେ ଝାଡେଶ୍ୱର ଓ ପାଦଦେଶରେ ଆଖଣ୍ଡଳେଶ୍ୱର ନାମକ ତ୍ରିଲିଙ୍ଗଙ୍କୁ ତର୍ପଣ କରୁଥିବାରୁ ଏହାର ନାମ ବୈତରଣୀ ହୋଇଅଛି ।

ଗୋନାସିକା ପର୍ବତର ପାଦ ଦେଶରେ ଅବସ୍ଥିତ କରେଡା ଗ୍ରାମର ଅଧିଷ୍ଠାତ୍ରୀ ଦେବୀ ପାଟ ବୈତରଣୀ ହୋଇଥିବାରୁ ନଦୀର ନାମ ବୈତରଣୀ ହେବା ସ୍ୱାଭାବିକ ଅଟେ ।

ଯେଉଁ ନଦୀକୁ କେବଳ ନୌକା ଦ୍ୱାରା ପାର ଉତ୍ତାର କରିବାକୁ ହୁଏ କିନ୍ତୁ ନଦୀ ମଧ୍ୟରେ ପ୍ରବେଶ କରି ପାଦରେ ଅତିକ୍ରମ କରାଯାଇ ପାରେ ନାହିଁ - ତାହାକୁ ବୈତରଣୀ ନଦୀ ବୋଲାଯାଏ ।

ବୈତରଣୀର ବ୍ୟୁତ୍ପତ୍ତି ନିମ୍ନମତେ କରାଯାଇଅଛି ।

"ସର୍ବତ୍ର ସୁଲଭା ଗଙ୍ଗା
ତ୍ରିଷୁ ସ୍ଥାନେଷୁ ଦୁର୍ଲଭାଃ
ହରଦ୍ୱାରେ ପ୍ରୟାଗେଷୁ ଗଙ୍ଗା ସାଗର ସଙ୍ଗମେ ।
ହରଦ୍ୱାରାତ୍, ପ୍ରୟାଗାତ ସାଗର ସଙ୍ଗମାତ୍,
ବିଶେଷାତ୍ ତାରୟେତ ଯସ୍ମାତ୍ ତସ୍ମାତ୍
ବୈତରଣୀ ସ୍ମୃତାଃ ।"

ଅର୍ଥାତ ଗଙ୍ଗା ଅତି ପବିତ୍ର ନଦୀ ଅଟେ । ତାହା ସର୍ବତ୍ର ସୁଲଭା । କିନ୍ତୁ ତିନିଗୋଟି ସ୍ଥାନରେ ଦୁର୍ଲଭ ଅର୍ଥାତ ପବିତ୍ରତମା । କିନ୍ତୁ ଯେଉଁ ନଦୀ ହରଦ୍ୱାର, ପ୍ରୟାଗ ଓ ଗଙ୍ଗା ସାଗର ସଙ୍ଗମଠାରୁ ବିଶେଷ ରୂପେ ତ୍ରାଣ କରେ ତାହାକୁ ବୈତରଣୀ କହନ୍ତି ।

# ଶାକ୍ତକ୍ଷେତ୍ର ଗୋନାସିକା

ପଶୁବଳୀ ପ୍ରଥା କେନ୍ଦୁଝରରେ ଗୋଟିଏ ସାର୍ବଜନୀନ ବ୍ୟବସ୍ଥା ଅଟେ । ମାଂସ ଭକ୍ଷଣ ପାଇଁ ହେଉ ବା ଅନ୍ୟ ଯେ କୌଣସି କାରଣରୁ ହେଉ ପୃଥିବୀର ବିଭିନ୍ନ ଧର୍ମାବଲମ୍ବୀ ପଶୁବଳୀ କରିଥାଏ ବା କରାଇଥାଏ । ଏପରିକି କାରଣ ନଥାଇ ମଧ୍ୟ କେତେକ ନରବଳୀ ପ୍ରଭୃତି ଜଘନ୍ୟ କାର୍ଯ୍ୟ କରିଥାନ୍ତି ।

ବ୍ରହ୍ମେଶ୍ୱର ମହେଶଙ୍କ ବେଢା ମଧ୍ୟରେ ପୂଜିତ ହେଉଥିବା ତାରଣୀଙ୍କ ଶାଳରେ ଦୈନିକ ପଶୁବଳୀ ହୋଇଥାଏ । ଏଠାରେ ପ୍ରତିଦିନ ଏତେ ସଂଖ୍ୟାରେ ପଶୁବଧ ହୋଇଥାଏ ଯେ, ବଳୀଖମ୍ବ ମୂଳରେ ସର୍ବଦା ପ୍ରାୟ ତିନି ଅଙ୍ଗୁଳି ଗଭୀରରେ ସଦ୍ୟରକ୍ତ ଧାର ବିଦ୍ୟମାନ ଥାଏ । ବର୍ଷର କୌଣସି ଦିନ ଏଠାରୁ ରକ୍ତ ଧାର ଶୁଖିଯାଏ ନାହିଁ । କାରଣ ବନ ଗିରିବାସୀଙ୍କର ବିଶ୍ୱାସ ଯେଉଁ ଦିନ ଏହିଠାରୁ ରକ୍ତଧାର ସୁଖି ଯିବ ସେହିଦିନ ଶୀର୍ଷ ବୈତରଣୀର ଗୁପ୍ତଗଙ୍ଗା ଗୁମ୍ଫା ଗର୍ତ୍ତରୁ ରଜ ବା ରକ୍ତ ପ୍ରବାହିତ ହୋଇ ଗ୍ରାମ ବୁଡାଇ ଦେବ ।

# ବୈତରଣୀ ମହାତ୍ମ୍ୟ

ପୁଣ୍ୟତୋୟା ବୈତରଣୀ ତୀର୍ଥ ଜଳରେ ସ୍ନାନ କରି ବିରଜା ମଣ୍ଡଳରେ ପିତୃ ପୁରୁଷଗଣଙ୍କୁ ପିଣ୍ଡ ପ୍ରଦାନ କଲେ ସପ୍ତପୁରୁଷ ସନ୍ତୋଷ ଲାଭ କରନ୍ତି ।

କେଉଁ ଆବହମାନ କାଳରୁ ବୈତରଣୀ ନଦୀ ବିରଜା କ୍ଷେତ୍ର ଯଜ୍ଞପୁର ବା ଯାଜପୁର କଣ୍ଠ ଦେଶରେ ମୁକ୍ତାହାର ସ୍ୱରୂପ ଶୋଭା ପାଉଅଛି । ମହାଭାରତରେ ବର୍ଣ୍ଣିତ ବୈତରଣୀ ନଦୀର ବର୍ଣ୍ଣନାରୁ ଜଣା ଯାଏ ଯେ, ଦ୍ୱାପର ଯୁଗରେ ବୈତରଣୀ ନଦୀ କଳିଙ୍ଗ ରାଜ୍ୟାନ୍ତର୍ଗତ ଥିଲା । ବିରଜା କ୍ଷେତ୍ରର ପ୍ରତିଷ୍ଠାତା ଯଜାତି କେଶରୀ ଏଠାରେ ଦଶାଶ୍ୱମେଧ ଯଜ୍ଞର ପୂର୍ଣ୍ଣାହୁତି ସମୟରେ କ୍ଷେତ୍ରାଧିପତି ମା' ବିରଜା ଯଜ୍ଞକୁଣ୍ଡରୁ ଜାତ

ହୋଇ ସ୍ୱଦେହରେ ଏଠାରେ ପ୍ରତିଷ୍ଠିତ ଓ ପୂଜିତ ହେଉ ଅଛନ୍ତି । ତେଣୁ ମହାଭାରତ ଯୁଗର ପ୍ରାରମ୍ଭରୁ ବିରଜା କ୍ଷେତ୍ର ଭାରତର ଅନ୍ୟତମ ପ୍ରସିଦ୍ଧ ତୀର୍ଥ ଭୂମି ଅଟେ । ଏହି ପବିତ୍ର ସ୍ଥାନର ପ୍ରତ୍ୟେକ ରେଣୁ ଦିବ୍ୟଶକ୍ତି ପ୍ରଦାୟକ ଅଟେ । କବି ଭାଷାରେ :—

"ଗୋନାସା ପ୍ରଭବା ଶ୍ରୀ ବିରଜା ଦେବୀ
ଦେଉଳ ପାବଚ୍ଛ ଧୋଇ,
ତୀର ଘନ-ବନ ଲକ୍ଷ୍ମୀ ଛାମୁରେ କି
ମଣି ଦରପଣ ଥୋଇ ।
ଭବର ଭଙ୍ଗୁର ବିଳାସକୁ ହସି
ନିର୍ମଳ ଫେନ ନିବହେ;
ଯା ଶାଶ୍ୱତ ସ୍ରୋତ ଶାଶ୍ୱତ ଶକ୍ତିଙ୍କୁ
ଶାଶ୍ୱତ ସିନ୍ଧୁକୁ ବହେ ।"

ବହୁ ପ୍ରାଚୀନ କାଳରୁ ଓଡ଼ିଶାକୁ ଦୁଇଗୋଟି ସାଂସ୍କୃତିକ ମଣ୍ଡଳରେ ବିଭକ୍ତ କରାଯାଇଅଛି । ଗୋଟିଏ ହେଲା ଜଗନ୍ନାଥ ମଣ୍ଡଳ ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ର ପୁରୀ ଓ ଅନ୍ୟଟି ବିରଜା ମଣ୍ଡଳ ଯାଜପୁର । ଏହି ଦୁଇଗୋଟି ମଣ୍ଡଳ ଉତ୍କଳରେ ପ୍ରସିଦ୍ଧି ଲାଭକରିଅଛି । ଶାରଳା ମହାଭାରତର ବର୍ଣ୍ଣନାରୁ ଜଣାଯାଏ ଯେ, ବିରଜା ମଣ୍ଡଳ ବା ଯାଜନଗ୍ର ମଣ୍ଡଳ ଦକ୍ଷିଣରେ ଚିତ୍ରୋତ୍ପଳା ତୀରସ୍ଥିତ ବାରାଣସୀ କଟକ ବା ଆଧୁନିକ କଟକ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଣୁ ମହାନଦୀ ଜଗନ୍ନାଥ ମଣ୍ଡଳ ଓ ବୈତରଣୀର ବିରଜା ମଣ୍ଡଳର ସୀମାରେଖା ଥିଲା । ବାଲେଶ୍ୱର, ମେଦିନୀପୁର, ମୟୂରଭଞ୍ଜ, ସିଂହଭୂମି, ଓ କେନ୍ଦୁଝର ପ୍ରଭୃତି ରାଜ୍ୟ ଗୁଡ଼ିକୁ ନେଇ ବିରଜା ମଣ୍ଡଳ ଗଠିତ ହୋଇ ଯାଜନଗ୍ର ରାଜଧାନୀ ଥିଲା ।

ଭୌମ ଯୁଗର ତାମ୍ର ଶାସନ ଅନୁଧ୍ୟାନରୁ ଜଣାଯାଏ ଯେ, ଅଷ୍ଟମ-ନବମ ଶତାବ୍ଦୀରେ ବିରଜା ମଣ୍ଡଳ ଉତ୍କଳ ନାମରେ ଅଭିହିତ ହେଉଥିଲା ଓ ଯାଜପୁର ରାଜଧାନୀ ଥିଲା । କେଶରୀ ବଂଶର ରାଜା ଯଯାତି କେଶରୀଙ୍କ ଶାସନ କାଳରୁ ବିରଜା ମଣ୍ଡଳ ନାମ ପରିବର୍ତ୍ତେ ଯଜାତି ନଗର ନାମରେ ପ୍ରସିଦ୍ଧି ଲାଭ କରିଥିଲା । ମାଦଳା ପାଞ୍ଜିରେ ଯଜାତି ନଗର ଅଭିନବ ନଗ୍ର ନାମରେ ବର୍ଣ୍ଣିତ ହୋଇଅଛି ।

ଏହି ଦୁଇଗୋଟି ମଣ୍ଡଳ ଅନୁସାରେ ଓଡ଼ିଶାରେ ଜଗନ୍ନାଥ ଓ ବିରଜା ପଞ୍ଜିକା ନାମରେ ଦୁଇଗୋଟି ପଞ୍ଜିକାର ପ୍ରଚଳନ ରହିଅଛି । ପରବର୍ତ୍ତୀ ସମୟରେ ଏହି ଦୁଇଗୋଟି ମଣ୍ଡଳ ଖିଜଙ୍ଗ ମଣ୍ଡଳ ଓ ଖିଞ୍ଜିଲି ମଣ୍ଡଳ ନାମରେ ଅଭିହିତ ହୋଇ ମହାନଦୀକୁ ସୀମରେଖା ରୂପେ ନିର୍ଦ୍ଦିଷ୍ଟ କରାଯାଇଥିଲା । ତେଣୁ ପଣ୍ଡିତ ବିନାୟକ ମିଶ୍ର ଖିଞ୍ଜିଲି ମଣ୍ଡଳର ଗ୍ରାମ ବା ବିଷୟ ଗୁଡ଼ିକ ମହାନଦୀ କୂଳରେ ଅବସ୍ଥିତ ଥିଲା ବୋଲି ମତ ପୋଷଣ କରିଅଛନ୍ତି ।

କଥିତ ଅଛି, ରାଜା ଯଜାତି କେଶରୀ ପୁଣ୍ୟତୋୟା ବୈତରଣୀ ନଦୀର କଣ୍ଠଦେଶରେ ଅବସ୍ଥିତ ଯାଜନଗ୍ରଠାରେ ଦଶାଶ୍ୱମେଧ ଯଜ୍ଞ କାର୍ଯ୍ୟ ସମାପନ ପାଇଁ କାନ୍ୟକୁବ୍ଜ ରାଜ୍ୟରୁ

ଦଶ ସହସ୍ର ବେଦଜ୍ଞ ବ୍ରାହ୍ମଣ ଅଣାଇ ଯଜ୍ଞ କରାଇ ଥିଲେ । ଏହାର ମୁଣ୍ଡ ସ୍ୱରୂପ ବିରଜା କ୍ଷେତ୍ରରେ ପିଣ୍ଡଦାନ ସମୟରେ କାନ୍ୟକୁବଜ୍ର ବ୍ରାହ୍ମଣମାନଙ୍କୁ ସ୍ମରଣ କରାଯାଇ ଅର୍ଘ୍ୟ ପ୍ରଦାନ କରାଯାଇ ଥାଏ । ଯାଜପୁର ଉତ୍କଳର କ୍ରମାଗତ ଦୁଇଗୋଟି ରାଜବଂଶର ରାଜଧାନୀ ରହିଲା ପରେ ଗଙ୍ଗବଂଶ ଶାସନ କାଳରେ ଉତ୍କଳ ଓ କଳିଙ୍ଗ ରାଜ୍ୟ ହସ୍ତର ଏକତ୍ରି କରଣ ଘଟି ଗଙ୍ଗକଟକ ରାଜଧାନୀ ହୋଇ ରହିଲା ।

ମହାଭାରତରେ ବିରୋଜା କ୍ଷେତ୍ରର ବର୍ଣ୍ଣନା ରହିଥିବାରୁ ଏହି କ୍ଷେତ୍ର ରାଜର ପ୍ରତିଷ୍ଠାତା ରାଜା ଯଜାତି ପୁରାଣ ଯୁଗର ରାଜା ଯଜାତି ପରି ମନେହୁଏ ।

ଦ୍ୱିତୀୟତଃ ସତ୍ୟଯୁଗରେ ବିଷ୍ଣୁଙ୍କ ଚକ୍ରରେ ନିହତ ହୋଇଥିବା ଭକ୍ତ ଗୟାସୁରର ନାଭି କ୍ଷେତ୍ରର ନାମ ନାଭିଗୟା ନାମରେ ସତ୍ୟଯୁଗରୁ ପୌରାଣିକ ପ୍ରସିଦ୍ଧି ଲାଭ କରିଅଛି ।

ବିରୋଜା ଦେବୀ ଉକ୍ତ ପିତୃଗଣଙ୍କ ମାନସୀ କନ୍ୟା ହୋଇଥିବାରୁ ଏହି କ୍ଷେତ୍ରରେ ପିତୃଗଣଙ୍କୁ ପିଣ୍ଡ ପ୍ରଦାନ କଲେ ସେମାନେ ସନ୍ତୋଷ ହୋଇ ବଂଶର କଲ୍ୟାଣ କାମନା କରନ୍ତି । ଏହି ପବିତ୍ର କ୍ଷେତ୍ର ଦର୍ଶନରେ ସହସ୍ର ଗୋଦାନ ପୁଣ୍ୟ ଫଳ ମିଳିଥାଏ ।

ବୈତରଣୀ ତୀର୍ଥ ଓ ବିରଜା କ୍ଷେତ୍ର ଏକ ସର୍ବଭାରତୀୟ ତୀର୍ଥ କ୍ଷେତ୍ର ଅଟେ । ଲୋମଶଋଷି ଧର୍ମ ଯୁଧିଷ୍ଠିରଙ୍କୁ କହିଥିଲେ ଯେ, ଗଙ୍ଗା ସାଗର ସଙ୍ଗମଠାରୁ କଳିଙ୍ଗ ରାଜ୍ୟ ଆରମ୍ଭ ହେଲା । କଳିଙ୍ଗରେ ବୈତରଣୀ ନଦୀ ପ୍ରଧାନ ନଦୀ ଅଟେ । ଏହି ନଦୀ ଜଳରେ ଧର୍ମଦେବ ବା ବ୍ରହ୍ମା ଦେବତାମାନଙ୍କ ସହ ଯଜ୍ଞ ଅନୁଷ୍ଠାନ କରିଛନ୍ତି । ଏଠାରେ ଋଷିମାନେ ମଧ୍ୟ ଯଜ୍ଞ କରି ଭୂମିକୁ ପବିତ୍ର କରି ଅଛନ୍ତି । ସ୍ୱର୍ଗଲୋକ କାମନା କରୁଥିବା ପୁଣ୍ୟାତ୍ମାଙ୍କ ନିମନ୍ତେ ଏହି ବୈତରଣୀ ତୀର୍ଥ ଦେବଯାନ ମାର୍ଗ ସଦୃଶ ।

ଆଜକୁ ପାଞ୍ଚ ହଜାର ବର୍ଷ ପୂର୍ବେ ବ୍ୟାସଦେବଙ୍କ ଦ୍ୱାରା ରଚିତ ମହାଭାରତରେ କଳିଙ୍ଗର ଏହି ତୀର୍ଥ ଛଡା ଅନ୍ୟ କୌଣସି ତୀର୍ଥର ନାମ ଉଲ୍ଲେଖ ନଥିବାରୁ ଏହା ପ୍ରଥମ ଓ ପ୍ରାଚୀନ ।

ଏହି ବୈତରଣୀ ସର୍ବ ପାପ ହରଣ କରେ । ଏହି ନଦୀରେ ସ୍ନାନ କଲେ ସମସ୍ତ ପାପ ମୋଚନ ହେବା ସଙ୍ଗେ ସଙ୍ଗେ ନରଶ୍ରେଷ୍ଠତ୍ୱ ପ୍ରାପ୍ତ ହୁଏ ।

ହର ଓ ବରାହ ଠାକୁର ମଧ୍ୟରେ ପ୍ରବାହିତା ବୈତରଣୀ ନଦୀ ଅଂଶ ବିଶେଷକୁ ଗଙ୍ଗା ପରି ପବିତ୍ର ବୋଲାଯାଏ । ଏହି ସ୍ଥାନରେ ଗୋଦାନ କରି ଧର୍ମାତ୍ମାମାନେ ସ୍ୱର୍ଗବାସ କରିଥାନ୍ତି । ଏହାକୁ ବୈତରଣୀଦାନ କୁହାଯାଏ । ଏଠାରେ ଗୟାତୀର୍ଥରେ ନାଭି ଥିବାପରି ଏହାକୁ ନାଭିଗୟା ମଧ୍ୟ ବୋଲାଯାଏ । ଏଠାରେ ପିଣ୍ଡଦାନ କଲେ ସପ୍ତପୁରୁଷ ଉଦ୍ଧାର ହୋଇଯାନ୍ତି ।

ବୈତରଣୀର ଅବସ୍ଥିତି ଦୃଷ୍ଟିରୁ ଏହାର ଶୀର୍ଷ ଦେଶରେ ବା ତ୍ରିକୂଟ ସ୍ଥାନରେ ବ୍ରହ୍ମେଶ୍ୱର, ବକ୍ଷ ଦେଶରେ ଝାଡେଶ୍ୱର ନାଭି ଦେଶରେ ବରାହେଶ୍ୱର ଓ ପାଦ ଦେଶରେ ଆଖଣ୍ଡଳେଶ୍ୱର କୂଣ ଲିଙ୍ଗ ଅସ୍ଥିତ ।

ଏହାର ପ୍ରତି ଏକକ୍ରୋଶ ଦୂରତାରେ ଜଳ ମଧ୍ୟରେ ଗୋଟିଏ ଗୋଟିଏ କୁଣ୍ଡଳିଙ୍କ

ସ୍ଥାପିତ ହୋଇଥିବାରୁ ଏହି ଜଳଧାର ସର୍ବଦା ପବିତ୍ର ଅଟେ । ବସ୍ତ୍ରମହେଶ୍ୱରଙ୍କଠାରୁ ଆଖଣ୍ଡଳେଶ୍ୱର ପର୍ଯ୍ୟନ୍ତ ନଦୀର ଅଂଶକୁ ତୀର୍ଥ କ୍ଷେତ୍ର କହିବା ଅର୍ଥ ଯାଜପୁରଠାରୁ କେନ୍ଦୁଝରର ଗୋନାସିକା ପର୍ଯ୍ୟନ୍ତ ଅଂଶ ବା ନାଭିଠାରୁ ଶୀର୍ଷ ପର୍ଯ୍ୟନ୍ତ ଅଂଶକୁ ଅତୀର୍ଥ ବୋଲି ବୁଝାଯାଇ ନପାରେ । କାରଣ କୌଣସି ଅବୟବର ନାଭିଠାରୁ ପାଦ ପର୍ଯ୍ୟନ୍ତ ଅଂଶକୁ ପବିତ୍ର ବୋଲି ଗ୍ରହଣ କରି ତାହାର ଅପର ଅଂଶକୁ ଅତୀର୍ଥ ବୋଲି କହିବା ଅର୍ଥ ପୁଣ୍ୟତୋୟା ବୈତରଣୀ ମାହାତ୍ମ୍ୟର ମର୍ଯ୍ୟାଦା ଠିକ୍ ରୂପେ ନିର୍ଣ୍ଣିତ ହୋଇ ପାରିନାହିଁ । ତେଣୁ ନାଭି ଠାରୁ ପାଦ ତୀର୍ଥର ଉନ୍ନତି କାମନା କରିବା ସଙ୍ଗେ ସଙ୍ଗେ ବୈତରଣୀର ଶୀର୍ଷ ଦେଶରେ ଅବସ୍ଥିତ ଉତ୍ପତ୍ତି କ୍ଷେତ୍ର ଗୋନାସିକା ତୀର୍ଥର ଉନ୍ନତି ପାଇଁ ଦାବୀ ହେବା ବିଧେୟ । ଗୋନାସିକା ତୀର୍ଥ ପ୍ରସ୍ତାବିତ ଯଖପୁରା ବାଣୀପାଲି ରେଳ ରାସ୍ତାର ସନ୍ନିକଟରେ ଅବସ୍ଥିତ ଥିବାରୁ ଯାଜପୁର କେନ୍ଦୁଝର ହେଉଠାରୁ ଯାଜପୁର ସହରକୁ ରେଳରାସ୍ତା ପଡିବା ଉଚିତ ।

## ବ୍ରହ୍ମତାରିଣୀ

ପରମ ବୈଷ୍ଣବ ବ୍ରହ୍ମେଶ୍ୱର ମହେଶଙ୍କ ମନ୍ଦିର ବେଢାରେ ପଶୁବଳୀ ସଂହାରରେ କୁହାଯାଏ ନାନେ କହନ୍ତି ଯେ, ବ୍ରହ୍ମେଶ୍ୱର ନିଖିଳ ଜଗତର ବ୍ରହ୍ମଲିଙ୍ଗ ଅଟନ୍ତି । ଗୁପ୍ତଗଙ୍ଗାର ବିଶ୍ୱଯୋନୀ ମସ୍ତକରୁ ପ୍ରବାହିତ ଜଳଧାର ରଜ ମିଶ୍ରିତ ଅଟେ । ମାତୃ ରଜ ସହିତ ପିତାର ବ୍ରହ୍ମବୀର୍ଯ୍ୟ ଜନନୀ ଜଠରରେ ଏକତ୍ରିତ ହୋଇ ସନ୍ତାନ ଜାତ ହେଲାପରି ବୈତରଣୀର ଶୋଣିତ-ଗଙ୍ଗା ଧାର ସହିତ ବ୍ରହ୍ମବୀର୍ଯ୍ୟ ମିଶ୍ରିତ ହୋଇ ନବ ସୃଷ୍ଟି ହୋଇଥାଏ ।

ବନଗିରି ଜନଙ୍କର ବିଶ୍ୱାସ ବ୍ରହ୍ମେଶ୍ୱରଙ୍କ ପାଖରେ ଯେଉଁ ପଶୁପକ୍ଷୀ ବଳୀ ହୁଏ ସେହି ବଧଜୀବ ଗୁଡ଼ିକ ପୂର୍ବ ଜନ୍ମରେ ନାସ୍ତିକ ରୂପେ ଜାତ ହୋଇ ଗୋହତ୍ୟା ପ୍ରଭୃତି ଜୀବବଧ କରିଥିବାରୁ ଇହଜନ୍ମରେ ପଶୁଯୋନୀରେ ଜାତ ହୋଇ କୃତ ପାପର ବିନାଶ ନିମନ୍ତେ ଦେବୀ ଭୋଗ୍ୟ ହୋଇ ପର ଜନ୍ମରେ ହିନ୍ଦୁ କୁଳରେ ଜନ୍ମ ଲଭିକରି ସଗୁଣ ବ୍ରହ୍ମ ସାଧନ ପୂର୍ବକ କ୍ରମଶଃ ଊର୍ଦ୍ଧ୍ୱରେତା ହୋଇଥାନ୍ତି । ତେଣୁ ଇହଜନ୍ମରେ ଜୀବହତ୍ୟାକାରୀ ତାର ମୃତ୍ୟୁପରେ ଛାଗଳ କୁକୁଟ ରୂପେ ଜନ୍ମ ଲଭିକରି ବ୍ରହ୍ମେଶ୍ୱରଙ୍କର ବଳୀ ଭୋଗ୍ୟ ହୋଇ ମନୁଷ୍ୟରୁ ପଶୁ ଓ ପଶୁରୁ ପୁନଶ୍ଚ ପୁଣ୍ୟାତ୍ମା ହେଉଥିବାରୁ ଶୋଣିତ ଗଙ୍ଗାର ନାମ ବ୍ରହ୍ମ ତାରିଣୀ ବା ବୈତରଣୀ ଅଟେ ।

## ଗୋରକ୍ଷ ସମାଜ ଗଠନ

ଗୋଜାତି ମାନବ ଜାତିର ପରମୋତ୍କୃଷ୍ଟ ବନ୍ଧୁ ଅଟେ । ଏହାର ଅପର ନାମ ଗାୟତ୍ରୀ ବା ଜନନୀ ଅଟେ । ଯେଉଁମାନେ ଜନନୀର ହତ୍ୟା କରନ୍ତି ସେମାନେ ଯାତୁଧାନ ବା ଯବନ ଅଟନ୍ତି । ଗୋନାସିକା ତୀର୍ଥ ଗୋହତ୍ୟା ପାପରୁ ମୁକ୍ତ କରୁଥିବାରୁ ଏହାଯେ ଗୋରକ୍ଷ ଶିକ୍ଷା କେନ୍ଦ୍ର ଅଟେ ଏଥିରେ ସନ୍ଦେହ ନାହିଁ । ତେଣୁ ଗୋରକ୍ଷକ ରୂପେ ଶ୍ରେଷ୍ଠ ବିବେଚିତ ହୋଇଥିବା ଭଗବାନ ଶ୍ରୀ ରାମକୃଷ୍ଣ ମଧ୍ୟ ଏହି ତୀର୍ଥ ରାଜ ଦର୍ଶନ କରିବାକୁ

ଆସି ଅଛନ୍ତି ।

"ସତ୍ୟାଦି ଯୁଗେ ଏହି ମତେ
ଗୋଜାତି ପୂଜିଲେ ଜଗତେ ।
ଯଜାତି ଆଦି ନର ଗଣ
କରି ଅସଂଖ୍ୟ ଧେନୁ ଦାନ ।
ଅର୍ଜିଲେ ଅ କ୍ଷ ୟ କୀରତି
ପୁଣ୍ୟେ ପାଳିଲେ ବସୁମତି ।
ତ୍ରେତାରେ ରା ମ ମହାରାଜ
ଗୋ-ବିପ୍ର ପାଳି କଲେ ରାଜ୍ୟ ।
ଦ୍ୱାପରେ ନିଜେ ଦେବ ହରି
ଗୋପେ ମାନବ ଦେହ ଧରି ।
କଲେ ଗୋ-କୁଳ ହିତ ଯେତେ
ତାହାବା କହିବି ମୁଁ କେତେ ।
ପୂର୍ବେ ଏ ପ ରି ମହାଜନ
ପାଳିଲେ ଆଦରେ ଗୋଧନ ।
ମରଣେ ଗଲେ ପୁଣ୍ୟ ସ୍ଥାନେ ।
ଅତି ଦୁର୍ଲ୍ଲଭ ଦେବ ଯାନେ ।
ଗୋମାତା ସାକ୍ଷାତେ ଦେବତା
ଜଗତ ଜନ ପିତା ମାତା ।
ଇହ ସଂ ସା ରେ ମହାଧନ
ମରଣେ ମୁକତି କାରଣେ ।"

ଇହ ଜଗତରେ ଯେଉଁ ଲୋକ ଗୋପୁଚ୍ଛ ଧାରଣ କରି ବୈତରଣୀ ନଦୀ ସନ୍ତରଣ କରି ଧେନୁଦାନ ଦେଇଥାଏ, ମରଣ ପରେ ତାହାର ଆତ୍ମା ଗୋପୁଚ୍ଛ ଧରି ତପ୍ତ ବୈତରଣୀ ଅତିକ୍ରମ କରି ସ୍ୱର୍ଗବାସ କରେ ।



# ଗିରି ନନ୍ଦିନୀ-ଚଂପା ବରଣୀ ବୈତରଣୀ

ଭାରତୀୟ ସଂସ୍କୃତିର ବୈଶିଷ୍ଟ୍ୟ ହେଉଛି ନଦୀର ମାତୃରୂପ ଚିନ୍ତନ କରିବା । ଜନ୍ମଦାତ୍ରୀ ଜନନୀ ଯେପରି ନିଜ ଶିଶୁର ସ୍ତନ୍ୟ ଦାୟିନୀ ଓ ପ୍ରାଣ ପ୍ରଦାୟିନୀ, ସେହିପରି ଗୋଟିଏ ଦେଶର ନଦନଦୀ ସେହି ଦେଶର ସଭ୍ୟତା, ସଂସ୍କୃତି ଓ ଜୀବନୀ ଶକ୍ତିର ଆଧାର ସ୍ୱରୂପ ଅଟେ । ତେଣୁ ବୈତରଣୀ ମହାନଦୀଠାରୁ ଆରମ୍ଭ କରି ପୃଥିବୀର ବିଭିନ୍ନ ଦେଶରେ ପ୍ରବାହିତ ମୁଖ୍ୟ ନଦନଦୀ ଗୁଡିକ ସହିତ ଏକ ନିବିଡ ମାନବିକ ଚେତନ ସଂଶ୍ଳିଷ୍ଟ ରହିଛି ।

ଭାରତୀୟ ଧର୍ମ ଧାରଣାନୁଯାୟୀ ଗଙ୍ଗା ନଦୀର ମହାତ୍ମ୍ୟ ଓ ମହତ୍ତ୍ୱ ଶ୍ରେଷ୍ଠତମ ହୋଇ ଥିଲେହେଁ, ଓଡିଆମାନଙ୍କ ପାଇଁ ବୈତରଣୀ ଶବ୍ଦଟିର ମଧ୍ୟ ତତୋଧିକ ଧାର୍ମିକ ପ୍ରଭାବ ରହିଅଛି । ତେଣୁ କେନ୍ଦୁଝର ତଥା ଓଡିଶାର ଶ୍ରେଷ୍ଠ ସମ୍ପଦ ହେଲା ପୁଣ୍ୟତୋୟା ବୈତରଣୀ । ପ୍ରତ୍ୟେକ ନଦନଦୀ ଯେବେ ମାନବ ଜୀବନର ପ୍ରତୀକ ଅଟେ, ତେବେ ବୈତରଣୀ ନଦୀକୁ କେନ୍ଦୁଝରବାସୀଙ୍କର ଜୀବନ ପ୍ରତୀକ ବୋଲି ଧରିବାକୁ ହେବ । କାରଣ ବୈତରଣୀ ନଦୀ କେନ୍ଦୁଝରବାସୀଙ୍କ ଜୀବନ ଚେତନକୁ ଏକ ନୂତନ ରଙ୍ଗରେ ରୂପାୟିତ କରିଛି । ତେଣୁ ବୈତରଣୀ ନଦୀ ସହିତ କେନ୍ଦୁଝରର ସଂପର୍କ ଅତ୍ୟନ୍ତ ନିଗୂଢ ଅଟେ । କେନ୍ଦୁଝରର ଜୀବନ ଯୌବନ ଗାଥା ଓ ଆଧ୍ୟାତ୍ମିକ ଚେତନା ବୈତରଣୀ ନଦୀର ସ୍ୱଚ୍ଛ ଜଳଧାର ପରି ନିର୍ମଳ, ସୁଶୀତଳ ଓ ଚୀରସ୍ରୋତା ଅଟେ ।

ଗଙ୍ଗା ପରି ବୈତରଣୀ ମଧ୍ୟ ସ୍ୱର୍ଗ ଗାମିନୀ ଅଟେ । ଗଙ୍ଗାଠାରୁ ଦ୍ୱାଦଶ ବର୍ଷ ବୟୋଧିକ ବୈତରଣୀକୁ ସ୍ୱର୍ଗର ସରଣୀ ବୋଲିଯାଏ । ବୈତରଣୀ ତୀରସ୍ଥ ତନ୍ତ୍ରାମଗ୍ନ ସିଦ୍ଧ ପୁରୁଷର ବୈକୁଣ୍ଠ ପ୍ରାପ୍ତି ହୋଇଥାଏ, 'ମହାପ୍ରସ୍ଥାନ ପଥରେ ତପ୍ତ ବୈତରଣୀ ପଥିକମାନଙ୍କର କ୍ଳେଶ ମୋକ୍ଷଦାୟିନୀ ହେବାର ପୁରାଣ ପ୍ରସିଦ୍ଧି ରହିଅଛି । ନଦୀର ଉତ୍ପତ୍ତି ସ୍ଥଳର ଜଳ ପର୍ବତ ଗହ୍ୱର ମଧ୍ୟରୁ ବହି ଆସୁଥିବା ହେତୁ ଉଷ୍ଣ ପ୍ରସ୍ରବଣର ଜଳପରି ଉତପ୍ତ ଅବସ୍ଥାରେ ଥିବା ସ୍ୱାଭାବିକ । ଏଣୁ ଗିରିନନ୍ଦିନୀ ବୈତରଣୀକୁ ତପ୍ତ ବୈତରଣୀ ଆଖ୍ୟା ଦେବାରେ ସାର୍ଥକତା ପ୍ରତିପାଦିତ ହେଉଥିଲେହେଁ, ଏହାର ଜଳ ମୁଖ୍ୟତଃ ଚୀର ସୁଶୀତଳ ଅଟେ ।

ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳୀର ନିକଟବର୍ତ୍ତୀ ଗ୍ରାମଟି ଗୋନାସିକା ନାମରେ ପରିଚିତ । ଏହି ସ୍ଥାନଟିର ନୈସର୍ଗିକ-ଅତୁଳନୀୟ-ରମଣୀୟ ବନ ଶୋଭା ଗିରି ନନ୍ଦିନୀ ଚଂପା ବରଣୀ ବୈତରଣୀର ପ୍ରଭାବରେ ମନୋଜ୍ଞ ଗୋନାସିକାର ଆଦିମ ଅଧିବାସୀ ଯୁଆଙ୍ଗମାନଙ୍କର ଜୀବନର ସରଳତା ତଥା ନିର୍ଦ୍ଦୋଷତା ବସ୍ତୁତାନ୍ତ୍ରିକ ସଭ୍ୟତାର କୃତ୍ରିମ ମନୋବୃତ୍ତିଠାରୁ ବହୁ ଦୂରରେ । ଗୋନାସିକାଠାରେ କଳକଳ ନିନାଦିନୀ, ଗିରି ନିର୍ଝରିଣୀ ବୈତରଣୀ କ୍ଷୀଣତନ୍ୱୀ-ସତେ ଯେପରି ପ୍ରକୃତିର ଜଳ ତରଙ୍ଗ ବାଜଣା । ତାର ନିଭୃତଭାଷା କେନ୍ଦୁଝରର ଆଦିମ ଅଧିବାସୀମାନଙ୍କର ଜୀବନର ଅକୁହା କାହାଣୀକୁ ବହିନେଇ ପୂର୍ବ ସମୁଦ୍ରରେ ମିଶାଇ ଦେଉ ଅଛି ।

ଗୋନାସିକା ନିକଟବର୍ତ୍ତୀ ବୈତରଣୀର ରଙ୍ଗ ବର୍ଷର ଅଧିକାଂଶ ସମୟରେ ଚଂପକ ବର୍ଣ୍ଣ ଅଟେ ।

ଏହି ଦୃଷ୍ଟିରୁ ବୈତରଣୀର ଅନ୍ୟ ଏକ ବିଶେଷଣ ହେଲା "ଚମ୍ପା ବରଣୀ ବୈତରଣୀ" । ରଙ୍ଗ ମାଟିର ବର୍ଣ୍ଣ ନେଇ ଜଳର ବର୍ଣ୍ଣ ଚମ୍ପକ ବର୍ଣ୍ଣ ହେବା ସ୍ୱଭାବିକ । କିନ୍ତୁ ବୈତରଣୀର ଚମ୍ପା ବର୍ଣ୍ଣ ସହିତ ଗୋନାସିକାରେ ଚମ୍ପା ଫୁଲର ପ୍ରାଚୁର୍ଯ୍ୟ ଏକ ବିଚିତ୍ର ଲୀଳା ଭଳି ଜଣା-ଯାଏ । ଶିବଲିଙ୍ଗ ପୂଜା ପାଇଁ ଚମ୍ପାଫୁଲହିଁ ଉଦ୍ଦିଷ୍ଟ, ସତେ ଅବା ବ୍ରହ୍ମେଶ୍ୱର ମହେଶଙ୍କର ପୂଜା ପାଇଁ ସୁସଜ୍ଜିତ ଅଗଣିତ ଚମ୍ପା ଫୁଲର ନୈସର୍ଗିକ ସମାବେଶ ।

ସବୁଠାରୁ ମହତ୍ୱପୂର୍ଣ୍ଣ ତଥ୍ୟ ହେଉଅଛି ଯେ, ନଦୀର ଉତ୍ପତ୍ତି ସ୍ଥଳଠାରୁ ଆରମ୍ଭ କରି ସାଗର ସଙ୍ଗମ ପର୍ଯ୍ୟନ୍ତ ପ୍ରତି ଏକକ୍ରୋଶ ଦୂରତ୍ୱରେ ଶିବଲିଙ୍ଗ ସ୍ଥାପିତ ହୋଇ ଅଛନ୍ତି । ଶିବଲିଙ୍ଗଙ୍କୁ ଯେପରି ସମଗ୍ର ସୃଷ୍ଟିର ଆଧାର ରୂପରେ ପୂଜା କରାଯାଇ ଥାଏ ବୈତରଣୀ ନଦୀ ସେହିପରି ପୂଜ୍ୟା, ପରମା ଆରାଧ୍ୟା ଅନୁକମ୍ପାମୟୀ ଧାତ୍ରୀ ସ୍ୱରୂପା । ଏହାର ଅବ-ବାହିକାରେ ଅବସ୍ଥିତ ଉର୍ବର ଭୂମି କେନ୍ଦୁଝରର ଶସ୍ୟ ଭଣ୍ଡାର । ସତେ ଅବା ସ୍ୱର୍ଗ ବିସିନୀ, ବ୍ୟୋମ ଗୃହିଣୀ, ସନାତନୀ ବୈତରଣୀ କେନ୍ଦୁଝର ବାସୀଙ୍କ ପାଇଁ ସୁଧାଧାର ବିତରଣ ନିପୁଣା, ପ୍ରଜା ପାଳନୀ ନନ୍ଦିନୀ ବେଶରେ ଉଦ୍‌ଭବା ।

ବୈତରଣୀ କୂଳବାସୀ ବହୁଗ୍ରାମର ଶ୍ମଶାନ ନଦୀର ବାଲୁକା ଶଯ୍ୟା ରାଶିରେ ଅବସ୍ଥିତ ଥିବାରୁ ସେଠାରେ ଚିତାଗ୍ନିରେ ଦଗ୍ଧିଭୂତ ହୋଇଥିବା ମୃତାତ୍ମା ପାଇଁ ମହାପ୍ରସ୍ଥାନ ଓ ସ୍ୱର୍ଗ ଲାଭର ପଥ ଉନ୍ମୁକ୍ତ କରେ ।

ବୈତରଣୀର ଗତି ଅବାରିତ ବାଞ୍ଛାପ୍ରୀତି-ବିଧୂନିତ ଶାନ୍ତି ଓ ମୈତ୍ରିରେ ଅନୁ-ପ୍ରାଣିତ । ଏହାହିଁ ହେଉଅଛି ପୁଣ୍ୟତୋୟା ବୈତରଣୀ ପ୍ରବାହିତ ସ୍ୱର୍ଣ୍ଣଭୂମି କେନ୍ଦୁଝରର ନିଗୂଢ ରହସ୍ୟ ।

## ବାରୁଣୀ ଯାତ୍ରା

"ଉତ୍କଳ ଦେଶ ମଧ୍ୟରେ ସାର କେନ୍ଦୁଝର
ଜନାକୀର୍ଣ୍ଣ ଜନପଦ ବେଷ୍ଟିତ କନ୍ଦର ।
ସୁପତ ଭାବରେ ଯହିଁ ବିରାଜେ ଜାହ୍ନବୀ
ସୁବିଖ୍ୟାତ ବୈତରଣୀ ଗୋନାସା ସମ୍ଭବୀ ।"

ଐଶ୍ୱର୍ଯ୍ୟମୟୀ ଗୋନାସିକା ପର୍ବତର ପାଦ ଦେଶରେ, ପୁଣ୍ୟତୋୟା ବୈତରଣୀ ନଦୀର ଉତ୍ପତ୍ତି ସ୍ଥଳରେ ବ୍ରହ୍ମେଶ୍ୱର ନାମକ ଆଦ୍ୟ ଶିବଲିଙ୍ଗ ପୂଜିତ ହେଉ ଅଛନ୍ତି । ଏଠାରେ ପ୍ରତିବର୍ଷ ଚୈତ୍ରମାସ କୃଷ୍ଣ ଦ୍ୱାଦଶୀ ତିଥିରେ ବାରୁଣୀ ସ୍ନାନ ଯୋଗ ଓ ମେଳା ଅନୁଷ୍ଠିତ ହୋଇଥାଏ । ସେହି ପୁଣ୍ୟ ତିଥିରେ କଳକଳ ନିନାଦିନୀ, ଗିରି ନିର୍ଝରିଣୀ ଚମ୍ପକ ବରଣୀ, କ୍ଷିଣତନ୍ୱୀ, ଉତ୍କଳ ଜାହ୍ନବୀ ବୈତରଣୀର ସୂତିକାଗାର ଦର୍ଶନ କରି ଦର୍ଶକର ମନନୟନ ସାର୍ଥକ ହୁଏ । ପବିତ୍ର ବାରୁଣୀ ଯୋଗରେ ତୀର୍ଥ ଯାତ୍ରୀ ବ୍ରହ୍ମକୁଣ୍ଡରେ ସ୍ନାନ ତର୍ପଣ କରି ବ୍ରହ୍ମେଶ୍ୱର ମହେଶଙ୍କର କୃପାମୟ ଦର୍ଶନ ଲାଭ କରିବା କେବଳ ଭାଗ୍ୟବାନ ବ୍ୟକ୍ତିର ପକ୍ଷରେ ସମ୍ଭବ ହୋଇଥାଏ ।

ନଭସ୍ପର୍ଶୀ ନୀଳଶୈଳ ଶ୍ରେଣୀର ଶିଖର ଦେଶରେ ଉଦିତ ବାଳସୂର୍ଯ୍ୟର ସ୍ୱର୍ଣ୍ଣ କିରଣମାଳ

ଏକ ବିଚିତ୍ର ଶୋଭା ସମ୍ଭାର ଯେପରି ବନଶ୍ରୀର ଶୋଭା ବୃଦ୍ଧି କରିଥାଏ । ବସନ୍ତର ଆଗ-
ମନରେ ବନସ୍ପତିଗଣ ନବକିଶଳୟ ଆଭରଣ ପରିଧାନ କରି ମୃଦୁମଳୟ କମ୍ପନରେ ମର୍ମର
ଶବ୍ଦ କରି ଭୃଙ୍ଗରାଜ ବସନ୍ତର ଗୁଣଗାନ କରିବା ସଙ୍ଗେ ସଙ୍ଗେ ତୀର୍ଥଯାତ୍ରୀମାନଙ୍କୁ ପୁଷ୍ପଗୁଚ୍ଛ
ଉପହାର ଦେଇ ଅଭ୍ୟର୍ଥନା କରିଥାନ୍ତି ।

ଗୋବର୍ଦ୍ଧ ପାହାଡ଼ ତଳେ ବିଦ୍ୟମାନ ସିଦ୍ଧ ଜଗନ୍ନାଥ ମନ୍ଦିରର ରକ୍ତଧ୍ୱଜା ଗୋନା-
ସିକା ତୀର୍ଥଯାତ୍ରୀଙ୍କ ଭକ୍ତିପୂର୍ଣ୍ଣ ଅଞ୍ଜଳୀ ଯେପରି ସେମାନଙ୍କର ଶୁଭାଗମନକୁ ଅଭିନନ୍ଦନ କରେ ।
ସୁଶୀତଳ ଜଳଧାରର ଉଭୟ ପାର୍ଶ୍ୱରେ ଅସଂଖ୍ୟ ସଂଖ୍ୟାରେ ଆମ୍ର କାନନ ଶ୍ରେଣୀବଦ୍ଧ
ଭାବରେ ଦଣ୍ଡାୟମାନ ରହି ମୁକ୍ତିକାମୀ ବୈତରଣୀ ଯାତ୍ରୀଗଣଙ୍କୁ ସଜ୍ଜିତ ସେନାନୀ ପରି
ଧାର୍ମିକ ଅଭିବାଦନ ଜ୍ଞାପନ କରିବା ସଙ୍ଗେ ସଙ୍ଗେ ଶୀତଳ ଛାୟା ପ୍ରଦାନ କରନ୍ତି ।
ପର୍ବତର ବକ୍ଷ ଦେଶରେ କନ୍ତୁରିତ ବନ୍ଧୁର ପଥ କ୍ରମଶଃ ଉପରୁ ଉଠି ଯାଇଛି ନୀଳ ଆକାଶକୁ
ପାବଛି ପଡ଼ିଲ୍ ପରି । ଠିକ୍ ସେହି ପାର୍ବତ୍ୟ ସରଣୀର ଧାରେ ଧାରେ ଉପରୁ ତଳକୁ
ଓହ୍ଲାଇ ଆସିଛି ଗିରି ନିର୍ଝରିଣୀ ସ୍ୱର୍ଗ ମନ୍ଦାକିନୀ ବୈତରଣୀ । ପାଦ ଦେଶରୁ ଶୀର୍ଷ ଦେଶ
ପର୍ଯ୍ୟନ୍ତ ସମସ୍ତ ଶ୍ୟାମଳ ବନାନୀ ପ୍ରକୃତି ଦେବୀର ନିକୁଞ୍ଜ କେଳି କାନନ ପରି ମନେ ହୁଏ ।
ଧନ୍ୟ ଏହି ବିଭବ । କି ମଧୁର ଏହି ଅନୁଭବ । ଏହାହିଁ ହେଉଛି ସୁଖ ଦୁଃଖର ସମା-
ବେଶ । ଆବର୍ତ୍ତନ-ବିବର୍ତ୍ତନ ବାଦର ଗବେଷଣାଗାର । ଉଠାଣି ସଙ୍ଗେ ସଙ୍ଗେ ଗଡ଼ାଣି ।
ମଧ୍ୟ ଦେଶରେ ଶସ୍ୟ ଶ୍ୟାମଳ ସମତଳ ଭୂମି । ଯେତିକି ବନ୍ଧୁର ସେତିକି ଶୀତଳ ପ୍ରଦ ।
ଚତୁଃପାର୍ଶ୍ୱରେ ନଭଶ୍ଚୁମ୍ବୀ ଗିରିରାଜ ଗର୍ବୋନ୍ନତ ଐଶ୍ୱର୍ଯ୍ୟ ଭରା ଶିରୋନ୍ନତ କରି ଗୁରୁ-
ଗମ୍ଭୀର ଭାବରେ ଦଣ୍ଡାୟମାନ । ଏହି ସୁବିଶାଳ ଶ୍ୟାମଳ ଶୈଳ ବକ୍ଷ ବିଦୀର୍ଣ୍ଣ କରି ସ୍ୱଚ୍ଛନୀରା
ବୈତରଣୀ ଶ୍ୟାମଳ ଶସ୍ୟ କ୍ଷେତ୍ରରେ ରସମୟ ଚୁମ୍ବନ ଅଙ୍କନକରି ବନାନୀର ଶୋଭା ବର୍ଦ୍ଧିତ
କରୁଅଛି । ଜଳ ଧାରର ଉଭୟ ପାର୍ଶ୍ୱରେ ଧ୍ୟାନମଗ୍ନ ଋଷି ପରି ପର୍ବତ ଶୃଙ୍ଗକ ନିଶ୍ଚଳ
ରହି ତୀର୍ଥ ଯାତ୍ରୀଗଣଙ୍କୁ ପଥ ପ୍ରଦର୍ଶନରେ ଦିକ୍ ନିର୍ଦ୍ଦେଶ ଦେଉ ଅଛନ୍ତି । ଅରଣ୍ୟ ସମାଚ୍ଛନ୍ନ
ଲତା ଗୁଳ୍ମରେ ପରିପୂର୍ଣ୍ଣ । କଳ୍ପନାର କୁଞ୍ଜ ବନ । ବନଶ୍ରୀର ରମ୍ୟ କାନନ । ଉତ୍କଳ
କମଳାର କେଳିକୁଞ୍ଜ ।

ଏହି ନିର୍ଜ୍ଜନ ପ୍ରକୃତି କୋଳରେ କିଛି କ୍ଷଣ ଅବସ୍ଥାନ କଲେ ହୃଦୟରେ ଭଗବତ
ପ୍ରେମ ସ୍ୱତଃ ଜାଗ୍ରତ ହୋଇଥାଏ । ପ୍ରାଣ, ହୃଦୟ ଓ ମନ ଏକ ନୂତନ ରାଗିଣୀରେ ଝଙ୍କୃତ
ହୁଏ । ଏହି ନୈସର୍ଗିକ ସୁଷମା ରାଜି, ଭାବୁକର ଚିତ୍ତରେ ବିଶ୍ୱ ଚେତନାର ପ୍ରେରଣା ପ୍ରଦାନ
କରିଥାଏ । ଜଗତର ସମସ୍ତ ସୌନ୍ଦର୍ଯ୍ୟକୁ ସତେ ଯେପରି ବିଶ୍ୱ ସ୍ରଷ୍ଟା ବ୍ରହ୍ମେଶ୍ୱର ଏକତ୍ର
ମନ୍ଥନ କରି ନବନୀତ ଏହିଠାରେ ଗୁପ୍ତରେ ସାଇତି ରଖିଛନ୍ତି । ଏହି ସ୍ଥାନ ବିଶ୍ୱକର୍ମାର ମନ
ମୋହିନୀ ତୂଳିକା ସ୍ପର୍ଶରେ ଚର୍ଚ୍ଚିତ ହୋଇ ଦର୍ଶକର କଳ୍ପନାକୁ ସ୍ତବ୍ଧ, ମୁଗ୍ଧ, ବିସ୍ମିତ ଓ
ନତମସ୍ତକ କରାଉ ଅଛି ।

ଧନ୍ୟ ରାଜା ଲକ୍ଷ୍ମୀ ନାରାୟଣ ଭଞ୍ଜ । ଧନ୍ୟ ତୁମ୍ଭର ସ୍ୱର୍ଗତ ଆତ୍ମା । ଏହି ଜନ
ମାନବ ଶୂନ୍ୟ ଗୋପନ ତୀର୍ଥ କ୍ଷେତ୍ରକୁ ଜନ ସମାଜରେ ଚିହ୍ନାଇ ଦେଇ ତୁମ୍ଭେ ଉତ୍କଳ-
ଭଗୀରଥର ସମ୍ମାନରେ ଭୂଷିତ ହୋଇଅଛ । ତେଣୁ ତ୍ରିବେଣୀ କୁଣ୍ଡର ଚତ୍ୱର ବକ୍ଷରେ

"ଆଦ୍ୟ ବୈତରଣୀ" ଓ "ଲକ୍ଷ୍ମୀ ନାରାୟଣ ଭଞ୍ଜ" ଖୋଦିତ ହୋଇଅଛି । ଷୋଡଶ ଶତାବ୍ଦୀରେ ଏହି ରାଜ୍ୟ ଲକ୍ଷ୍ମୀ ନାରାୟଣ ଭଞ୍ଜଙ୍କ ଦ୍ୱାରା ବ୍ରହ୍ମେଶ୍ୱର ମନ୍ଦିର ଓ ସିଦ୍ଧଜଗନ୍ନାଥ ମନ୍ଦିର ନିର୍ମାଣ ଏବଂ ପ୍ରତିଷ୍ଠା ଓ ରଥଯାତ୍ରାର ପ୍ରଚଳନ ହୋଇଥିଲା । ବ୍ରହ୍ମକୁଣ୍ଡ ଚତୁଃପାର୍ଶ୍ୱରେ ପକା ବନ୍ଧ, ବ୍ରହ୍ମେଶ୍ୱର ମନ୍ଦିରବେଢ଼ା ମଧ୍ୟରେ ଏହାଙ୍କର ଭୋଗଘର ଓ ମନ୍ଦିର ସଂଲଗ୍ନ ବାସୁକୀ ଓ ମନ୍ଦିର ଗୁଣ୍ଡିଚା ମଣ୍ଡପ ପ୍ରଭୃତି ନିର୍ମିତ ହୋଇଥିଲା । ଦଧିବାମନ ମନ୍ଦିର ଏହାଙ୍କର ନିକଟରେ କୋଠଘର ବିଦ୍ୟମାନ । ଠାକୁରଙ୍କ ନାମରେ ଥିବା କେତେକ ଭୂସମ୍ପତ୍ତି ଆୟରୁ ମନ୍ଦିରର ଭୋଗ ନିତି ସମ୍ପାଦିତ ହୁଏ ।

ବ୍ରହ୍ମେଶ୍ୱର ମନ୍ଦିର ନିକଟରେ କେତେଗୋଟି ଖୁଲଘର ପାନ୍ଥଶାଳାର କାର୍ଯ୍ୟ କରେ । ବନଦେବୀ ପ୍ରକୃତି ଅପୂର୍ବ ଶୋଭା ସମ୍ଭାରରେ ଏହି ଗୋପନ ସ୍ଥାନଟିକୁ ସଜାଡ଼ି ରଖିଛନ୍ତି । ଏହି ଉତ୍କଳ କୈଳାସର ଅନନ୍ତ ସୌନ୍ଦର୍ଯ୍ୟ ପଥିକ ପ୍ରାଣକୁ ଏକ ଅଦ୍ଭୁତ ଆଧ୍ୟାତ୍ମିକ ଭାବ ବିଭୋର କରି ପକାଏ । ଚାରିଆଡ଼େ, ନିକଟରେ ଦୂରରେ, ଆହୁରି ଦୂରରେ, ହରିତ, ନୀଳ-ଧୂମ୍ର ଶୈଳମାଳା ଓ ଦିଗନ୍ତ ବିସ୍ତାରିତ ବନାନୀର ଶ୍ୟାମଳିମା-ଏକ ଅପୂର୍ବ ସମାବେଶ । ସ୍ତରେ ସ୍ତରେ ସମୁଦ୍ର ତରଙ୍ଗ ପରି ପର୍ବତଶ୍ରେଣୀ ଯେତେଦୂର ଦୃଷ୍ଟି ପାଏ-ଦିଗନ୍ତ କୋଳରେ ଯେଉଁଠାରେ ନୀଳ ଆକାଶ ଧରଣୀ ରାଣୀକୁ ଚୁମ୍ବନ କରୁଛି । ସେହି ଦିକ୍ ଚକ୍ରବାଳ ରେଖାର ବକ୍ଷରେ ନୀଳ ଶ୍ୟାମଳ ମିଶାମିଶି-ସେହି ଅନନ୍ତ ସୁଷମାର ଅପରିସୀମା ମାଧୁରୀ ପ୍ରାଣକୁ ଆକୁଳ କରି ପକାଏ ।

"ସୁଦୂରୁ ଚପଳା ଲାସ୍ୟେ ନିରତେ ଭାସ୍ୱର
ନିରତ ମୁଖର କେକ-କେକା କଳରବେ ।
ପୂତ ବୈତରଣୀ ସ୍ରୋତ ପ୍ରଭବ ଗୋନାସା
ଋଷି ସଭା ମଧ୍ୟେ ଯହିଁ ଭାର୍ଗବ ମୁଖରୁ
ଝରେ ପୂତତର ପୁଣ୍ୟ ଶ୍ଳୋକ କଥାମୃତ ।"

ଗୋନାସିକା ନିକଟବର୍ତ୍ତୀ ଗୋଟିଏ ପଥର ଚଟାଣକୁ ଋଷି ସଭା ବୋଲାଯାଏ । ପ୍ରବାଦ ଅଛି ଭାର୍ଗବଋଷି ଭକ୍ତମାନଙ୍କ ଗହଣରେ ଏଠାରେ ଧର୍ମାଲୋଚନା କରନ୍ତି । ଏହି ବିରାଟ ପ୍ରସ୍ତର ଚଟାଣର ଗୋଟିଏ ପ୍ରାନ୍ତରେ ଦୁଇ ତିନି ଇଞ୍ଚ ପରିଧି ବିଶିଷ୍ଟ ଗୋଟିଏ ଗର୍ତ୍ତ ଅଛି । ସର୍ବଦା ଗର୍ତ୍ତର ମୁଖରେ ଗୋଟିଏ ପଥର ଖଣ୍ଡ ଢଙ୍କା ଯାଇଥାଏ । ବର୍ଷର ପ୍ରାୟ ସବୁ ସମୟରେ ଏଠାରେ ନିର୍ମଳ ପାନୀୟ ଜଳ ଝରେ । ଏହି ଗର୍ତ୍ତର ଅପର ପାର୍ଶ୍ୱରେ ଔଷଧ ବଟା ଶୀଳ ପଡ଼ି ରହିଅଛି । ପ୍ରବାଦ ଅଛି ତ୍ରେତା ଯୁଗରେ ରାମ ରାବଣ ଯୁଦ୍ଧ କ୍ଷେତ୍ରରେ ଲକ୍ଷ୍ମଣଙ୍କର ଶକ୍ତିଭେଦ ସମୟରେ ବୀରହନୁମାନଗନ୍ଧମାଦନ ପର୍ବତରୁ ଔଷଧ ସଂଗ୍ରହ କରି ତାହାକୁ ଏହି ଶୀଳରେ ମର୍ଦ୍ଦନ କରି ଥିଲେ । ପରବର୍ତ୍ତୀ ସମୟରେ ଭାର୍ଗବଋଷି ଏହି ଶୀଳରେ ଔଷଧ ବାଟି ରୋଗୀମାନଙ୍କୁ ପ୍ରଦାନ କରୁଥିଲେ ।

ଅସ୍ତଗାମୀ ସୂର୍ଯ୍ୟର କନକ କିରଣ ସଙ୍ଗରେ ଆସନ୍ନ ସନ୍ଧ୍ୟାର ଘନକୃଷ୍ଣ ବର୍ଣ୍ଣ ତରୁ ଗୁଳ୍ମ ରାଜିର ସାନ୍ଦ୍ର ଶ୍ୟାମଳିମା ପ୍ରକୃତି ରାଜ୍ୟରେ ଏକ ଅପୂର୍ବ ସୃଷ୍ଟି । ସେହି ନୈଶ

ପ୍ରିତକର ଛାୟା-ଆଲୋକର ମହାମିଳନ ବାସ୍ତବରେ ଏକ ଅପୂର୍ବ ଦୃଶ୍ୟ, ବଡ଼ ଶାନ୍ତ ସ୍ନିଗ୍ଧ, ମନୋହର । ସେ ଦୃଶ୍ୟମୟ ରାଜ୍ୟ ମଧ୍ୟରେ ତନ୍ମୟ ହୋଇଯିବା ସ୍ୱଭାବିକ ।

"ଏ ସୁଖର ମୁହିଁ କୁହଇଁ ଭଜନ
ମୋ ଭାଗ୍ୟେ ଏ ଯିନା ଭଙ୍ଗୁର ସ୍ୱପନ ।"

# ପୌରାଣିକ ପ୍ରାଧାନ୍ୟ

ମହାଭାରତର ବନପର୍ବରେ ବର୍ଣ୍ଣିତ ହୋଇ ଅଛି ଯେ, ଧର୍ମରାଜ ଯୁଧିଷ୍ଠିର ମାତା ଭ୍ରାତାଗଣଙ୍କ ସଙ୍ଗରେ ଯେତେ ତୀର୍ଥଯାତ୍ରା କରୁଥିବା ସମୟରେ ଗଙ୍ଗାସାଗର ସଙ୍ଗମ କ୍ଷେତ୍ରରେ ପ୍ରବେଶ କଲେ । ସେତେବେଳେ ଗଙ୍ଗାସାଗର ତୀର୍ଥ କ୍ଷେତ୍ର କଳିଙ୍ଗ ରାଜ୍ୟର ଅଙ୍ଗ ବିଶେଷ ଥିଲା । ଏହିଠାରେ ଧର୍ମରାଜ ଯୁଧିଷ୍ଠିର ଲୋମଶ ଋଷିଙ୍କଠାରୁ ପୁଣ୍ୟତୋୟା ବୈତରଣୀ ତୀର୍ଥ କ୍ଷେତ୍ରର ମାହାତ୍ମ୍ୟ ଶ୍ରବଣ କରିଥିଲେ ।

"କହନ୍ତି ଲୋମଶ ଋଷି ଶୁଣ ଯୁଧିଷ୍ଠିର
ବୈତରଣୀ ତୀର୍ଥ କ୍ଷେତ୍ର କ୍ଷେତ୍ର ମଧ୍ୟେ ସାର ।
ଶୁକ ସତ୍ୟ ଯୁଗର ଏ ପୁରାତନ ବାଣୀ
ସୋମକ ନାମରେ ବ୍ରହ୍ମା କ୍ଷିତି ନାମ କ୍ଷୌଣୀ ।
ସ୍ୱୟମ୍ଭୁ ନାମରେ ବିଷ୍ଣୁ ଶ୍ରୀ ନାମରେ ଲକ୍ଷ୍ମୀ
ସୁରାକ୍ଷ ନାମରେ ଇନ୍ଦ୍ର ପାଳେ ସ୍ୱର୍ଗ ଭୂମି ।
ସୁବ୍ରତ ନାମେ କରନ୍ତି ହଂସ ନାମେ ସୂର୍ଯ୍ୟ
ସୁଧାଂଶୁ ନାମରେ ଚନ୍ଦ୍ର ଶ୍ରୀମନ୍ତ ଯେ ଦ୍ୱିଜ ।
ଶ୍ରୀକଣ୍ଠ ନାମରେ ହର ଯମ ଯେ ଶମନ
ସ୍ୱାହାଃ ନାମରେ ପାବକ ସତ୍ୟ ନାମେ ଧର୍ମ ।
ପଞ୍ଚଭୂତଙ୍କୁ ଯେମନ୍ତ ପାଳନ୍ତି ଏ ମର୍ମ
ମନ ପବନ ବିନ୍ଦୁକୁ ଦେହେ ଠାବ ଦେଇ ।
ମନ ପବନ ବିନ୍ଦୁରୁ ଜାତ ରୂପ କର୍ମ
ମନ ରୂପିଣୀ ଯେ ମାୟା ବାୟୁ ରୂପୀ ବ୍ରହ୍ମ ।
ବ୍ରହ୍ମରୁ ପ୍ରକୃତି ଜାତ ପ୍ରକୃତିରୁ ବିନ୍ଦୁ
ଜନ୍ମେ ଭବ ବିନ୍ଦୁ ରଜବୀର୍ଯ୍ୟ ବାୟୁ ମଧ୍ୟେ ।
ଏ ରୂପେ ମନ ପବନ ବିନ୍ଦୁ ହୋଇଲେ ତିନ
ସତ୍ତ୍ୱ ରଜ ତମ ରୂପେ ପାଳିଲେ ମେଦିନୀ ।
ଆତ୍ମା ହୋଇ ସର୍ବଜୀବ ପିଣ୍ଡେ ଯାଇ ବସେ
ପ୍ରାଣାଦି ପବନ ଯେତେ ପ୍ରକାଶଇ ନାସେ ।
ଜୀବକୁ ସୂକ୍ଷ୍ମ ଧରିଣ ପରମକୁ ଚଳେ
ପରମରୁ ଯାଇ ପୁଣି ପବନରେ ମିଳେ ।

ପବନକୁ ଧରି ଚଳି ଆସେ ଗଲି ମାର୍ଗେ
ନିଃଶ୍ୱାସ ରୂପରେ ତହୁଁ ସଞ୍ଚରଇ ଅଙ୍ଗେ ।
ସେହି ନିଃଶ୍ୱାସରୁ ବାବୁ ଷଷ୍ଠିଗୋଟି ଲେଖି
ସଂସାରେ ଲିତାଏ କରି ତାହା ଅଛୁ ଯୋଖି ।
ଏରୂପେ ଷାଠିଏ ଲିତା ଗଣନ୍ତି ପ୍ରମାଣେ
ଦଣ୍ଡେ ବୋଲିଣ ତାହାକୁ ବେଦରେ ବଖାଣେ ।
ଏହି ରୂପେ ତେନି ଦଣ୍ଡ ଘଡ଼ିଏ ଦିନର
ଚାରି ଘଡି ହେଲେ ଜାଣ ବୋଲଇ ପ୍ରହର ।
ଚାରି ପ୍ରହରରେ ଦିନ ହୋଇଥାଏ ଶେଷ
ରାତ୍ରି ଚାରି ପ୍ରହରରେ ପ୍ରକାଶେ ଦିବସ ।
ସେହିଠାରୁ ପ୍ରଥମରେ ବାର ଲେଖା ହୋଇ
ରବି ସୋମ ମଙ୍ଗଳ ଯେ ବୁଧ ନାମ କହି ।
ବୃହସ୍ପତି ଶୁକ୍ରବାର ଆବର ଯେ ଶନି
ଏହି ସପ୍ତବାର ଘେନ ଚଳଇ ମେଦିନୀ ।
ଗଣନା ହୁଅଇ ଏହି ସାତ ବାର ନିତ
ମାସକରେ ଅମାବାସ୍ୟ ପୌର୍ଣ୍ଣମୀ ସଂକ୍ରାନ୍ତି ।
ତହୁଁ ଯାଇ ସାତବାର ଖଞ୍ଜିଲେ ଲେଉଟି
ପ୍ରତିପଦ ଦ୍ୱିତୀୟା ଯେ ତୃତୀୟା ଚଉଠି ।
ପଞ୍ଚମୀ ଷଷ୍ଠୀ ସପ୍ତମୀ ଅଷ୍ଟମୀ ନବମୀ
ଦଶମୀ ଯେ ଏକାଦଶୀ ଦ୍ୱାଦଶୀକୁ ଘେନି ।
ତ୍ରୟୋଦଶୀ ଚତୁର୍ଦ୍ଦଶୀ ଅମାବାସ୍ୟା ଯାଏ
ଏହିପରେ କୃଷ୍ଣ ଶୁକ୍ଳ ଘେନି ପକ୍ଷ ହୁଏ ।
ଘେନି ପକ୍ଷେ ମାସେ କହି ବାର ମାସେ ବର୍ଷେ
ନକ୍ଷତ୍ରେ ଭୋଗ ଯାଇ ତାରି ସତାଇଶେ ।
ପ୍ରଥମେ ଅଶ୍ୱିନୀ ଭରଣୀ କୃତ୍ତିକା ରୋହିଣୀ
ମୃଗଶିରା ଆର୍ଦ୍ରା ଯେ ପୁନର୍ବସୁ ପୁଣି ।
ପୁଷ୍ୟା ଅଶ୍ଳେଷା ମଘା ପୁରୁବା ଉତ୍ତରା
ହସ୍ତା ଚିତ୍ରା ସ୍ୱାତୀ ପୁଣି ବିଶାଖା ଯେ ତାରା ।
ଅନୁରାଧା ଜ୍ୟେଷ୍ଠା ମୂଳା ପୂର୍ବାଷାଢ଼ା ପୁଣ
ଉତ୍ତରାଷାଢ଼ା ଶ୍ରବଣା ଧନିଷ୍ଠା ଯେ ଜାଣ ।
ଶତଭିଷା ପୂର୍ବଭାଦ୍ର ଉତ୍ତର ରେବତୀ
ଏହାକୁ ଘେନିଣ ଚନ୍ଦ୍ର ଭୋଗକରେ ନିତି ।
ବାରମାସେ ଯାଣ ବାର ଲଗ୍ନ ମୂଳ ହୋଇ
ମେଷ ବୃଷ ମିଥୁନ ଯେ କକଡ଼ା ବୋଲଇ ।

ସିଂହ କନ୍ୟା ତୁଳା ବିଛା ଧନୁ ସେ ମକର
କୁମ୍ଭ ମୀନ ଯେଣୁ ଲଗ୍ନ ଅଟେ ଏହି ବାର ।
ଯୋଗ କରଣ ଇତ୍ୟାଦି ଏଥି ମଧ୍ୟେ ଯାଇ
ହିମ ଶିଶିର ବସନ୍ତ ଗ୍ରୀଷ୍ମ କାଳ କହି ।
ବରଷା ଶରତ ମିଶି ଷଡ ଋତୁ ହୁଏ
ପ୍ରାଣୀମାନଙ୍କୁ ଏମାନ କ୍ରମେ ଭୋଗ ଯାଏ ।
ମାଘରୁ ଆରମ୍ଭ କରି ଛ' ମାସ ପର୍ଯ୍ୟନ୍ତେ
ଉତ୍ତରାୟଣ ବୋଲିଣ ବୋଲନ୍ତି ପଣ୍ଡିତେ ।
ମାଘ ଫାଲଗୁଣ ଚଇତର ବଇଶାଖ
ଜ୍ୟେଷ୍ଠ ଆଷାଢ଼ ମିଶାଇ ଛଡମାସ ଲେଖ ।
ଶ୍ରାବଣୁ ଗଣନ୍ତି ଜନେ ଦକ୍ଷିଣ ଅୟନ
ଭାଦ୍ରବ ଆଶ୍ୱିନ କାର୍ତ୍ତିକେଯ଼ ସେ ପୁଣ
ମାର୍ଗଶିର ପୌଷ ମିଶି ଅଟେ ଛଡ ମାସ
ଦକ୍ଷିଣ ଅୟନ ନାମେ ଶାସ୍ତ୍ରରେ ପ୍ରକାଶ ।
ମକର ସଂକ୍ରାନ୍ତି ଦିନ ଉତ୍ତର ଅୟନ
କର୍କଟ ସଂକ୍ରାନ୍ତି ଦିନ ଦକ୍ଷିଣ ଅୟନ ।
ବାରମାସେ ସମ୍ବତ୍ସର ଦୁଇଟି ଅୟନ
ଏରୂପେ ମାନବ ବର୍ଷ ହୁଅଇ ଗଣନ ।"

ମାନବ ବର୍ଷ ଗଣନାନୁଯାୟୀ ଉତ୍ତରାୟଣ ଛ' ମାସ ଅର୍ଥାତ ମାଘ ବା ମକର ସଂକ୍ରାନ୍ତି ଠାରୁ କର୍କଟ ବା ଶ୍ରାବଣ ସଂକ୍ରାନ୍ତି ପର୍ଯ୍ୟନ୍ତ ଛ' ମାସ ପିତୃଦେବଗଣଙ୍କର ଗୋଟିଏ ଦିବସ ଓ ଦକ୍ଷିଣାୟନ ଛ' ମାସ ଅର୍ଥାତ ଶ୍ରାବଣ ବା କର୍କଟ ସଂକ୍ରାନ୍ତିଠାରୁ ମାଘ ବା ମକର ସଂକ୍ରାନ୍ତି ପର୍ଯ୍ୟନ୍ତ ସମୟ ଗୋଟିଏ ରାତ୍ରି ସହିତ ସମାନ ଅଟେ । ଏହିପରି ଦୁଇଗୋଟି ଅୟନ ବା ବାର ମାସରେ ପିତୃଦେବ ଗଣଙ୍କର ଗୋଟିଏ ଅହୋରାତ୍ର ହୁଏ । ଅର୍ଥାତ ମନୁଷ୍ୟମାନଙ୍କର ଗୋଟିଏ ବର୍ଷ ପିତୃଦେବ ଗଣଙ୍କର ଗୋଟିଏ ଦିବସ ସମୟ ସହିତ ସମାନ ଅଟେ । ତେଣୁ ବୈଦିକ କର୍ମକାଣ୍ଡ ଅନୁଯାୟୀ ଆର୍ଯ୍ୟ ପୁତ୍ରଗଣ ବର୍ଷକରେ ଥରେ ଶ୍ରଦ୍ଧାର ସହିତ ପିତୃଗଣଙ୍କୁ ପିଣ୍ଡାନ୍ନଜଳ ପ୍ରଦାନ କରିବାର ବିଧି ନିର୍ଦ୍ଦେଶ ରହିଅଛି । ଯେଉଁ ଆର୍ଯ୍ୟ ପୁତ୍ର ନିଜର ମୃତ୍ତତା ବଶତଃ ପିତୃଦେବ ଗଣଙ୍କୁ ସାମ୍ବତ୍ସରିକ ପିଣ୍ଡ ପ୍ରଦାନ ନ କରନ୍ତି ସେହି ବଂଶ କୁଳାଗ୍ରର ନଷ୍ଟ ଦୋଷରେ ବିନଷ୍ଟ ହୋଇଥାଏ । ସାମ୍ବତ୍ସରିକ ଶ୍ରାଦ୍ଧ ଦିବସରେ ଯେଉଁ ସୁପୁତ୍ର ବୈତରଣୀ ତୀର୍ଥ କ୍ଷେତ୍ରରେ ପିତୃ ପୁରୁଷଙ୍କୁ ପିଣ୍ଡ ପ୍ରଦାନ କରନ୍ତି ତାଙ୍କର ପୂର୍ବପୁରୁଷଗଣ ଗୋବ୍ରହ୍ମ ହତ୍ୟା ପାପ ବିମୁକ୍ତ ହୋଇ ସ୍ୱର୍ଗବାସ କରନ୍ତି ।

**ଦେବ ବର୍ଷ** — ଦେବ ବର୍ଷ ଗଣନାନୁଯାୟୀ

| | | | | | |
|---|---|---|---|---|---|
| ସତ୍ୟ ଯୁଗର | ପରମାୟୁ | ହେଉଛି | | ୪୦୦୦ | ବର୍ଷ |
| ତ୍ରେତା | ,, | ,, | ,, | ୩୦୦୦ | ,, |
| ଦ୍ୱାପର | ,, | ,, | ,, | ୨୦୦୦ | ,, |
| କଳି | ,, | ,, | ,, | ୧୦୦୦ | ,, |

ଗୋଟିଏ ଦେବ ମହାଯୁଗର ପରମାୟୁ ହେଉଛି ୧୦୦୦୦ ବର୍ଷ
ଏହା ସହିତ ଗୋଟିଏ ମହାଯୁଗର ସଂଧି, ସଂଧ୍ୟାଂଶ
ଓ ସାୟଂ ସମସ୍ତ ଯୋଗ କଲେ ୨୦୦୦ ବର୍ଷ

ସର୍ବମୋଟ ପରମାୟୁ ହେଉଛି ୧୨୦୦୦ ବର୍ଷ

ଦେବତାମାନଙ୍କର ଗୋଟିଏ ବର୍ଷ ମନୁଷ୍ୟମାନଙ୍କର ୧୨୦୦୦ ବର୍ଷ ଅଟେ । ତେଣୁ ଦେବତାମାନଙ୍କର ଗୋଟିଏ ବର୍ଷ ବା ୩୬୦X୧୨୦୦୦ = ୪୩୨୦୦୦୦ ମାନବ ବର୍ଷ ଅଟେ । ଏହାପରେ ୭୧ ଗଣ୍ଡା ଯୁଗ ବା ୩୦୬୭୨୦୦୦୦ ମାନବ ବର୍ଷରେ ଗୋଟିଏ ମନୁ ହୁଏ । ୧୪ ଗୋଟି ମନୁ ବା ୪୨୯୪୦୮୦୦୦୦ ମାନବ ବର୍ଷରେ ଗୋଟିଏ କଳ୍ପ ବର୍ଷ ହୁଏ । କଳ୍ପ ବର୍ଷ ସହିତ କଳ୍ପାନ୍ତ ସଂଧି, ସଂଧ୍ୟାଂଶ ଓ ସାୟଂ କାଳ ୨୫୯୨0000 ବର୍ଷ ଯୋଗ କଲେ ୪୩୨0000000 ମାନବ ବର୍ଷରେ ବ୍ରହ୍ମାଙ୍କର ଗୋଟିଏ ଦିବସ ହୁଏ । ୮୬୪0000000 ମାନବ ବର୍ଷରେ ଗୋଟିଏ ଅହୋରାତ୍ର ହୁଏ । ଏହାକୁ ବ୍ରହ୍ମାହୋରାତ୍ର ବୋଲଯାଏ । ଏହାପରେ ୩୬୦ ଗୋଟି ଅହୋରାତ୍ର ୩୧୧୦୪0000000୦୦ ମାନବ ବର୍ଷରେ ଗୋଟିଏ ବ୍ରହ୍ମ ବର୍ଷ ହୁଏ । ଏହାପରେ ବ୍ରହ୍ମାଙ୍କର ସର୍ବମୋଟ ପରମାୟୁ ହେଉଛି ୧୦୦ ବ୍ରହ୍ମବର୍ଷ ବା ୩୧୧୦୪0000000 ୦୦୦ ମାନବ ବର୍ଷ । ଏହାକୁ ବ୍ରହ୍ମପ୍ରଳୟ ବୋଲଯାଏ ।

ପ୍ରମାଣ :—

"ସତ୍ୟ ତ୍ରେତା ଦ୍ୱାପର କଳି । ଶୁଣ ଭୁ ମନ ମହାବଳୀ ।
ଏ ଚାରି ଯୁଗକୁ ମିଶାଇ । ବୁଝିଲେ ଗଣ୍ଡାଏ ହୁଅଇ ।
ଏପରି ଏକ ସହସ୍ର ଯୁଗ । ବ୍ରହ୍ମ ଘଡ଼ିଏ ହୁଏ ବେଗ ।
ବ୍ରହ୍ମାଙ୍କୁ ଘଡ଼ିଏ ହୁଅଇ । ସ୍ୱର୍ଗରୁ ଏକ ଇନ୍ଦ୍ର ଯାଇ ।
ଏପରି ଚଉଦ ମନୁରେ । ଚଉଦ ଇନ୍ଦ୍ର ସ୍ୱର୍ଗପୁରେ ।
ଚଉଦ ଇନ୍ଦ୍ର ପଦ ହୋଇ । ବ୍ରହ୍ମାଙ୍କୁ ଦିବସେ ହୁଅଇ ।
ବ୍ରହ୍ମାର ହେଲେ ଅହୋରାତ୍ର । ଚନ୍ଦ୍ର, ଭାସ୍କର ହୁନ୍ତି ହତ ।
ଏହି ପରାୟେ ବାର ମାସ । ହୋଇଲେ ଗୋଟିଏ ବରଷ ।
ଏପରି ଶ ତ ବରଷରେ । ବ୍ରହ୍ମାର ଆୟୁ ଏ ସୂତ୍ରରେ ।
ବ୍ରହ୍ମ ପ୍ରଳୟ ତାକୁ କହି । ଶୁଣ ଭୁ ପଣ୍ଡୁଙ୍କ ତନୟୀ ।

ଗୋଟିଏ ବ୍ରହ୍ମକଳ୍ପ ଦିବସରେ ବିଶ୍ୱ ବ୍ରହ୍ମାଣ୍ଡର ସକଳ ଅବ୍ୟକ୍ତ ପଦାର୍ଥ ସମୂହ ବ୍ୟକ୍ତ ହୋଇଥାନ୍ତି ଓ ଗୋଟିଏ ବ୍ରହ୍ମକଳ୍ପ ରାତିରେ ସମସ୍ତ ବ୍ୟକ୍ତ ପଦାର୍ଥ ସମୂହ ଅବ୍ୟକ୍ତରେ ମିଶିଥାଏ ।

ପ୍ରମାଣ :—

"ବ୍ରହ୍ମାଙ୍କ ଦିବସେ ସୃଜନ ହୁଅଇ
ରାତ୍ରିରେ ହୁଏ ପ୍ରଳୟ,
ଏକ କଳ୍ପେ ଦିନ ଏକ କଳ୍ପେ ରାତ୍ରି
ଏ ଅହୋରାତ୍ର ନିର୍ଣ୍ଣୟ ।"

"ସହସ୍ର ଯୁଗ ପର୍ଯ୍ୟନ୍ତେ ମହର୍ଯଦ୍ ବ୍ରହ୍ମଣୋ ବିଦୁଃ,'

ରାତ୍ରିଯୁଗ ସହସ୍ରାନ୍ତାଂ ତେଽହୋରାତ୍ର ବିଦୋ ଜନାଃ ।"

ଅର୍ଥାତ ଦେବତାମାନଙ୍କର ସହସ୍ର ଯୁଗରେ ବ୍ରହ୍ମାଙ୍କର ଗୋଟିଏ ଦିବସ ହୁଏ ଓ ଦେବତା ମାନଙ୍କର ସହସ୍ର ଯୁଗରେ ବ୍ରହ୍ମାଙ୍କର ଗୋଟିଏ ରାତ୍ରି ହୁଏ । ଯୋଗୀମାନେ ଅହୋରାତ୍ର ଜ୍ଞାନ ବଳରେ ଏହା ନିର୍ଣ୍ଣୟ କରି ଅଛନ୍ତି ।

"ଭୂତଗ୍ରାମଃ ସ ଏବୋୟଂ ଭୂତ୍ୱଭୂତ୍ୱା ପ୍ରଲୀୟତେ,
ରାତ୍ର୍ୟାଗମେ ଽବଶଃ ପାର୍ଥ ! ପ୍ରଭବତ୍ୟ ହରାଗମେ ।"

ଅର୍ଥାତ ଯେଉଁ ଚରାଚର ଭୂତଗଣ ପୂର୍ବ କଳ୍ପ ବା ଅବ୍ୟକ୍ତ ଭାବରେ ଥାନ୍ତି ସେମାନେ ବ୍ରହ୍ମାଙ୍କର ଦିବସାଗମ ହେଲେ ଅବଶ ହୋଇ ଅର୍ଥାତ ନିଜ ନିଜ କର୍ମର ଅଧୀନ ହୋଇ ସେହି ସେହି କର୍ମ ପ୍ରବୃତ୍ତି ରୂପକ ପ୍ରକୃତିରୁ ଜନ୍ମ ଗ୍ରହଣ କରନ୍ତି ।

"ଅବ୍ୟକ୍ତାଦ୍ ବ୍ୟକ୍ତୟଃ ସର୍ବାଃ
ପ୍ରଭବନ୍ତ୍ୟୋ ହରାଗମେ
ରାତ୍ର୍ୟାଗମେ ପ୍ରଲୀୟନ୍ତେ ତତ୍ରୈବ
ବ୍ୟକ୍ତ ସଜ୍ଞକେ ।"

ଅର୍ଥାତ ବ୍ରହ୍ମାଙ୍କର ଦିବସାଗମରେ ଅବ୍ୟକ୍ତ ବା ପ୍ରକୃତିରୁ ସମସ୍ତ ବ୍ୟକ୍ତ ପଦାର୍ଥ ବା ଚରାଚର ପ୍ରାଣୀଗଣ ଜାତ ହୁଅନ୍ତି । ବ୍ରହ୍ମାଙ୍କର ରାତ୍ର୍ୟାଗମ ହେଲେ ଅବ୍ୟକ୍ତରେ ଉକ୍ତ ଚରାଚର ପ୍ରାଣୀ-ଗଣ ଲୀନ ହୁଅନ୍ତି । ମାତ୍ର ଏହା ବ୍ରହ୍ମ ପ୍ରଳୟ ନୁହେଁ । କାରଣ ଏହି ପ୍ରଳୟ କାଳରେ ବିଶ୍ୱ ସୃଷ୍ଟିର ଭୌତିକ ପ୍ରଳୟ ହୁଏ ନାହିଁ । ତେଣୁ ଏହାକୁ କଲ୍ପାନ୍ତକ ପ୍ରଳୟ ବୋଲି ଯାଏ । ଏହାର ଅନ୍ୟ ନାମ "ବ୍ରହ୍ମାହୋରାତ୍ର" ପ୍ରଳୟ ଅଟେ ।

ବ୍ରହ୍ମକଳ୍ପ ବର୍ଷ ଗଣନାନୁଯାୟୀ ବ୍ରହ୍ମାଙ୍କର ଦୁଇ କଳ୍ପରେ ଗୋଟିଏ ଅହୋରାତ୍ର ଓ ୬୦X୧୨ = ୭୨୦ କଳ୍ପ ବର୍ଷରେ ଗୋଟିଏ ବ୍ରହ୍ମ ବର୍ଷ ଓ ୭୨୦X୧୦୦ = ୭୨୦୦୦ କଳ୍ପ ବର୍ଷରେ ବ୍ରହ୍ମ ପ୍ରଳୟ ହୋଇ ବିଶ୍ୱର ସଚରାଚର ପ୍ରାଣୀଗଣ ବିନାଶ ପ୍ରାପ୍ତ ହୋଇଥାନ୍ତି ।

ବ୍ରହ୍ମାଙ୍କର ସମସ୍ତ ପରମାୟୁ ବା ୭୨୦୦୦ କଳ୍ପ ବର୍ଷ ବିଷ୍ଣୁଙ୍କର ଗୋଟିଏ ଅହୋ-ରାତ୍ର ଅଟେ । ବିଷ୍ଣୁଙ୍କର କଳ୍ପିତ ପରମାୟୁ ହେଉଛି ୧୧୧୯୭୪୪୦୦୦୦୦୦୦୦୦୦୦୦ ମାନବ ବର୍ଷ । ବିଷ୍ଣୁଙ୍କର ସର୍ବମୋଟ ଆୟୁ ଶିବଙ୍କର ଗୋଟିଏ ଦିନର ଆୟୁ ସହିତ ସମାନ

ଅ୯୫ । ଏହା ହେଉଛି ୪୦୩୧୦୭୮୪୦୦୦୦୦୦୦୦୦୦୦୦୦୦୦୦ ମାନବ ବର୍ଷ ।

**ବ୍ରହ୍ମ ପ୍ରଳୟ ଟିକା :**

"ଯୁଧିଷ୍ଠି ବୋଇଲେ ସ୍ୱାମୀ ପ୍ରଳୟ କାଳରେ
ପ୍ରଥମରୁ କିଏ ମଲ କହ ମୋ ଆଗରେ ?
ଲୋମଶ ବୋଇଲେ ବାବୁ ଆଗ ଇନ୍ଦ୍ର ମଲେ
ଇନ୍ଦ୍ର ମରିବାରୁ ମେଘେ ଜଳ ନ ବର୍ଷିଲେ ।
ଜଳ ବୃଷ୍ଟି ନ ହୁଅନ୍ତେ ଜନ୍ତୁ ଗଲେ ନାଶ
ଆଚ୍ଛାଦିଲ ଅନ୍ଧକାର ସକଳ ଆକାଶ ।
ସଂସାର ବିନଷ୍ଟ ହେବା ଦେଖି ପଞ୍ଚଭୂତେ
ପଞ୍ଚାପୃତ କରି ଭୂତେ ବିଚାରନ୍ତି ଚିତ୍ତେ ।
ସୁରପତି ନାଶ ଗଲେ କେହେବ ନୃପତି
"ଆମ୍ଭେ ରାଜାହେବୁ ବୋଲି ପ୍ରକାଶିଲେ ପୃଥିବୀ ।"
ପାଳିବଇଁ ସଂସାର ମୁଁ ଜୀବଜନ୍ତୁ ଯେତେ
ନୋହିଲେ ପ୍ରଳୟ ହେବ ଜାଣିଥା ସମସ୍ତେ ।
ପୃଥିବୀବାକ୍ୟ ଚାରିଭୂତେ ଆରମ୍ଭିଲେ ଗୋଳ
ପ୍ରତିଭୂତ ଇଚ୍ଛାକଲେ ହେବାକୁ ଭୂପାଳ ।
ଅଗ୍ନି ବୋଇଲେ କପାଇଁ ଅନ୍ୟକୁ ସେବିବ
ମୋତେ ନୃପ ନ କରିଲେ ଜାଳିପୋଡ଼ି ଦେବି ।
ପବନ ଉଠିଲା ତାହା ଶୁଣି କୋପ ହୋଇ
ବୋଇଲା ସଭିଙ୍କି ଆଜ ମାରିବି ଉଡ଼ାଇ ।
ଅଣଗୁଣ ମୂର୍ତ୍ତି ଧରି ପ୍ରଖରେ ବହିଲ
ବାୟୁ ରୂପ ଦେଖି ଆପ ହସିଣ ବୋଇଲ ।
ବସିବି ଉପରେ ମାଡି ଜଳାର୍ଣ୍ଣବ ହୋଇ
ଆକାଶ ଉଠିଲା ତାହା ଶୁଣି କୋପ ବହି ।
ପୃଥିବୀ ଅଗ୍ନି ବାୟୁ ଭୂତ ତିନି କ୍ଷୟ ଗଲେ
ଆପ ଶୂନ୍ୟ ବେନି ଭୂତ କେବଳ ରହିଲେ ।
ଦେବଲୋକ ଯାଏ ଜଳ ବର୍ଦ୍ଧିତ ହୋଇଲେ
ଚନ୍ଦ୍ର ସୂର୍ଯ୍ୟ ଆଦି ଦେବେ ଜଳେ ବୁଡ଼ିମଲେ ।
ଦେବଙ୍କ ପ୍ରଳୟ ଦେଖି ମରୁ ଗଲା ବୁଡି
ପଙ୍କ ହୋଇ ମିଶିଗଲା ପ୍ରଳେ ଜଳେ ଜଡ଼ି ।
ବ୍ରହ୍ମ ପ୍ରଳୟ ପରିଏ ଜୀବର ମରଣ
ଯେହୁ ମରିଯାଏ ତାର ପ୍ରଳୟଟି ଜାଣ ।
ଯେତେବେଳେ ଯାର ପିଣ୍ଡୁ ଆତ୍ମା ଗୋଟିଯାଇ
ଅଗ୍ନି ବାୟୁ ବେନିଭୂତେ ଜଳେ ଲୀନ ହୋଇ ।

ପ୍ରଥମରେ ଜ୍ୱଳାକରେ ମଧ୍ୟେକରେ ଶୀତ
ପ୍ରାନ୍ତରେ ବନ୍ଧିଲେ ଜଳ ବୋଲି ସନ୍ଧିପାତ ।
ପିଣ୍ଡ ବ୍ରହ୍ମାଣ୍ଡ ଏଦୁହେଁ ବର୍ତ୍ତିଲେ ଏକା
ଶୁଣ ହେ ଯୁଧିଷ୍ଠି ଏହି ପ୍ରଳୟର ଟୀକା ।
ଦେବଙ୍କ ପ୍ରଳୟ ହେଲା ଯେତେବେଳେ ଜାଣ
ଯୋଗରେ ଜାଣିଲେ ବ୍ରହ୍ମା ଆପଣା ମରଣ ।
ପରମାୟୁ ପୂର୍ଣ୍ଣ ହେଲେ ନ ରହଇ ଦେହ
ହଂସେ ବସି ବେଦବର ତେଜିଲେ ସ୍ୱଦେହ ।
ହଂସ ସୋଽହଂ ସୂତ୍ରେ ପିଣ୍ଡା ଅଜପା କରଣ
ତେଜିଲେ ଆପଣା ଦେହ ବିଦେହ ହୋଇଣ ।
ବିଷ୍ଣୁଙ୍କ ଶରୀରେ ଯାଇ ଲୀନ ହୋଇ ଗଲା
ବିଷ୍ଣୁଲୋକ ଯାଏ ଜଳ ବର୍ଦ୍ଧିତ ହୋଇଲା ।
ଗରୁଡ ପୃଷ୍ଠରେ ବସି ଶୂନ୍ୟେ ବିହରିଲେ
ସେ ମଧ୍ୟ ବ୍ରହ୍ମ ପ୍ରଳୟ ଏଡ଼ି ନ ପାରିଲେ ।
ଶରୀରେ ଗରୁଡ ଅଟେ ଜୀବ ନାଶା ଦ୍ୱାର
ଭ୍ରମର ଗୁମ୍ଫା ମଧ୍ୟରେ ବସଇ ସମୀର ।
ସମୀର ରୁନ୍ଧଣ ହୃଦେ ବିଷ୍ଣୁ ଭଗବାନ
ଶିବ ଦେହେ ଲୀନଗଲେ ବିଦେହ ହୋଇଣ ।
ନିଜ ଆତ୍ମା ସହିତରେ ବ୍ରହ୍ମା ଆତମା ଘେନି
ଶିବ ଅଙ୍ଗେ ଲୀନହେଲେ ବ୍ରହ୍ମା ବିଷ୍ଣୁ ବେନି ।
ଶିବଙ୍କ ଆତ୍ମାରେ ବ୍ରହ୍ମା ବିଷ୍ଣୁ ପ୍ରାଣ ମିଶି
ତ୍ରିଦେବ ଏକତ୍ର ହେଲେ ପ୍ରଳେ ଜଳେ ପଶି ।
ଶବାସନ କଲେ ଶିବ ସ୍ୱଦେହ ତେଜିଣ
ତିନି ଆତ୍ମା ଘେନି ଗଲେ ଧର୍ମଙ୍କ ଶରଣ ।
ପ୍ରଳେଜଳ ଘାର ଧର୍ମ ସହି ନ ପାରିଲେ
ଶତକଳ୍ପ ବୁଡ ନିରଞ୍ଜନେ ମିଶି ଗଲେ ।
କାଳେ ନିରଞ୍ଜନେ ପୁଣି ପ୍ରଳୟ ଗ୍ରାସିଲା
ନିରାକାରେ ନିରଞ୍ଜନ ଲୀନ ହୋଇଗଲା ।
ନିରାକାର ଜ ଗ ନ୍ନା ଥ ଦେବ ସୁମରିଲେ
ମହାବିଷ୍ଣୁ ରୂପ ଧରି ପ୍ରକଟ ହୋଇଲେ ।
ଛାୟାକାରେ ଦେଲେ ପଦ୍ମପାଦକୁ ପ୍ରକାଶି
ଶୂନ୍ୟକୁ ପ୍ରଳୟ ଜଳ ନ ପାରିଲା ଗ୍ରାସି ।
ସେ ପାଦର ଜ୍ୟୋତି ଦଶେ କୋଟି ସୂର୍ଯ୍ୟପ୍ରାୟ
ପାଦ ତଳେ ବ୍ରହ୍ମଜଣି ହୋଇଲା ବଳୟ ।

ଯାବତ ଆତ୍ମା ହୋଇଲେ ଏକ ଠାବେ ଠୁଳ
ନବତି ରହିଲ ସ୍ଥିର ପ୍ରଳୟର ଜଳ ।
ତେତେବେଳେ ଜଗନ୍ନାଥ ଏକାଛନ୍ତି ଜାଣ
ବୃଟପୁଟଶାୟୀ ବାଳ ଗୋପାଳ ରୂପେଣ ।
ଜଗତନାଥ ଅନନ୍ତ କୋଟି କୋଟି କଳ୍ପ
ସମସ୍ତଙ୍କୁ ରଖି ଗର୍ଭେ ହେଲେ ଏକରୂପ ।
ଜଳ ସ୍ଥଳ ଆକାଶରେ ଅଛନ୍ତି ସେ ପୂର
ସେ ଠୁଳ ପୁରୁଷ ଦେହେ ଯାବତ ସଞ୍ଚର ।
ଜଳଶୂନ୍ୟ ଲୀନ ହୋଇନ୍ତେ ଆଉ ନାହିଁ କେହି
ନିର୍ବିକଳ୍ପ ନିଦ୍ରାଗଲେ ଅଣାକ୍ଷର ହୋଇ ।
ବିନ୍ଦୁ ପ୍ରମାଣେ ମଣ୍ଡଳ ଆକାରେ ବ୍ୟାପିଲେ
ସୁଦର୍ଶନ ଚକ୍ର ପ୍ରାୟେ ଆକୃତି ବହିଲେ ।
କୋଟି ଚନ୍ଦ୍ରକାନ୍ତି ଯାଏ ରହି ସ୍ଥିର ହୋଇ
ଅକ୍ଷର ଦୁଇଟି ଶିର ଚରଣ ଅଟଇ ।
ସେହି ଦୁଇ ଚରଣର ମଧ୍ୟ ଭାଗ ଯାକ
ମହାଶୁକ୍ଳ ଶରୀର ସେ ଅଦୃଶ୍ୟ ଅଲେଖ୍ୟ ।
ପାଦକେ ଶବଦ ଆର ପାଦେ ନିଃଶବ୍ଦଟି
କହନ୍ତି ଲୋମଶ ଋଷି ଶୁଣନ୍ତି ଯୁଧିଷ୍ଠି ।
ଯେତେବେଳେ ଜଳଶୂନ୍ୟ ବ୍ରହ୍ମରେ ମିଶିଲେ
ଶବ୍ଦ ବ୍ରହ୍ମେ ମିଶି ଶୁକ୍ଳ ଦେହେ ନିମଜ୍ଜିଲେ ।
ନିଶବଦ ବ୍ରହ୍ମ ଯୋଗୁଁ ଶୁକ୍ଳେ ପ୍ରକାଶିଲ
ଚିହ୍ନ ପ୍ରତିମା ସଂଜ୍ଞାରେ ଲେଉଟି ପଡ଼ିଲ ।
ଅକ୍ଷର ଲେଉଟି ଯାନ୍ତେ ଶବ୍ଦ ହେଲ ଜାତ
ହକାର ସକାର ବେନି ଶବ୍ଦ ବ୍ରହ୍ମ ତତ୍ତ୍ୱ ।
ସକାର ଜୀବ ଅଟଇ ପରମ ହକାର
ପରମ ବୋଇଲେ ବୁଝାଏଟି ନିରାକାର ।
ସେ ନିରାକାର ବ୍ରହ୍ମର ପ୍ରକାଶ ଯେ କାଳେ
ଶୂନ୍ୟତା ଗର୍ଭରୁ ଆସି ରହିଲେକ ତଳେ ।
ଶୂନ୍ୟ ପ୍ରକାଶନ୍ତେ ଜଳ ତଳେ ପ୍ରକାଶିଲ
ନାରାୟଣ ପାଦ ନଖ କୋଣରୁ ବହିଲ ।
ତିନିଧାର ହୋଇ ଅମ୍ବୁ ପଡ଼ିଲେକ ଖସି
ଗଙ୍ଗା ଯମୁନା ଆବର ସରସ୍ୱତୀ ଭାଷି ।
ଇଡ଼ାଁ ଲା, ପିଙ୍ଗଳା ସୁଷୁମ୍ନା ନାମକୁ ବହି
ସତ୍ତ୍ୱ ରଜ ତମ ରୂପେ ତ୍ରିଗୁଣ ଅଟଇ ।

ସର ସର ହୋଇ ନଖୁଁ ଝର ଝର ଆସୁ
ପୁଚ୍ଛାକଲେ ଜଗନ୍ନାଥ କାହାକୁ ତୁ ତ୍ରାସୁ ।
କାହିଁକି ପ୍ରଳୟୁ ତ୍ରାସୁ ପୁଣି ଆସୁ ବହି
ରହିବୁ ନିଶ୍ଚଳେ ହେବ ମୁଁ ଅନନ୍ତଶାୟୀ ।
ଜଳ ବୋଲେ ଜଗନ୍ନାଥ ଥିଲ ରଜୋବନ୍ତି
ଶୁଦ୍ଧସ୍ନାନେ ନଖକୋଣୁଁ ଏବେ ଉଠପଡ଼ି ।
ଏବେ ସିନା ମୋତେ ଜାଣିବେ ଜଗତେ ଭଜିବେ
ବର୍ତ୍ତିବେ ଆତ୍ମା କୁଶଳ କରି ସର୍ବଜାଣିବେ ।
ମୁହିଁ ଯେବେ ରହିବି ଶୁଚିମନ୍ତ ନୋହିଁ
ତୁମ୍ଭେ ଯେ ଅନନ୍ତ ଶଯ୍ୟା କରିବ ହେ କାହିଁ ?
ବୋଲନ୍ତି ଶ୍ରୀ ଜଗନ୍ନାଥ ବଚନ ଘଟଣ
ଅଶୁଦ୍ଧ ହୋଇ ସଂସାରେ ରହୁ କେତେ ଦିନ ।
ଆମ୍ଭେତ ଜାଣୁ ତିନିଷ ଷାଠି ଦିନ ଯାକେ
କେହିତୋ ପାକାପ୍ତରଣ ନଜାଣନ୍ତି ଲୋକେ ।
ସ୍ନାନ ପାନ କରି ରାତି ଦିବା ଭଜୁଥାନ୍ତି
ବିଷ୍ଣୁ ପ୍ରତିମା ସ୍ଥାପିଣ ସର୍ବେ ଚଳନ୍ତ୍ୟନ୍ତି ।
ତୋତେ ନ ଭଜିଣ କ୍ଷଣେ ନବର୍ତ୍ତିବେ କେହି
ବ୍ରହ୍ମା କୀଟ ପରିଯନ୍ତେ ଛନ୍ତି ଯେତେ ଦେହି ।
କେଉଁ ଦିନ ତୋତେ ପୂଜି ନଛୁଅନ୍ତି ଲୋକେ
ଏ କଥା ନିଷ୍ଠା କରିଣ କହ ଆମ୍ଭ ବାକ୍ୟେ ।
ପ୍ରକାଶିଲେ ଅମ୍ବୁବତୀ ଷୋଳ ବର୍ଷୀ ମୁହିଁ
ରଜ ସ୍ୱାଳା ହେଲେ ଜାଣ ପ୍ରଳୟ ହୁଅଇ ।
ବ୍ରହ୍ମା କୀଟ ପରିଯନ୍ତେ ନ ବର୍ତ୍ତିନ୍ତି କେହି
ଶୁଦ୍ଧ ସ୍ନାନ ଅନ୍ତେ ସର୍ବେ ଥାନ୍ତି ଜନ୍ମ ହୋଇ ।
ତୋ ଅଙ୍ଗେ ସମସ୍ତେ ଜଡ଼ ଚରନ୍ତି ସଂସାରୁ
ତୁହିତ ଅଶୁଦ୍ଧ ହେଲେ କାହିଁ ସ୍ନାନ କରୁ ।
ତଥାପିତୁ ସାତ ଦିନେ ସ୍ନାନ କରୁ ଯେବେ
ଏତେକେ ପ୍ରଳୟ କିବା ହ୍ରନ୍ତି ବ୍ରହ୍ମା ଶିବେ ?
ଆପ ବୋଲି କହୁଅଛୁ ଶୁଣ ମହାପ୍ରଭୁ
ମୋରଜ ସ୍ରବିଲେ ଆଗ ମରଇ ଆତ୍ମାଭୁ ।
ଆବର ଦେବ ଦାନବ ମାନବେ ମରନ୍ତି
ଏମାନେ ମଲାରୁ ପୁଣି ବିଷ୍ଣୁ ନାଶ ଯାନ୍ତି ।
ମୋ ଦେହ ଅଶୁଦ୍ଧ ହେଲେ ସକଳେ ମରନ୍ତି
ସମସ୍ତେ ମଲାରୁ ମୋତେ କେହି ନଛୁଅନ୍ତି ।

ସାତ ଦନ ଅନ୍ତେ ମୁଣ୍ଡି କରେ ଶୁଦ୍ଧସ୍ନାନ
ହେବେ ଯାଇ ସମେସ୍ତେହି ହୁଅନ୍ତି ଜନମ ।
ଏ ସାତ ଦନେ ଯାହାକୁ ଯେତେ କାଳ ହୁଏ
ତାହା ମୁଁ ଲେଖି ଛାମୁରେ କରୁଛୁ ନର୍ଣ୍ଣୟେ ।
ପାଞ୍ଚ କୋଟି ପଦ୍ମ କାଠି ଯୁଗ ହୁଏ ଜାଣ
ଏଥି ଭିତରେ ସମସ୍ତେ ଲଭନ୍ତି ମରଣ ।
ବ୍ରହ୍ମା, ବଷ୍ଣୁ, ଶିବ, ଧର୍ମ, ନରଞ୍ଜନ ଯାଏ
ଏହାଙ୍କ ଆୟୁଷ ଯାକ ମାସେ ମୋତେ ହୁଏ ।
ମାସକୁ ମାସ ମୁହିଁ ଯେ ହୁଏ ପୁଷ୍ପବତୀ
ଯହିଁ ସ୍ନାନ କରେ ଶୁଣ ମୁହିଁ ମାରବଣ୍ଡି ।
କାରୁଣ୍ୟ କରୁଣାନଧି ଯେଉଁ ଭବଗ୍ରାହୀ
ତାହାଙ୍କ ପାଦପଦ୍ମରେ ଯାଇଁ ମୁଁ ବୁଡ଼ଇ ।
ସେ ପାଦ ନଖ କୋଣରୁ ବୁଡ଼ି ବାହାରନ୍ତେ
ସର୍ବ ସୃଚୀମନ୍ତ ମୁହିଁ ଅଟଇ ଜଗତେ ।
ମୁହିଁ ରଜ ସ୍ୱାଲା ହେଲେ ସକଳେ ମରନ୍ତି
ଶୁଦ୍ଧ ସ୍ନାନ ଅନ୍ତେ ପୁଣି ଗର୍ଭୁ ଜନମନ୍ତି ।
ଯେଉଁ ରୂପେ ଜନମନ୍ତି ଜୀବସୃଷ୍ଟ ଶୁଣ
ଜଳରୁ ସର୍ବ ଜଗତ ଜାତ ହୁଅନ୍ତି ଜାଣ ।
ଜୀବ ମାତ୍ରକେ ଜଗତେ ଯେତେକ ଜନମ
ବ୍ରହ୍ମ ବୀର୍ଯ୍ୟ ପଡ ଗର୍ଭେ ହୁଅନ୍ତି ଉତ୍ପନ୍ନ ।
ଆତ୍ମାରୁଟି ଆତ୍ମା ଗୋଟି ଆସେ ଆତ୍ମା ହୋଇ
ଆତ୍ମା ଅଟନ୍ତି ମନୁଷ୍ୟ ଜାଣି ନ ପାରଇ ।
ଅତ୍ମାର ଆସିବା ସ୍ଥାନ ଯେ ଚହ୍ନି ପାରବ
ଯମର ଯାତନାକୁ ସେ କାହିଁକ ଡ଼ରବ ।
ସେତ ପାଞ୍ଚବ ଆସିଲ ମୁହିଁ ଏକ ସୂତ୍ରେ
ଗଲେ ଲେଉଟି ରହବ ଯାଇଁ ବ୍ରହ୍ମ ଗାତ୍ରେ ।
ବ୍ରହ୍ମରୁ ଆସି ଜନ୍ମିବ ପୁଣି ଜୀବ ହୋଇ
ଯହିଁ ସେ ଗମିବ ସେହି ବ୍ରହ୍ମେ ମିଶିବଇଁ ।
ବୀର୍ଯ୍ୟେ ନ ମିଶିଲେ ନାହିଁ କାହାର ଜନମ
ସକଳ ଜୀବର ଆତମା ଅଟେ ଏକ ବ୍ରହ୍ମ ।
ବ୍ରହ୍ମରୁ ପ୍ରକୃତ ଜାତ ପ୍ରକୃତିରୁ ବନ୍ଦୁ
ସେ ବନ୍ଦୁରୁ ଦୁଇ ଜାତ ଜନମଇ ହନ୍ଦୁ ।
ଦୁଇ ଜାତି ବୋଲେ ଯେତୁ ସ୍ତିରୀ ପୁରୁଷଟି
ଦେଖ ଏକା ଦେହୁଁ ସ୍ତିରୀ ପୁରୁଷ ଜନ୍ମେଟି ।

ସେ ପୁରୁଷ ସ୍ତ୍ରିୟ ଯେବେ ହୋନ୍ତି ଏକ ଠାଏ
ବ୍ରହ୍ମ ବୀର୍ଯ୍ୟ ରୂପେ ଖସି ପଡ଼ଇ ଥୋପାଏ ।
ତେବେ ଯାଇ ସବୁ ଜୀବେ କଳେବର ପାନ୍ତି
ବ୍ରହ୍ମଂ କୀଟ ଯାଏ ଯେତେ ସଂସାରେ ଅଛନ୍ତି ।
ଜଳଯେବେ ରଜସ୍ୱଳା ନ ହୁଅନ୍ତା ପ୍ରଭୁ,
ଜୀବ ହୋଇ କିଏ ଆଉ ଜନ୍ମନ୍ତା କେ ଗଭୁ ।
ଏଣୁ କରି ଜଳ ଭୂତ ଅଟେ ମହାବ୍ରହ୍ମ
ବୀର୍ଯ୍ୟ ହୋଇ ଗର୍ଭେ ପଡି ପ୍ରକାଶଇ ଆତ୍ମା ।
ଆତ୍ମାରୁ ଆତ୍ମା ଜନ୍ମି ଣ ବହୁ ରୂପ ଧରେ
କ୍ରୀଡ଼ାର ଅନ୍ତେ ସେ ପୁଣି ସକଳ ସଂହରେ ।
ଏକ ରୂପ ଧରି ସେହୁ ରହେ ଯୁଗି ଶେଷେ
ଅଣାକାର ବ୍ରହ୍ମ ହୋଇ ମଣ୍ଡଳେ ପ୍ରକାଶେ ।
ଅବ୍ୟକ୍ତ ବ୍ରହ୍ମ ବୋଲିଣ ଯାହାକୁଟି କହି
ରହନ୍ତି ପ୍ରଳୟ ଜଳେ ସର୍ବେ ଯାଇ ତହିଁ ।

ପ୍ରଶ୍ନ— ମଲେ ସର୍ବ ଜୀବ ଯେବେ ମିଶନ୍ତି ବ୍ରହ୍ମରେ
କି ହେବ ସଂସାରେ ତେବେ ଧର୍ମ କରିବାରେ ?
ପାପି ଆଉ ପୁଣ୍ୟବନ୍ତ ଏହି ଦୁଇ ଲୋକେ
ମରିଲେ ସମାନ ଯେବେ ହୋଇବେ ପାବକେ ।
ଜପତପ ଦାନପୁଣ୍ୟ କରି ହେବ କିସ
ଏହି କଥା ଗୋଟି ଅମ୍ଭୁ କରନ୍ତୁ ପ୍ରକାଶ ।

ଉତ୍ତର— ବ୍ରହ୍ମରେ ମିଶନ୍ତି ସର୍ବେ ଅଟଇ ଏ ସତ
ଯେଉଁ ରୂପେ ଜୀବ ମିଶେ ଶୁଣ ସେହି ତତ୍ତ୍ୱ ।
ପିଣ୍ଡ ମଧ୍ୟେ ଆତମା ଗୋଟି ଯେତେବେଳେ ଯାଏ
ଷଡ଼ ଲକ୍ଷ ଯୋଜନ ସେ ସ୍ଥାନୁଁ ଭ୍ରମି ଥାଏ ।
ଷଡ ଲକ୍ଷ ଯୋଜନ ଯେ ଷଡ ଚକ୍ର ମାପେ
ତହିଁ ପରେ ବ୍ରହ୍ମ ଗୋଟି ରହିଅଛୁ ଗୋପ୍ୟେ ।
ଯେହେତୁ ଜାଣ ଗତ ଆତ୍ମା ବ୍ରହ୍ମ ଭେଟ ପାଇ
ପ୍ରତକ୍ଷ୍ୟେ କହୁଛୁ ତାହା ଶୁଣହେ ଗୋସାଇଁ ।
ଯେତେ ବେଳେ ଜୀବ ଆତମା ଶରୀରକୁ ଛାଡେ
ଚକ୍ରେ ଚକ୍ରେ ଭେଦ ଯାଇ ବ୍ରହ୍ମ ପାଦ ଲୋଡେ ।
ପୁଣ୍ୟବନ୍ତ ପ୍ରାଣୀ ଯେହୁ ମୁହୂର୍ତ୍ତିକେ ମିଶେ
ଅଣାକାର ବ୍ରହ୍ମ ଗର୍ଭେ ତକ୍ଷଣେ ପ୍ରବେଶେ ।
ସୁଭାଗ୍ୟ ହେତୁରୁ ପୁଣି ସୁସ୍ଥାନେ ଜନ୍ମଇ
ପାପି ଲୋକ ମରିଗଲେ ମାତ ଯୋନ ପାଇ ।

ସେ ବ୍ରହ୍ମ ମହିମା ଶୁଣ ଏ ପ୍ରକାରେ ଅଛି
ଯେ ଯାହାକୁ ଯୋଗ୍ୟ ତାକୁ ରଖେ ତହିଁ ସଞ୍ଚି ।
ପାତକ ବୁଡ଼ିଣ ପୁଣି ବୀର୍ଯ୍ୟ ନେଇ ଖଞ୍ଜି
ପାପୀ ନେଇ ଗୋଟି ପାପ ଯୋନିରେ ଉପୁଜେ ।
ଶ୍ୱାନ କି ଚଣ୍ଡାଳ, କୀଟ, ଗୃଧ, ଖର ହୁଏ
ନମାନନ୍ତ ଜନମକୁ ଏକା ଯେ ଜ୍ଞାନୀଏ ।
ଯହିଁକି ନ ମାନେ ସେହି କହନ୍ତି ତା ହେତୁ
ଆତ୍ମାର ଆସିବା ସ୍ଥାନ ଦେଖିଲ ଯେ ତନ୍ତୁ ।
ଗଲେ ମୁଁ ନେଉଛି ଯାଇଁ ରହିବତ ତହିଁ
ଏଣୁ କରି ଜନ୍ମମୃତ୍ୟୁ ଜ୍ଞାନୀର ଯେ ନାହିଁ ।
ଅନ୍ୟ ପ୍ରାଣୀଗଣଙ୍କର ନିଶ୍ଚେ ଅଛି ଜନ୍ମ
ପାପୀ ପାଏ ପାପ ଯୋନି ଜ୍ଞାନୀ ପୁଣ୍ୟ ସ୍ଥାନ ।
ଜନମ ନୋହିଲେ ଅବା କାହିଁକି ମରନ୍ତା
ଏଣୁ ଜନ୍ମ ମରଣର ଅଟେ ଏକ ପନ୍ଥା ।
କେତେ ବେଳେ ଜୀବକୁଟି ଅବସର ନାହିଁ
ତହୁଁ ଆସି ଏଥେ ଜନ୍ମେ ଏଥୁ ଗଲେ ତହିଁ ।
ରୂପରୁ ଗଲେ ଅରୂପ ଅରୂପରୁ ରୂପ
ଜ୍ଞାନୀଏ ଜାଣନ୍ତି ତାହା ଅଜ୍ଞାନୀକୁ ଗୋପ୍ୟ ।
ଏ ରୂପେ କହନ୍ତେ ଆପ ଜୀବ ଗତାଗତ
ବୋଇଲେ ଯେ ମହା ବସ୍ତୁ ଏହା ବ୍ରହ୍ମତତ୍ତ୍ୱ" ।
ଶୁଣ ଆହେ ଯୁଧିଷ୍ଠିର ପ୍ରଳୟ ବର୍ଣ୍ଣନ
ବୈତରଣୀ ଜଳେ ସୃଷ୍ଟି ହୋଇଯାଏ ଲୀନ ।
ଏଠାରୁ ପ୍ରଳୟ ଜଳ ପ୍ରବାହିତ ହୋଇ
ଆସଇ ଶ୍ରୀକ୍ଷେତ୍ର ଗାତ୍ର ବିଶ୍ୱରୂପ ହୋଇ ।
ପ୍ରଳୟ କାଳରେ ଜଳ ରଜ ଦୁଇ ଧାର
ଏକତ୍ର ପ୍ରବହମାନ ହୁଅଇ ଏଠାର ।
ଜଳ ଯୋନି ମଣ୍ଡଳ ଏ ଗୁପ୍ତ ଗଙ୍ଗା ଗିରି
ନିରନ୍ତେ ଝରଇ ଜଳ ରଜ ଭିନ୍ନ କରି ।
ପଶ୍ଚିମେ ବସଇ ରଜ ପୂର୍ବେ ଜଳଧାର
ପଶ୍ଚିମ ଦର୍ଶନ ଅଟେ ନିଷେଧ ବିଚାର ।
ଏଣୁ ପୂର୍ବେ ପ୍ରବାହିତ ଆଦ୍ୟ ଜଳଧାର
ସେ ଜଳେ କରିବ ତୁମ୍ଭେ ପିତୃଙ୍କ ସତ୍କାର ।
ଗଙ୍ଗାଠାରୁ ବୟସରେ ବଡ ବୈତରଣୀ
ବାର ବ୍ରହ୍ମ ବର୍ଷ ବଡ ବୋଲେ ବ୍ରହ୍ମଜ୍ଞାନୀ ।

ସାମାଜିକ ଶୃଙ୍ଖଳା ନଥିଲା । ପୁରୁଷ ନିର୍ବିକାର ଭାବରେ ଯେ କୌଣସି ସ୍ତ୍ରୀକୁ ଅବାଧରେ ରମଣ କରି ପାରୁଥିଲେ । ସେ ସମୟରେ ଗୁରୁ ଗୌରବ ବୋଲି କିଛି ନଥିଲା । ମାନବ ସମାଜରୁ ପାଶବିକ ଯୌନ ପ୍ରବୃତ୍ତିର ଚିର ସମାପ୍ତି ଘଟାଇ ସୁସ୍ଥ ସାମାଜିକ ଜୀବନ ଯାପନ ପ୍ରଚଳନ ଉଦ୍ଦେଶ୍ୟରେ ଦୀର୍ଘତମା ଋଷି ଏହିଠାରେ ସର୍ବ ପ୍ରଥମେ ବିବାହ ବ୍ୟବସ୍ଥାର ପରିବର୍ତ୍ତନ କରାଇଥିଲେ । ଯେଉଁ ସମୟରୁ ମଣିଷ ସମାଜରେ ସ୍ଥାୟୀ ବିବାହ ବ୍ୟବସ୍ଥା ପ୍ରଚଳିତ ହୋଇ ବୈଦିକ କର୍ମକାଣ୍ଡର ଆରମ୍ଭ ହେଲା, ସେହିଦିନ ଠାରୁ ବୈତରଣୀ ସଭ୍ୟତା ହୋଇ ଅଛି ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଖ୍ରୀଷ୍ଟ ପୂର୍ବର ବହୁ ଆଗରୁ ବୈତରଣୀ ସଭ୍ୟତା ପ୍ରସିଦ୍ଧି ଲାଭ କରି ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବ୍ୟାପୃତ ଥିଲା । କଳିଙ୍ଗ, ଓଡ୍ର, ଉତ୍କଳ, କୋଶଳ ପ୍ରଭୃତି ରାଜ୍ୟ ଗୁଡିକ ଏହି ସଭ୍ୟତାର ଅଙ୍ଗ ବିଶେଷ ଥିଲା । ପରବର୍ତ୍ତୀ ସମୟରେ ବୈତରଣୀ ସଭ୍ୟତା ଉତ୍ତରରେ ସୁବର୍ଣ୍ଣରେଖା ନଦୀ ଠାରୁ ଦକ୍ଷି-ଣରେ ଋଷିକୁଲ୍ୟା ନଦୀ ମଧ୍ୟରେ ସୀମିତ ହୋଇଗଲା । ଏହାର ଉତ୍ତରରେ ଖିଜିଙ୍ଗ ମଣ୍ଡଳ ଓ ଦକ୍ଷିଣରେ ଖିଞ୍ଜାଲି ମଣ୍ଡଳ ନାମକ ଦୁଇ ଗୋଟି ଭଞ୍ଜ ସାମ୍ରାଜ୍ୟ ପ୍ରତିଷ୍ଠିତ ହୋଇ ଭାଷା, ସାହିତ୍ୟ, ଶିଳ୍ପ, କଳା ସାହିତ୍ୟ, ଶୋଭା, ଶ୍ରୀ, ଐଶ୍ୱର୍ଯ୍ୟ, ବାଣିଜ୍ୟ, ବ୍ୟବସାୟ, ଧର୍ମ, ଶାସନ ପ୍ରଭୃତି କ୍ଷେତ୍ରରେ ବିଶେଷ ପ୍ରାଧାନ୍ୟ ଲାଭ କରି ଗାଙ୍ଗେୟ ସଭ୍ୟତାଠାରୁ ଉତ୍କୃଷ୍ଟ ଧରଣର ଥିଲା ।

ବୈତରଣୀ ସଭ୍ୟତା କେନ୍ଦୁଝରର ଗୋନାସିକା ପର୍ବତରୁ ଜନ୍ମଲାଭ କରି ତରଳ ସ୍ରୋତା ପ୍ରାୟ ପ୍ରବାହିତ ହୋଇ ସିଂହଭୂମ, ଧଳଭୂମି ମୟୂରଭଞ୍ଜ, ବାଲେଶ୍ୱର ଓ ଯାଜପୁର ଦେଇ ପୂର୍ବ ସମୁଦ୍ର ପର୍ଯ୍ୟନ୍ତ ବ୍ୟାପୃତ ଥିଲା । ଖ୍ରୀଷ୍ଟ ପୂର୍ବର ବହୁ ଆଗରୁ ବୈତରଣୀ ସଭ୍ୟତା ଅନ୍ତର୍ଗତ କଳିଙ୍ଗ ରାଜ୍ୟର ନୌବାଣିଜ୍ୟ ଧାମରା ମୁହାଣ ଦେଇ ସାତ ସମୁଦ୍ର ତେର ନଦୀ ଅତିକ୍ରମ କରି ସିଂହଳ, ବାଲି, ଜାଭା, ବର୍ମା ଓ ପ୍ରଭୃତି ଦ୍ୱୀପ ପୁଞ୍ଜରେ ପ୍ରସିଦ୍ଧି ଲାଭ କରି ତାମ୍ରଲିପ୍ତ ନାମକ ସାମୁଦ୍ରିକ ।ବି ଖେଣ୍ଡ ସ୍ଥାପିତ ହୋଇଥିଲା । ପୃଥିବୀରେ ନୌ ବାଣିଜ୍ୟ ଆରମ୍ଭ ହେବାର ବହୁ ପୂର୍ବରୁ ବୈତରଣୀ ସଭ୍ୟତା ଏକ ସମୁନ୍ନତ ଅବସ୍ଥାରେ ଦାର୍ପଣ କରି ଓଡିଆ ଜାତି ଏକ ନୌ-ସାମ୍ରାଜ୍ୟ ଜାତି ରୂପେ ଖ୍ୟାତି ଅର୍ଜନ କରିଥିଲା ।

ଗାଙ୍ଗେୟ ସଭ୍ୟତା ସହିତ ବୈତରଣୀ ସଭ୍ୟତାର ମିଳନ ଆର୍ଯ୍ୟ ଧର୍ମ ମାଧ୍ୟମରେ ଯେତିକି ସମ୍ଭବ ହୋଇ ନ ଥିଲା ତତୋଧିକ ଭାବରେ ବୌଦ୍ଧ ଧର୍ମ ମାଧ୍ୟମରେ ସମ୍ଭବ ହୋଇ ଥିଲା । ବୌଦ୍ଧ ଧର୍ମ ଶାସ୍ତ୍ର ଅନୁଯାୟୀ ତପସୁ ଓ ଭଲ୍ଲିକ ନାମକ ଦୁଇ ଜଣ ଉତ୍କଳବାସୀ ଭୂୟାଁ । ଭ୍ରାତ ସ୍ଥଳପଥରେ ପୂର୍ବ ଭାରତରେ ବ୍ୟବସାୟ କରିବାକୁ ଯାଉଥିବା ସମୟରେ ଉରୁବେଲା ବନ ମଧ୍ୟରେ ବୋଧିଦ୍ରୁମ ତଳେ ଗୌତମ ବୁଦ୍ଧଙ୍କର କୃପାମୟ ଦର୍ଶନ ଲାଭ କରି ବୌଦ୍ଧ ଧର୍ମ ଗ୍ରହଣ କରିଥିଲେ ।

ନୌବାଣିଜ୍ୟ :— ପ୍ରାଚୀନ କଳିଙ୍ଗ ବା ଓଡ଼ିଶାର ନୌବାଣିଜ୍ୟ ଓଡ଼ିଶାର ଗୌରବମୟ ଇତିହାସର ଅନ୍ୟ ଏକ ଗୌରବମୟ ଅଧ୍ୟାୟ । ଲକ୍ଷ୍ମୀ ପୁରାଣ, ମାଦଳା ପାଞ୍ଜି, ଓଡ଼ିଶାର ଲୋକ କଥା, ବ୍ରତକଥା ପ୍ରଭୃତିରେ ନୌବାଣିଜ୍ୟର ପ୍ରସଙ୍ଗ ରହିଛି । ସାଧବ ସାଧବାଣୀ କଥା ଭିତରେ ପ୍ରାଚୀନ ଓଡ଼ିଶାର ଲୁପ୍ତ ନୌବାଣିଜ୍ୟର ଇଙ୍ଗିତ ଦେଖିବାକୁ ମିଳେ । ଶାରଳା ମହାଭାରତ ରଚନା ସମୟ ଅର୍ଥାତ ୧୫ ଶ ଶତାବ୍ଦୀରେ ଓଡ଼ିଶାରେ ନୌବାଣିଜ୍ୟ ସମୃଦ୍ଧ ଥିଲା ।

ରାଜସୂୟ ଯଜ୍ଞ ଆୟୋଜନରେ ଶ୍ରୀକୃଷ୍ଣ ମୁଷଳୀମାନଙ୍କୁ ୮୦ ଲକ୍ଷ ନାବ ଛାଡ଼ିଦେବା ନିମିତ୍ତ ଆଦେଶ ଦେଇଛନ୍ତି ।

"ଅଶୀଲକ୍ଷ ନାବ ଦେବ ତୁମ୍ଭେ ଛାଡ଼ି
ଓଡ଼ଗ୍ରା ପବନ ହୋଇବ ଜାଣ ତେଡ଼ି ।
ମୁଗ, ମୁଗ, ନଡ଼ିଆ, ପରିବା ଧାନ
ନାବ ଛାଡ଼ି ଆଣୁଥିବ ହୁର ଯେ ଉଦ୍ୟାନ ।"

ପୁଣି

"ଶ୍ରୀଭୁଜଙ୍କେ ଶାଢ଼ୀ ନେଇ ଦେଲେକ ଶ୍ରୀହସ୍ତ
ଅଶୀଲକ୍ଷ ନାବ ବାନ୍ଧୁଥିବ ବନ ବସ୍ତ ।
ଜାତ କେରୁଆଳ ନାବ ମାନ ସବୁ
ଚଳନ କର ଯେମାନ ନମସ୍କାରଂ କରିବୁ ।

ସେତୁ ବାନ୍ଧ ନିର୍ମାଣ ନିମିତ୍ତ ନାବରେ ଦାରୁ ଓ ପାଷାଣ ବୁହା ଯିବାର ବର୍ଣ୍ଣନା ରହିଛି ।

କୈବର୍ତ୍ତ ନୃପତି ନାବରେ ଦାରୁ ମାନନ୍ତ ପୂରାଇ
ପାଷାଣ ମାନନ୍ତ ପୂରାଇ ସମୁଦ୍ର କୂଳକୁ ନେଇ ।"

ଆଜ ମଧ୍ୟ ଓଡ଼ିଶାର କୈବର୍ତ୍ତମାନେ ଗାମ୍ୟ ନୌବାଣିଜ୍ୟର ଅଧିକାରୀ । ତେଣୁ କୈବର୍ତ୍ତ ରାଜା ନିର୍ଦ୍ଦେଶରେ ଲକ୍ଷ ଲକ୍ଷ କୈବର୍ତ୍ତ ନାବିକ ନାବ ବାହିଛନ୍ତି ଓ ସେତୁବନ୍ଧ ନିର୍ମାଣ କାର୍ଯ୍ୟରେ ସାହାଯ୍ୟ କରି ଅଛନ୍ତି । ପ୍ରାଚୀନ ଓଡ଼ିଶାରେ ରାଜପଥ ସୁପ୍ରସସ୍ତ ନଥିଲା, ନଦୀ ମାତୃକା ଦେଶରେ ନୌବାଣିଜ୍ୟ ଥିଲା ପରିବହନର ପ୍ରଧାନ ସଂସ୍ଥା । ଓଡ଼ିଶାର ଅନେକ କ୍ଷୁଦ୍ର ବୃହତର ନଦୀ ଗୁଡ଼ିକ ବନ ବନ ପର୍ବତ ଦେଶରେ ପ୍ରବାହିତ ହୋଇ ସମୁଦ୍ରରେ ମିଶି ଥିବାରୁ ଏବଂ ଓଡ଼ିଶାର ସମଗ୍ର ପୂର୍ବ ଉପକୂଳ ଦୀର୍ଘ ସାଗର ବେଳାରେ ଅବସ୍ଥିତ ଥିବାରୁ ପ୍ରାଚୀନ କାଳରେ ଓଡ଼ିଶାରେ ଯେ ଉନ୍ନତ ନୌବାଣିଜ୍ୟ ଥିଲା ଏଥିରେ ସନ୍ଦେହ ନାହିଁ । ଭାରତର ଅନ୍ୟ କୌଣସି ରାଜ୍ୟ ଏପରି ଭୌଗୋଳିକ ସୁଯୋଗ ଲାଭ କରିନାହିଁ । ପ୍ରାଚୀନ ଓଡ଼ିଶାର ଖର୍ବ ଖର୍ବ ସଂଖ୍ୟା ନାବରେ କଦଳୀ, ନଡ଼ିଆ, ପଣସ, ଅମ୍ବ, ଟଭା, ନାରଙ୍ଗ, ଲେମ୍ବୁ, କଣ୍ଡାମୂଳ ପ୍ରଭୃତି ଫଳ ପନିପରିବା ଓ ବଡ଼ ବଡ଼ ନିର୍ମାଣ ଯୋଜନା ପାଇଁ କାଠ ପାଷାଣ ବୁହା ଯାଉଥିଲା ।

ବହୁ ଆଗରୁ ଥାଇ ନୌକା ଗୁଡ଼ିକ ପରିଚାଳିତ ହେବାର କଥା ରହିଛି । ନୌବାଣିଜ୍ୟ ବ୍ୟତୀତ ରାଜାମାନେ ଶେଷ ଭିତ ନୌକା ସୌଖିନ ଜଳକ୍ରୀଡ଼ା ପାଇଁ ନାବ-ବିମାନ ବ୍ୟବହୃତ ହେଉଥିଲା ।

# ଶବରୀ ସଂସ୍କୃତି

ଭଗବାନଙ୍କ ସୃଷ୍ଟିରେ ଶବର ଜାତି ନିସର୍ଗର ଅଙ୍କାଧିକାରୀ, କଦାକାର, ଉଦ୍ଭଟ ଓ ମୂର୍ଖ ରୂପେ କଥିତ ଅଛି। ତା'ର ଜନ୍ମ ଇତିହାସ ସମ୍ବନ୍ଧରେ ସ୍ପଷ୍ଟ ଜ୍ଞାନ ନାହିଁ, ସେମାନଙ୍କର ନିଜସ୍ୱ ଲିଖିତ ଭାଷା ନାହିଁ। ଅତୀତରେ ଆର୍ଯ୍ୟମାନେ ସେହି ଶବର ଏବଂ ଅନ୍ୟାନ୍ୟ ଆଦିବାସୀମାନଙ୍କୁ ସେମାନଙ୍କ ଅଧିକାରରେ ଥିବା ଶସ୍ୟ ଶ୍ୟାମଳ ସୁବର୍ଣ୍ଣ ସମତଳ ଭୂମିରୁ ବନ ପର୍ବତକୁ ତଡ଼ି ଦେଇଥିଲେ। କିନ୍ତୁ ଆଦିମ ଯୁଗରେ ତାହାର ପୂର୍ବ ପୁରୁଷ ଏ ଭୂମିରେ ବନ ଜଙ୍ଗଲ କାଟି [illegible], [illegible], ଉର୍ବର ଓ ଶସ୍ୟ ଶ୍ୟାମଳ କରିଥିଲେ। ସେହି ଶବରଙ୍କ ପୂଜିତ ଦେବତା ସମାଜ ବୋଲି ଅଦୃଶ୍ୟ ଦେବତା ଶ୍ରୀ ନୀଳମାଧବଙ୍କୁ ଶ୍ରୀ ଜଗନ୍ନାଥ ରୂପରେ, ତାଙ୍କ ଲୋକ ଦେବତାଙ୍କୁ ଶିବଲିଙ୍ଗ ଭାବରେ ଏବଂ ଶବର କନ୍ୟାକୁ ଉପଭୋଗ୍ୟ ଭାବେ ହସ୍ତଗତ କଲେ।

ରାମାୟଣ, ମହାଭାରତ, ଭାଗବତ ଓ ଅଷ୍ଟାଦଶ ପୁରାଣ ଗ୍ରନ୍ଥରେ ଶବର ଜାତିର ଉଲ୍ଲେଖ [illegible] ମିଳେ। ପୁରାଣ ଯୁଗରେ ଶବରମାନେ କିରାତ, ପୁଳିନ୍ଦ, ନିଷାଦ ବା ବ୍ୟାଧ ନାମରେ ଖ୍ୟାତ ଥିଲେ।

ଓଡ଼ିଶାରେ ଶବର ଜାତିର ଲୋକ ସଂଖ୍ୟା ତିନି ଲକ୍ଷରୁ ଅଧିକ। ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ସମ୍ବଲପୁର, ଢେଙ୍କାନାଳ, ପୁରୀ, କଟକରେ ଶବରମାନେ ବିଶେଷ ଭାବରେ ବାସ କରୁଥିଲେ ହେଁ କେନ୍ଦୁଝର, ମୟୂରଭଞ୍ଜ, [illegible], ସିଂହଭୂମି ଓ ଧଳଭୂମିରେ ସେମାନଙ୍କର ସଂଖ୍ୟା କମ୍ ନୁହେଁ। ଶବରମାନେ ଶବର, ଶଉରିଆ, ଶହର, ସଅର ଓ ଶବର ବୋଲି ଖ୍ୟାତ ଅଛନ୍ତି। ଏମାନଙ୍କ ମଧ୍ୟରେ ଦଶ ଗୋଟି ଉପଜାତି ଅଛି, ଯଥା—ଲମ୍ବଲଞ୍ଜିଆ, ଯାଦୁ, ମାଲି, ସୁକକା, ସାହେଜା, କଣ୍ଡାଳ, ଆରସି, ସୁଆର, କାପୁ ଓ କୁଦୁମ୍ବା। ଏ ବ୍ୟତୀତ ଶୁଦ୍ଧ ଶବର, ଜରି ଶବର, ଏବଂ ଜରଶବର ମଧ୍ୟ ଅଛନ୍ତି। ଏମାନେ ଓଡ଼ିଆ ଭାଷା କହନ୍ତି। ଏହି ଉପଜାତିମାନଙ୍କ ମଧ୍ୟରେ ଉଚ୍ଚ ନୀଚ ଜାତି ଭାବ ଏବଂ ବସବାସଗତ ପାର୍ଥକ୍ୟ ମଧ୍ୟ ରହିଅଛି।

କେନ୍ଦୁଝର ଜିଲ୍ଲାରେ ଅନେକ ଗୋଟି ପାହାଡ଼ିଆ ଗାଁକୁ ନେଇ ଗୋଟିଏ ଗୋଟିଏ ଶବର ପଲ୍ଲୀ ଗଠିତ ହୋଇଅଛି ଏବଂ ପ୍ରତ୍ୟେକ ପଲ୍ଲୀର ପ୍ରଧାନ ବ୍ୟକ୍ତି 'ପରିଚ୍ଛା' ନାମରେ ବିଖ୍ୟାତ। ତାଙ୍କ ତଳେ ଜଣେ 'ଦେହୁରିଆ' ଅଛନ୍ତି। ଶବର ପଲ୍ଲୀ ଗୁଡ଼ିକୁ ନେଇ ବର୍ଷରେ ଥରେ ଦୁଇଥର ଶବରମାନଙ୍କର ଜାତି ସଭା ଅନୁଷ୍ଠିତ ହୋଇ ଥାଏ। ସେହି ସଭାକୁ ପ୍ରତି ଗ୍ରାମର ମୁଖିଆ ଲୋକ ବା ଗ୍ରାମ ପ୍ରତିନିଧି ଯାଆନ୍ତି। ସେହି ଜାତି ସମ୍ମିଳନୀରେ ଶବରମାନଙ୍କ ମଧ୍ୟରେ ସାମାଜିକ ବିବାଦ ବିସମ୍ବାଦ, କଳି ଝଗଡ଼ା, ଦ୍ୱନ୍ଦ୍ୱ ବିବାଦ, ସାମାଜିକ ଦୋଷ ଇତ୍ୟାଦି ବିଷୟରେ ବିଚାର ଆଲୋଚନା ହୋଇ ନିଷ୍ପତ୍ତି ଗ୍ରହଣ କରାଯାଏ। ଜାତି ନିଷ୍ପତ୍ତିକୁ ଅବମାନନା କଲେ ଶବର ସମାଜ ଅପରାଧୀକୁ ଦଣ୍ଡ ବା ଜାତିଚ୍ୟୁତ କରନ୍ତି। ଜାତିଚ୍ୟୁତ ଶବର ଶ୍ରୀକ୍ଷେତ୍ର ପୁରୀ ଯାଇ ସେଠାରେ ଲଣ୍ଡା ହୋଇ ଶ୍ରୀଜଗନ୍ନାଥ ଦର୍ଶନ ଓ ମହାପ୍ରସାଦ ସେବନ କରି ଗ୍ରାମକୁ ଫେରିଆସି ଜାତିଭାଇଙ୍କ ଉଦ୍ଦେଶ୍ୟରେ ପ୍ରୀତିଭୋଜନ

ମଧ୍ୟରେ ମୁଣ୍ଡି କାଟିବାର ମଣିଥାଏ ।

ଏମାନେ ହିନ୍ଦୁମାନଙ୍କ ପରି ବିଭିନ୍ନ ଦେବଦେବୀ ପୂଜା କରନ୍ତି ଏବଂ ହିନ୍ଦୁ ପୁରାଣ ଶାସ୍ତ୍ର ପଠନ କରନ୍ତି । ଏମାନେ ଶ୍ରାଦ୍ଧ, ହୋମ, ଯଜ୍ଞ, ବିବାହବ୍ରତ ପ୍ରଭୃତି ପାଳନ କରନ୍ତି । କାଉଁରିଆ ପଇତା ପକାନ୍ତି, ଏମାନେ ମୁଣ୍ଡରେ ଦେବୁଙ୍କ ଉପାଧି ଧାରଣ କରି ଗ୍ରାମଦେବତୀଙ୍କର ପୂଜକ କାର୍ଯ୍ୟ କରିଥାନ୍ତି । ଶବରମାନଙ୍କରେ ଅସୁରୀ ବିବାହ ପ୍ରଥା ପ୍ରଚଳିତ ଥିଲେ ମଧ୍ୟ ବେଦମତରେ ବିବାହ କାର୍ଯ୍ୟ ସମ୍ପାଦିତ ହୋଇଥାଏ । ଏମାନେ ଶବଦାହ କରନ୍ତି ଓ ଚିତାଭସ୍ମବି ମାଟିରେ ପୋତି ଦିଅନ୍ତି । ହିନ୍ଦୁମାନଙ୍କ ପରି ଦଶାହ କ୍ରିୟା ସମ୍ପାଦନ କରନ୍ତି । ମୃତ୍ୟୁ ଦିବସର ପରଦିନ ମାସିକିଆ ଓ ବାର୍ଷିକିଆ ଶ୍ରାଦ୍ଧ ଭୋଜି ଦିଅନ୍ତି । ବାର୍ଷିକିଆ ଦିନ ସେମାନେ ମୃତବ୍ୟକ୍ତିର କବର ସ୍ଥାନରେ ନାଚନ୍ତି ଏବଂ ଗାଁ ନିକଟରେ ଏକେଗଛ ତଳେ ମୃତବ୍ୟକ୍ତିର ସ୍ମାରକ ସ୍ୱରୂପ ଏକ ପଥର ପୋତି ଦିଅନ୍ତି । ମୃତ ବ୍ୟକ୍ତିର ବ୍ୟବହୃତ ପଦାର୍ଥ ଯଥା-ଧନୁଶର, ଟାଙ୍ଗିଆ, ଛୁରି, ମାଳ, ଲୁଗା, ଖଡ଼ଗ ଇତ୍ୟାଦି ଶବ ସଙ୍ଗେ ପୋଡ଼ା ଯାଏ । ଏମାନେ ଭୂତ ପ୍ରେତ ବିଶ୍ୱାସ କରନ୍ତି ।

ଶବରମାନେ ହିନ୍ଦୁ ସମାଜର ନିକଟତମ ସମ୍ପର୍କୀୟ ଏବଂ ହିନ୍ଦୁଧର୍ମର ଦେବଦେବୀ ସେମାନଙ୍କ ଦେବଦେବୀ ମଧ୍ୟରେ ଅନେକ ସାମଞ୍ଜସ୍ୟ ଦେଖାଯାଏ ।

ପୌରାଣିକ ସଙ୍କେତରୁ ଜଣାଯାଏ ଯେ, ବେଣୁ ନାମକ ଜଣେ ଦାସ ରାଜା ବା ଦସ୍ୟୁ ମହା ପରାକ୍ରମଶାଳୀ ହୋଇ ନାନା ଅତ୍ୟାଚାର କଲା ଏବଂ ବହୁ ଜୀବଜନ୍ତୁଙ୍କୁ ହତ୍ୟାକଲା । ଋଷିମାନେ ତାହାର ଦକ୍ଷିଣ ଜାନୁକୁ କୁଶଦ୍ୱାରା କଟିବାରୁ ତହିଁରୁ ଏକ ଖର୍ବକାୟ ମନୁଷ୍ୟ ଜାତ ହେଲା । ତାହାର ଚକ୍ଷୁଦ୍ୱୟ ରକ୍ତବର୍ଣ୍ଣ ଓ କେଶ ଗୁଚ୍ଛ ଘନ କୃଷ୍ଣ ବର୍ଣ୍ଣ । ଏ ନିଷାଦ ନାମରେ ଅଭିହିତ ହେଲା ଏବଂ ଏହାର ବଂଶଧର ମାନଙ୍କୁ ନିଷାଦ, କିରାତ, ପୁଳିନ୍ଦ, ମ୍ଳେଚ୍ଛାଦି କୁହାଗଲା । ଭାଗବତ ବର୍ଣ୍ଣନାରେ ସେମାନେ କୁଆପରି କଳା, ଅଙ୍ଗ ଅବୟବ ଛୋଟ ବା ହ୍ରସ୍ୱ ଖର୍ବାକୃତି, ପାଦ କ୍ଷୁଦ୍ର, ନାକ ଚେପ୍ଟା ନିମ୍ନମୁଖୀ, ହନୁ ବିଶାଳ, ଆଖି ଦୁଇଟି ରକ୍ତବର୍ଣ୍ଣ ଏବଂ କେଶ କମାଳ ତାମ୍ରବର୍ଣ୍ଣ ।

"କାଦମ୍ବରୀ"ର ଲେଖକ ବାଣଭଟ୍ଟଙ୍କ ମତରେ କୃଷ୍ଣପକ୍ଷର ସମସ୍ତ ଅନ୍ଧକାର ରାତିକୁ ଏକତ୍ର ମିଶାଇ ଦେଲେ ଯେପରି କଳମ ଦେଖାଯିବ ଶବରମାନେ ସେହିପରି କୃଷ୍ଣବର୍ଣ୍ଣ ଅଟନ୍ତି । ସେମାନଙ୍କ ରାଜାର ହସ୍ତ ମନୁଷ୍ୟ ରକ୍ତ ରଞ୍ଜିତ, ସେମାନଙ୍କର ଧର୍ମ ହେଲା ନରରକ୍ତ ଓ ମାଂସରେ ଦୁର୍ଗାଙ୍କ ଉପାସନା; ଚଣ୍ଡିଆଙ୍କ ରବ ହେଲା ସେମାନଙ୍କ ଶାସ୍ତ୍ରବାଣୀ, ପେଚକ ସେମାନଙ୍କ ଶିକ୍ଷାଦାତା ଗୁରୁ, କୁକୁର ସେମାନଙ୍କ ବନ୍ଧୁ । ମୃଗୟା ସେମାନଙ୍କର ବ୍ୟବସାୟ ଏବଂ ଅପହୃତା ରମଣୀ ସେମାନଙ୍କର ଅର୍ଦ୍ଧାଙ୍ଗିନୀ ।

ବାଣଭଟ୍ଟ ଶବର ରାଜାର ଚରିତ୍ର ବର୍ଣ୍ଣନରେ ଲେଖିଛନ୍ତି ଯେ ଶବର ରାଜା ବିରାଟ କାୟ ଯୋଗୁଁ ଭୟଙ୍କର ହେଲେ ମଧ୍ୟ ସେ ମହତ ଏବଂ ବନ ଦେବତା ଅନୁସାରେ ତା'ର ଶରୀର କୃଷ୍ଣବର୍ଣ୍ଣର ପଦ୍ମ ସଦୃଶ୍ୟ ଘନକୃଷ୍ଣ ଏବଂ ତମ୍ବାଳ ଫଳବାରି ସଦୃଶ୍ୟ ତା'ର କୁଞ୍ଚିତ କେଶ ପାଶ ସ୍କନ୍ଧ ଦେଶରେ ଲମ୍ବମାନ, ତାକୁ ରୌଦ୍ର ତାପରୁ ରକ୍ଷା କରିବା ନିମନ୍ତେ ତାର ମସ୍ତକ ଉପରେ ଅସଂଖ୍ୟ ମହୁମାଛି ଉଡ଼ୁଛନ୍ତି । ତାରି ଗୃହ ପଟରେ ଶିକାରୀ କୁକୁର ବୁଲୁଛନ୍ତି ।

ପ୍ରଥମ ଶତାବ୍ଦୀରେ ପ୍ଲିନି ଓଡ଼ିଶା ଅଧିବାସୀଙ୍କୁ ଶବର ବୋଲି କହି ଅଛନ୍ତି । ଦ୍ୱିତୀୟ ଶତାବ୍ଦୀରେ ଟୋଲେମୀ ଏମାନଙ୍କୁ ଶବରାଇ ବୋଲି ବର୍ଣ୍ଣନା କରି ଅଛନ୍ତି । କୋଶଳ ରାଜ୍ୟରେ ବହୁଳ ଭାବରେ ଶବରମାନେ ବାସ କରୁ ଥିବାରୁ ତାର ନାମ ଶବରପୁର ବା ସମ୍ବଲପୁର ହୋଇଥିବାର ଅନୁମାନ କରାଯାଏ । ଏହି ଶବଳ ବା ସମ୍ବଳ ଶବ୍ଦ ଯୋଗରେ ଆର୍ଯ୍ୟେତର ଭାଷାରେ ବୋଡ଼ା ସମ୍ବର ରାଜ୍ୟ ସୃଷ୍ଟି ହୋଇଥିବାର ପ୍ରମାଣ ମିଳେ ।

ଢେଙ୍କାନାଳର ନାମକରଣ ଢେଂକାଶବର ନାମରୁ ହୋଇଛି ବୋଲି କିମ୍ବଦନ୍ତୀରୁ ଜଣାଯାଏ । କଥିତ ଅଛି ଢେଂକାଶବର ଏକ ଦୁର୍ଗମ ସ୍ଥାନରେ ପର୍ବତ ଉପରେ ଏକ ଦୁର୍ଗ ସ୍ଥାପନ କରି ଏକକୋଶ ବ୍ୟାପି ଏକନାଳୀ ଖୋଳାଇ ଥିଲା । ଏହି ଢେଙ୍କାନାଳୀରୁ ଢେଙ୍କାନାଳ ହୋଇ ଅଛି ବୋଲି ପ୍ରବାଦ ରହିଛି ।

"କପିଳାସ ଖୋଳ ନିବାସୀ ଶବର
ରଣରଙ୍କା ଢେଙ୍କା ଯାବଂଶ ଶେଖର ।"

ଢେଙ୍କା ଶବରର ସମସାମୟିକ ଓଡ଼ିଶାର ଗଜପତି ପ୍ରତାପରୁଦ୍ରଦେବଙ୍କ ଶାସନ କାଳରେ ବଣାଳିଆ ଦୁର୍ଗର ଭଞ୍ଜରାଜା ଶ୍ରୀଧର ଭଞ୍ଜ ତାହାର ଦୌରାତ୍ମ୍ୟ ସହି ନପାରି ବଡ଼ଯୋଡ଼ା ନାଳ ପାରି ହୋଇ କୃଷ୍ଣିଆ ପର୍ବତ ଉପରେ ସୈନ୍ୟ ସମାବେଶ କରି ତାହାକୁ ଆକ୍ରମଣ କରି ସସୈନ୍ୟେ ପୃଷ୍ଠଭଙ୍ଗ ଦେଇଥିଲେ । ଭଞ୍ଜରାଜା ଶ୍ରୀଧର ଭଞ୍ଜ ସମ୍ମୁଖ ଯୁଦ୍ଧରେ ଢେଙ୍କାଶବରକୁ ଜୟ କରିବାର ଆଶା ତ୍ୟାଗକରି ତାହାକୁ ଗୋପନରେ ହତ୍ୟା କରିବା ପାଇଁ ଚକ୍ରାନ୍ତ କଲେ । ରାଜାଙ୍କ ନିର୍ଦ୍ଦେଶ କ୍ରମେ କେତେକ ସଶସ୍ତ୍ର ସର୍ଦ୍ଦାର ଢେଂକାର ଗଡ଼ ନିକଟରେ ଲୁଚି ରହିଲେ ଏବଂ ଏକଦା ଢେଂକାକୁ ନିରସ୍ତ୍ର ଥିବାର ଦେଖି ହଠାତ୍ ଆକ୍ରମଣ କରି ତାହାକୁ ବନ୍ଦୀ କଲେ । ଢେଙ୍କାଶବର ଭଞ୍ଜ ରାଜାଙ୍କୁ ଧିକ୍‌କାର କରନ୍ତେ ସେ ଅପମାନିତ ହୋଇ ତାହାର ଶିରଚ୍ଛେଦନ ପାଇଁ ଆଦେଶ ଦେଲେ । ଢେଂକା ମୃତ୍ୟୁ ପୂର୍ବରୁ ରାଜାଙ୍କୁ କହିଲା "ମୋତେ ଗୁରୁଦ୍ରୋହ ହେତୁ ମୋର ଏଦଶା ଘଟିଲା । ମୋର କଟା ମୁଣ୍ଡକୁ ମୋ ପୀଠ ଉପରେ ବସାଇ ପୂଜା କରିବୁ ଏବଂ ସେହିଠାରେ ଗଡ଼ ନିର୍ମାଣ କରି ମୋ ନାମରେ ନାମିତ କରିବୁ; ନୋହିଲେ ତୋ ରାଜ୍ୟ ଶତ୍ରୁ କବଳିତ ହେବ ।" ଶ୍ରୀଧର ଭଞ୍ଜ ଦର୍ପ କରି ଏକଥାକୁ ହସି ଉଡ଼ାଇ ଦେଲେ । ଢେଂକା ମୁଣ୍ଡ ଭୂତଳରେ ଲୋଟି ପଡ଼ିଲା । ଢେଙ୍କାନାଳ ରାଜ୍ୟର ସ୍ଥାପନ କର୍ତ୍ତା ପରବର୍ତ୍ତୀ ହରିସିଂହ ବିଦ୍ୟାଧର ବଣାଳିଆ ଗଡ଼ର ଭଞ୍ଜରାଜା ଶ୍ରୀଧର ଭଞ୍ଜଙ୍କୁ ଯୁଦ୍ଧରେ ଜୟ କରି ଆଘାତ କରିଥିଲେ । ମୃତ୍ୟୁ ପୂର୍ବରୁ ଶ୍ରୀଧର ଭଞ୍ଜ ଢେଙ୍କା ଶବରର ଅନ୍ତିମ କାମନା ହରିସିଂହ ବିଦ୍ୟାଧରଙ୍କୁ ଶୁଣାଇ ଦେଇଥିଲେ । ହରିସିଂହ ସେ କଥାରେ ପ୍ରତ୍ୟୟ ସ୍ଥାପନ କରି ନିଜ ଅଧିକୃତ ରାଜ୍ୟର ନାମ ଢେଙ୍କାନାଳ ରଖିଥିଲେ ଏବଂ ପାହିଅଁଳା ପର୍ବତ କଟିଦେଶରେ ଢେଙ୍କାର ପୀଠ ସ୍ଥାନରେ ନିଜ ରାଜଧାନୀ ସ୍ଥାପନ କଲେ । ଏହି ଦୁର୍ଗ ସମୀପରେ ବଳଭଦ୍ର ମନ୍ଦିର ନିକଟରେ ଢେଙ୍କାର ପାଷାଣ ମୁଣ୍ଡ ସ୍ଥାପନ କରିଥିଲେ ।

ବର୍ତ୍ତମାନ ପ୍ରଶ୍ନ ହେଉଛି, ଏହି ଶ୍ରୀଧର ଭଞ୍ଜ କିଏ ? କେନ୍ଦୁଝରର ଭଞ୍ଜ ରାଜ ବଂଶର କୁଷିନାମାରୁ ଜଣାଯାଏ ଯେ, ଏହି ବଂଶର ଚତୁର୍ଦ୍ଦଶ ପୁରୁଷରେ ଶ୍ରୀଧର ଭଞ୍ଜ ନାମରେ ଜଣେ ରାଜା ଖ୍ରୀ: ୧୩୫୪ ରୁ ୧୩୬୯ ଖ୍ରୀ: ପର୍ଯ୍ୟନ୍ତ କେନ୍ଦୁଝରରେ ରାଜା ଥିଲେ । ଏହି ରାଜା ଶ୍ରୀଧର ଭଞ୍ଜ ଡେଙ୍କା ଶବର ସହିତ ଯୁଦ୍ଧରେ ଲିପ୍ତ ଥିଲେକି ନା ଗବେଷଣା ସାପେକ୍ଷ ଅଟେ । ମାତ୍ର ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ ଢେଙ୍କାନାଳ ଓ କେନ୍ଦୁଝର ରାଜ୍ୟଦ୍ୱୟ ପରସ୍ପର ପଡ଼ୋଶୀ ରାଜ୍ୟ ହୋଇ ଥିବାରୁ ବହୁ ସମୟରେ ଉଭୟ ରାଜ୍ୟ ମଧ୍ୟରେ ଯୁଦ୍ଧ ଲାଗି ରହୁଥିଲା ।

ଶାରଳା ମହାଭାରତରେ ଲେଖା ଯାଇଛି ଯେ ଶିଖର ନାମକ ଜଣେ ଶବର ବିଶେଷ ତପସ୍ୟା ଫଳରେ ଶିବଙ୍କୁ ପ୍ରାପ୍ତ ହୋଇ କପିଳାସ ପର୍ବତରେ ପୂଜା ପାଉଅଛି ।

"ଶିଖର ବୋଲି କରଣ ଏକଇ ଶବର
ସେହି ମୋତେ ସେବାକଲା ଅନେକ କଠୋର ।
ସେ ଶିଖର ଶବରକୁ ଭୋଳେ ଦେଲେ ବର
କପିଳାସବାସୀ ହେଲା ସେ ଶିଖରେଶ୍ୱର ।"

ଚିନ୍ତା ଓ ଲୁହାନୀ ନାମକ ଦୁଇଜଣ ଶବର ସେହି ଦିନଠାରୁ କପିଳାସରେ ଶିବ ପୂଜାର ଅଧିକାରୀ ଅଛନ୍ତି । କପିଳାସ ଭିନ୍ନ ଅନ୍ୟ କୌଣସି ସ୍ଥାନରେ ଦେବଦେବୀ ମନ୍ଦିରରେ ଶବରମାନଙ୍କର ସେବା ପୂଜା ଅଧିକାର ଦେଖାଯାଏ ନାହିଁ । ଏଥିରୁ ଜଣାଯାଏ ଯେ, ପଞ୍ଚଦଶ ଶତାବ୍ଦୀ ପୂର୍ବରୁ ଶବରମାନେ ହିନ୍ଦୁ ସମାଜର ନିକଟତର ହୋଇଥିଲେ । ସେମାନଙ୍କର ଶୌର୍ଯ୍ୟ, ବୀର୍ଯ୍ୟ, ଗାମ୍ଭୀର୍ଯ୍ୟ ଏବଂ ସ୍ୱାବଲମ୍ବୀ ପ୍ରଭୃତି ସମୁନ୍ନତ ଥିଲା ।

ଦ୍ୱାପର ଯୁଗରେ ଜରାଶବରର ଶରରେ ଭଗବାନ ଶ୍ରୀକୃଷ୍ଣ ପ୍ରାଣ ହରାଇ ଥିଲେ । ରାମ ରାବଣ ଯୁଦ୍ଧରେ ଉତ୍ତର ଭାରତର ଆର୍ଯ୍ୟାବ୍ରତର ଶ୍ରୀରାମ, ଦକ୍ଷିଣ ଭାରତର ଦ୍ରାବିଡ଼ ଅଧିପତି ରାବଣଙ୍କୁ ବିନାଶ କରିଥିବାରୁ ଦ୍ରାବିଡ଼ମାନେ ଆର୍ଯ୍ୟମାନଙ୍କ ପ୍ରତି ଅସୂୟା ପ୍ରଦର୍ଶନ କଲା ପରି; ଦ୍ୱାପର ଯୁଗରେ ଆର୍ଯ୍ୟାବ୍ରତର ଶ୍ରୀକୃଷ୍ଣଙ୍କୁ ଶବର ନୃପତି ଜରାଶବର ହତ୍ୟା କରିଥିବାରୁ ଆର୍ଯ୍ୟମାନେ ସେମାନଙ୍କ ସାହିତ୍ୟରେ ଶବର ଜାତିକୁ ଘୃଣା କରିଥିବା କଥା ବିଚିତ୍ର ନୁହେଁ । ଏଥିରୁ ଅନୁମିତ ହେଉଅଛି ଯେ, ଭାରତରେ ଆର୍ଯ୍ୟ, ଦ୍ରାବିଡ଼ ଓ ଶବର ବା ଆଦିବାସୀ ସଂସ୍କୃତି ମଧ୍ୟରେ ସର୍ବଦା ଦ୍ୱନ୍ଦ ଲାଗି ରହୁଥିଲା ।

ଭୀଷ୍ମପର୍ବରେ ବର୍ଣ୍ଣିତ ହୋଇଅଛି ଯେ, କୁରୁକ୍ଷେତ୍ର ଯୁଦ୍ଧରେ ଯୋଗ ଦେବା ପାଇଁ କରାତସେନ ନାମକ ଶବର ନୃପତି ଅକ୍ଷୌହିଣୀ ପ୍ରାର୍ଥୀ ହୋଇ ଥିଲେ । କରାତସେନର ବଳବୀର୍ଯ୍ୟର ସନ୍ଧାନ ପାଇ ଶ୍ରୀକୃଷ୍ଣ ମହାପ୍ରଭୁ କପଟ କରି ସୁଦର୍ଶନ ଚକ୍ରରେ ତାହାର ଶିରୋଚ୍ଛେଦନ କରିଥିଲେ । ଏଥିରୁ ଜଣାଯାଏ ଯେ, ଆର୍ଯ୍ୟମାନେ କୁରୁକ୍ଷେତ୍ର ଯୁଦ୍ଧକୁ ଅନାର୍ଯ୍ୟ ବା ଶବର ବୀରମାନଙ୍କୁ ବରଣ କରି ନଥିଲେ । ଏହା ଯେ ଆର୍ଯ୍ୟମାନଙ୍କର ବର୍ଣ୍ଣବୈଷମ୍ୟ ମନୋଭାବର ପ୍ରମାଣ ଏଥିରେ ସନ୍ଦେହ ନାହିଁ ।

ଦ୍ରୋଣ ଗୁରୁ ହସ୍ତିନାରେ କୁରୁକୁଳଙ୍କୁ ଧନୁର୍ବେଦ ଶିକ୍ଷା ଦେଉଥିବା ସମୟରେ ଏକଲବ୍ୟ ନାମକ ଶବର ଯୁବକ ଯୁଦ୍ଧ ବିଦ୍ୟା ଶିକ୍ଷା କରିବା ପାଇଁ ଗୁରୁ ଦ୍ରୋଣଙ୍କ

ଆଖଡ଼ା ଶାଳରେ ପଢ଼ୁଥନ୍ତେ, ଆର୍ଯ୍ୟ ପୁତ୍ର ସହିତ ଅନାର୍ଯ୍ୟ ପୁତ୍ରଙ୍କ ସମ ଆସନରେ ବସି ଶିକ୍ଷାର୍ଜ୍ଜନ କରିପାରିବ ନାହିଁ ବୋଲି ତାହାକୁ ଫେରାଇ ଦିଆଗଲା । ଏଥିରୁ ଜଣାଯାଏ ଯେ ତତ୍କାଳୀନ ସମାଜରେ ଜାତିଭେଦ ଏପରି ପ୍ରବଳ ଥିଲା ଯଦ୍ୱାରା ଶିକ୍ଷା କ୍ଷେତ୍ରରେ ମଧ୍ୟ ବର୍ଣ୍ଣବୈଷମ୍ୟ ନୀତି ଅନୁସୃତ ହେଉଥିଲା । ମହାଭାରତ ସମାଜରେ ଅନାର୍ଯ୍ୟ ପ୍ରତି ଆର୍ଯ୍ୟର ଏଭଳି ଅକଥନୀୟ ଅତ୍ୟାଚାରରେ ଶବର ଜାତି ନିଜର ସହନ ଶୀଳତା ଗୁଣର ବଶବର୍ତ୍ତୀ ନ ହୋଇ ଯେବେ ଆର୍ଯ୍ୟର ଏହି ଅନ୍ୟାୟର ପ୍ରତିଶୋଧ ନେବାପାଇଁ ଅସ୍ତ୍ର ଧାରଣ କରିଥାନ୍ତା ତେବେ ଆଜି ହୁଏତ ଭାରତର ଇତିହାସ ବଦଳି ଯାଇଥାନ୍ତା ।

କୁରୁ ସମ୍ରାଟ ଦୁର୍ଯ୍ୟୋଧନ ନିଜର ଭ୍ରାତୃବର୍ଗଙ୍କ ସହିତ ମୃଗୟା କରୁଥିବା ସମୟରେ ମାନ୍ତିକ୍ୟ ପର୍ବତର ପାଦଦେଶରେ ଏକ ପାଣି ଘାଟଠାରେ ଜରା ଶବରର ସ୍ତ୍ରୀ ଶ୍ରୀୟାର ରୂପ ଯୌବନ ସମ୍ଭାରରେ ପ୍ରଲୁବ୍ଧ ହୋଇଥିଲେ । ଯେଉଁ ସମୟରେ ଭାରତ ସମ୍ରାଟ ଲମ୍ପଟ, ଠିକ୍ ସେହି ସମୟରେ ଅନାର୍ଯ୍ୟ ଶବର ରାଜା କରାତସେନ, ବିଶ୍ୱସୁନ୍ଦରୀ ଦ୍ରୁପଦ ରାଜାଙ୍କ ପତ୍ନୀ ପଦ୍ମାବତୀଙ୍କୁ ଅଭୟ ପ୍ରଦାନ କରି ମାତୃଜାତିକୁ ସମ୍ମାନିତ କରିଛନ୍ତି । ଏହି ସବୁ ବାଖ୍ୟାରୁ ପାଠକେ ଆର୍ଯ୍ୟ ଅନାର୍ଯ୍ୟର ପ୍ରକୃତ ଅର୍ଥ ଖୋଜି ବାହାର କରିବା ଉଚିତ । ଶାବରୀ ସଂସ୍କୃତିରେ ମାତୃଜାତି ପ୍ରତି ଦୟା ଓ ଭଦ୍ର ବ୍ୟବହାର ପ୍ରଦର୍ଶନ କରିବା ଯେ, ଅପରିହାର୍ଯ୍ୟ ବିଧି ବିଧାନ ଥିଲା ଏକଥା କହିବା ବାହୁଲ୍ୟ ମାତ୍ର । ଶବର ଜାତିର ଏହି ମହୀୟସୀ ଗୁଣ ପାଖରେ ଅହଂକାରୀ ସଭ୍ୟ ମନୁଷ୍ୟର ଯେ ଶିରୋନତ ହୋଇଯାଏ ଏଥିରେ ସନ୍ଦେହ ନାହିଁ । ଏହିପରି ସଦ୍‌ଗୁଣ ସଂପନ୍ନ ଶବର ଜାତିକୁ ଅନାର୍ଯ୍ୟ, ଅସଭ୍ୟ, ବର୍ବର ବୋଲି କହିବା ପଛରେ କି ଯଥାର୍ଥତା ନିହିତ ତାହାହିଁ ଚିନ୍ତାର ବିଷୟ ଅଟେ ।

ତୃତୀୟ ପାଣ୍ଡବ ଅର୍ଜ୍ଜୁନ ବନବାସ କରୁଥିବା ସମୟରେ ମହ୍ଲାର ଦେଶର ଶବର ରାଜା ଚିତ୍ରା କର କନ୍ୟାକୁ ବିବାହ କରିଥିଲେ । ଏପରିକି ଅଜଗର ଶବର କନ୍ୟା ମୃଗାକ୍ଷୀଙ୍କୁ ଯଜାତି ବିବାହ କରିଥିଲେ । ଏଥିରୁ ଜଣାଯାଏ ଯେ ପୁରାଣ ଯୁଗରେ କ୍ଷତ୍ରିୟମାନେ ଶବର ରାଜାଙ୍କୁ କ୍ଷତ୍ରିୟୋଚିତ ସମ୍ମାନ ପ୍ରଦର୍ଶନ କରି ସେମାନଙ୍କ ସହିତ ସାମାଜିକ ବନ୍ଧନ ସ୍ଥାପନ କରୁଥିଲେ । ତେଣୁ ପୌରାଣିକ ବର୍ଣ୍ଣନାରେ ଶବର ଓ ଆର୍ଯ୍ୟ ମାନଙ୍କ ମଧ୍ୟରେ ସାମାଜିକ ବନ୍ଧନ, ସଭ୍ୟତା ଓ ଧର୍ମ ମଧ୍ୟରେ ଘନିଷ୍ଠ ସମ୍ପର୍କର ଉଲ୍ଲେଖ ଅଛି ।

ପୁରାଣ ଯୁଗକୁ ଛାଡ଼ି ଦେଲେ ଇତିହାସ ଯୁଗରେ ଯେ ଓଡ଼ିଶା ଶବର ଅଧ୍ୟୁଷିତ ରାଜ୍ୟ ଥିଲା ଏଥିରେ ସନ୍ଦେହ ନାହିଁ । କଳିଙ୍ଗର ଶବରମାନେ ବିଶ୍ୱାମିତ୍ରଙ୍କର ବଂଶଧର ବୋଲି ଦାବି କରନ୍ତି । ଐତରେୟ ବ୍ରାହ୍ମଣରେ ଶବରମାନେ ବିଶ୍ୱାମିତ୍ରଙ୍କ ବଂଶଧର ଓ ବଶିଷ୍ଠ ଗୋତ୍ର ବୋଲି ଉଲ୍ଲେଖ ଅଛି । ଶ୍ରୀ ଜଗନ୍ନାଥଙ୍କ ବିଶିଷ୍ଟ ସେବକ ସୋଇ ମହାପାତ୍ରଙ୍କୁ ବୈଶ୍ୱାମିତ୍ରୀ ବୋଲି କୁହାଯାଏ । ଶ୍ରୀ ଜଗନ୍ନାଥ ଶବର ମନ୍ତ୍ରରେ ମଧ୍ୟ ପୂଜିତ ହୁଅନ୍ତି । ଯଣାଯାଏ ଯେ ମହାଭାରତ ଯୁଦ୍ଧ ରେ ପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠା ଅର୍ଜ୍ଜନ କଲା । ଶବର ରାଜା ବିଶ୍ୱାବସୁ ଫାଲ୍‌ଗୁନ ଶୁକ୍ଳ-ଦ୍ୱାଦଶୀ ତିଥିରେ ତାଙ୍କୁ ଜଳରୁ ଉଦ୍ଧାର କରି ନୀଳକନ୍ଦର ପର୍ବତରେ ପ୍ରତିଷ୍ଠା କରି ଜଗନ୍ନାଥ ରୂପେ ଆରାଧନା କଲେ ।

ଏହି ଶବର ବଂଶଧରମାନେ ବର୍ତ୍ତମାନ ସୁଦ୍ଧା ଶ୍ରୀ ଜଗନ୍ନାଥଙ୍କ ଉପାସକ ଭାବରେ ରହି ଅଛନ୍ତି । ଦକ୍ଷିଣ କୋଶଳର ରାଜା ଇନ୍ଦ୍ରବଳ ବା ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ମନ୍ଦିର ଓ ବିଗ୍ରହର ପ୍ରତିଷ୍ଠାତା ଅଟନ୍ତି । ଶ୍ରୀ ଜଗନ୍ନାଥ ବିଗ୍ରହ ଓ ଶ୍ରୀମନ୍ଦିର ସ୍ଥାପୟିତା ହୋଇଛନ୍ତି ପୁରାଣ ଓ କିମ୍ବଦନ୍ତୀ କଥିତ ରାଜା ଇନ୍ଦ୍ରଦ୍ୟୁମ୍ନ । ସେ ଶବର ରାଜା ବିଶ୍ୱାବସୁଙ୍କ ପୂଜିତ ବିଗ୍ରହକୁ ବଳାତ୍କାରେ ଛଡାଇ ନେଇଥିଲେ ।

ଏହା ନିଃସନ୍ଦେହରେ କୁହାଯାଇ ପାରେ ଯେ, ହିନ୍ଦୁ ଧର୍ମ ଜଗତରେ ଶ୍ରୀଜଗନ୍ନାଥଙ୍କ ସ୍ଥାନ ଅଦ୍ୱିତୀୟ ଓ ସର୍ବଶ୍ରେଷ୍ଠ । କ୍ଷେତ୍ରରେ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ପୃଥିବୀରେ ଅଦ୍ୱିତୀୟ । ହିନ୍ଦୁମାନେ ବିଶ୍ୱାସ କରନ୍ତି ଯେ ଦ୍ୱାପର ଯୁଗର ଦ୍ୱାରକାଧିପତି ନନ୍ଦସୁତ ଭଗବାନ ଶ୍ରୀକୃଷ୍ଣ, ବଳରାମ ଓ ସୁଭଦ୍ରା କଳିଯୁଗରେ ଶ୍ରୀକ୍ଷେତ୍ର ପୁରୀରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ରୂପରେ ପୂଜିତ ହୋଇଛନ୍ତି । ସୁଦର୍ଶନ ଚକ୍ର ସୁଦର୍ଶନ ମୂର୍ତ୍ତି ରୂପେ ରତ୍ନ ସିଂହାସନରେ ପୂଜିତ ହୋଇ ଅଛନ୍ତି । ଲୋକେ ବିଶ୍ୱାସ କରନ୍ତି ଯେ ଜରାଶବରର ଶରାଘାତରେ ପ୍ରାଣ ହରାଇବା ପରେ ପାଣ୍ଡବମାନେ ତାଙ୍କର ମୃତ ଶରୀରକୁ ଶ୍ରୀକ୍ଷେତ୍ରକୁ ଆଣି ସ୍ୱର୍ଗଦ୍ୱାରର ଅପୋଡା ସ୍ଥାନରେ ଦାହ କରିଥିଲେ । ଶରୀରର ଅପୋଡା ଅଂଶକୁ ଶୂନ୍ୟ ନାଦ ଶୁଣି ସମୁଦ୍ରରେ ଭସାଇ ଦେଲେ । ଏହି ବ୍ରହ୍ମ ପଦାର୍ଥ ଇନ୍ଦ୍ରନୀଳମଣି ବୋଲି ଭୀମଦେବ ପ୍ରମାଣ କରି ଅଛନ୍ତି ।

ଋକ୍‌ବେଦରେ ମଧ୍ୟ ଶ୍ରୀଜଗନ୍ନାଥ ସମୁଦ୍ରରେ ଦାରୁ ରୂପରେ ଭାସମାନ ହୋଇଥିଲେ ବୋଲି ସାୟଣାଚାର୍ଯ୍ୟଙ୍କ ଭାଷ୍ୟରୁ ପ୍ରମାଣ ମିଳେ ।

ଭାଗବତ, ବ୍ରହ୍ମ ପୁରାଣ, ବାମନ ପୁରାଣ, ମତ୍ସ୍ୟ ପୁରାଣ, କୂର୍ମ ପୁରାଣ ପ୍ରଭୃତିରେ ଇନ୍ଦ୍ରଦ୍ୟୁମ୍ନ ଜଣେ ଦ୍ରାବିଡ଼ ପାଣ୍ଡ୍ୟରାଜ ବୋଲି ବର୍ଣ୍ଣିତ ହୋଇ ଅଛନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧୀ ରାଜା ଇନ୍ଦ୍ରବଳ ଅଟନ୍ତି । ସେ ସୋମବଂଶୀୟ ରାଜା ଥାଇ କୋଶଳରେ ରାଜତ୍ୱ କରୁଥିଲେ ।

ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ଦ୍ଦେଶ କ୍ରମେ ବିଦ୍ୟାପତି ବ୍ରାହ୍ମଣ ଅରଣ୍ୟ ପଥରେ ନୀଳ-ମାଧବଙ୍କର ଅନୁସନ୍ଧାନ କରି କର୍ଣ୍ଣିଙ୍ଗଠାରେ ବିଶ୍ୱାବସୁ ଶବରର କନ୍ୟା ଲଳିତାଙ୍କୁ ବିବାହ କରି ତାଙ୍କର ଠାବ କରିଥିଲେ । ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନରେ ନୀଳମାଧବଙ୍କର ନିର୍ଦ୍ଦେଶ ପାଇ ଦକ୍ଷିଣ କୋଶଳର ରାଜଧାନୀ ଶ୍ରୀପୁରରୁ ଶ୍ରୀକ୍ଷେତ୍ର ପୁରୀ ଆସି ଶ୍ରୀମନ୍ଦିର ନିର୍ମାଣ ଓ ଶ୍ରୀବିଗ୍ରହ ପ୍ରତିଷ୍ଠା କରି ନିଜ ରାଜଧାନୀ ଶ୍ରୀପୁର ନାମର ଖ୍ୟାତି ବର୍ଦ୍ଧନ ନିମନ୍ତେ ଏହି ସ୍ଥାନର ନାମ ଶ୍ରୀପୁରୀ ବା ଶ୍ରୀକ୍ଷେତ୍ର ପୁରୀ ରଖିଲେ ।

ଓଡ଼ିଶାରେ ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି ଆର୍ଯ୍ୟ ଏବଂ ଆର୍ଯ୍ୟେତରଙ୍କ ମଧ୍ୟରେ ଏକ ମିଳନ ପୀଠ ଅଟେ । ଆର୍ଯ୍ୟପୁତ୍ର ବିଦ୍ୟାପତି ଓ ଅନାର୍ଯ୍ୟ ଶବର କନ୍ୟା ଲଳିତାର ଶୁଭପରିଣୟ, ଏହି ମିଳନର ସାକ୍ଷୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ପ୍ରାଚୀନ ଭାରତର ଧର୍ମ ଏବଂ ସାମାଜିକ ଇତିହାସରେ ଶ୍ରୀ ଜଗନ୍ନାଥଙ୍କର ଏ ଦାନ ଅତୁଳନୀୟ ଅଟେ । ଶବର ଦେବତା ନୀଳମାଧବ ଶବରର ପର୍ଣ୍ଣକୁଟୀର ଛାଡ଼ି, ରାଜସିକ ଭୋଗ ଓ ଆଡମ୍ବରପୂର୍ଣ୍ଣ ଗମ୍ଭୀରା ଭିତରେ ପୂଜିତ ହେଲେ । ସାତ ପୋଖରି ନୀଳମାଧବ

ବଣର ଫଳ ମୂଳ ଖାଇ ଝରଣାର ସୁଶୀତଳ ଜଳ ପାନ କରିବାକୁ ଗୃହୁଁ ନଥିଲେ । ଆର୍ଯ୍ୟ ଅକୁଣ୍ଠିତ ଭାବରେ ସୁନ୍ଦରୀ ଆଦିବାସୀ ରମଣୀ ଗ୍ରହଣ କଲାପରେ, କ୍ରମ୍ଭା ବଳାତ୍କାରେ ଆଦିବାସୀ ଭୂମି ବୃତ୍ତି ଦଖଲ କରି ନେଲାପରେ, ଆଦିବାସୀର ଇଷ୍ଟଦେବତା ନୀଳମାଧବଙ୍କୁ ନେଇ ଆସି ଜଗନ୍ନାଥ ନାମରେ ସମ୍ପୂର୍ଣ୍ଣ ନୂତନ ଆର୍ଯ୍ୟ ଧର୍ମ କ୍ଷେତ୍ର ସଂସ୍ଥାପନ କରି ତାହାକୁ ସେମାନେ ମହାନ ମାନବ ଧର୍ମରେ ଦୀକ୍ଷିତ କରାଇଲେ । ଆଦିବାସୀର ଧର୍ମ ସଂସ୍କୃତି, ଧନ ଜୀବନ ଓ ଯୌବନ ଉପରେ ଆର୍ଯ୍ୟାଜାତିର ଏହା ଯେ ଅକୁଣ୍ଠ ଲୁଣ୍ଠନ ଏଥିରେ ସନ୍ଦେହ ନାହିଁ । କେବଳ ସେତିକି ନୁହେଁ, ଆର୍ଯ୍ୟମାନଙ୍କର ଯେଉଁ ସବୁ ମନ୍ଦିର ଶିଳ୍ପନ୍ମତ କରି ଅଦ୍ୟାବଧି ବିଦ୍ୟମାନ ରହି ଶିଳ୍ପସ୍ଥାପତ୍ୟରେ ଜଗତକୁ ଚମତ୍କୃତ କରୁଅଛି, ସେ ସବୁ ନିର୍ମାଣ କ୍ଷେତ୍ରରେ ଆଦିବାସୀ ମାନଙ୍କର ଅବଦାନ ଅତୁଳନୀୟ ।

ଓଡ଼ିଶାର ଶବରମାନେ ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପାଇଁ କାୟିକ ପରିଶ୍ରମ କରି ବହୁ ଦୂରରୁ ବିରାଟ ପଥର ଖଣ୍ଡମାନ ବୋହି ଆଣିଥିଲେ । ତ୍ରେତା ଯୁଗରେ ବନ୍ୟପଶୁ-ବାନର, ଭଲ୍ଲୁକମାନେ ପର୍ବତରୁ ପଥର ବୋହିନେଇ ସମୁଦ୍ର ମଧ୍ୟରେ ଏକ ଭାସମାନ ସେତୁବନ୍ଧ ନିର୍ମାଣ କଲାପରି, ନରବାନର ଶବରମାନେ ଶ୍ରୀମନ୍ଦିର ନିର୍ମାଣ ପାଇଁ ପଥର ଖଣ୍ଡମାନ ବୋହି ଆଣିଥିବା ଅସମ୍ଭବ ନୁହେଁ । ଆର୍ଯ୍ୟ ଜାତିର ଆତ୍ମ ପ୍ରତିଷ୍ଠାରେ ଆଦିବାସୀ ମାନଙ୍କର ଅକୁଣ୍ଠ ଧର୍ମ, ଧନ ଜୀବନ ଓ ଶ୍ରମଦାନ ବାସ୍ତବରେ ଜଗତର ହିତ ପାଇଁ ଦଧିଚି ଋଷିଙ୍କର ଅକାତର ଅସ୍ଥି ଦାନଠାରୁ କେଉଁ ଗୁଣରେ ନ୍ୟୁନ ନୁହେଁ ।

ଆଦିମ ଅଧିବାସୀ ଶବର ମାନଙ୍କର ଦେବଦେବୀ ପୂଜାର ସବିଶେଷ ଅନୁଧ୍ୟାନ କଲେ ଜଣାଯାଏ ଯେ, ଜଗନ୍ନାଥ ନାନା ରୂପରେ କୌଣସି କୌଣସି ଆଦିବାସୀ ସଂପ୍ରଦାୟରେ ପୂଜିତ ହେଉ ଅଛନ୍ତି । ଶବରମାନେ ପୂଜା କରୁଥିବା ଜଙ୍ଗଲେ ମହାପ୍ରଭୁ ଶ୍ରୀଯଗନ୍ନାଥଙ୍କର ଆଦିବିଗ୍ରହ ପରି ମନେ ହୁଏ । ଗଞ୍ଜାମ ଓ କୋରାପୁଟର ଶବରମାନେ ଯେଉଁ "କଂଭୁଙ୍ଗ" ଦେବତାଙ୍କର ପୂଜା କରନ୍ତି ତାଙ୍କର ବିଗ୍ରହ କାଠରେ ନିର୍ମିତ ହୋଇ ବିଭିନ୍ନ ରଙ୍ଗରେ ଚିତ୍ରିତ ହୋଇଥାଏ । କଂଭୁଙ୍ଗ ଅର୍ଥ ଯଗତର ନାଥ । ଏଥିରୁ ପ୍ରମାଣିତ ହେଉଅଛି ଯେ, ଶ୍ରୀଯଗନ୍ନାଥ ପ୍ରକୃତରେ ଆଦିମ ଅଧିବାସୀମାନଙ୍କର ଆରାଧ୍ୟ ଦେବତା ଅଟନ୍ତି । ଆର୍ଯ୍ୟ ଓ ଦ୍ରାବିଡମାନେ ପରବର୍ତ୍ତୀ ସମୟରେ ଆଦିମ ଅଧିବାସୀଙ୍କର ଶାବରୀ ଧର୍ମରେ ଦୀକ୍ଷିତ ହୋଇ ଆଦିବାସୀ ଦେବତା ଯଗନ୍ନାଥଙ୍କୁ ସେମାନଙ୍କର ପରମ ଆରାଧ୍ୟ ଦେବତା ରୂପେ ଆରାଧନା କଲେ । ଏହାର ନିଦର୍ଶନ ସ୍ୱରୂପ ଶବର କନ୍ୟା ଲଳିତାରପୁତ୍ର ଦଇତାପତି ନାମରେ ଖ୍ୟାତ ହୋଇ ଶ୍ରୀମନ୍ଦିରର ଭୋଗ ରନ୍ଧନ ଦାୟିତ୍ୱରେ ନିଯୁକ୍ତ ହୋଇ ଆସି ଅଛନ୍ତି ଓ ବ୍ରାହ୍ମଣମାନେ ଦିଅଁଙ୍କର ସେବାପୂଜା କାର୍ଯ୍ୟ ସମାପନା କରି ଅଛନ୍ତି । ଏଣୁ ଶ୍ରୀଯଗନ୍ନାଥ ଶବର ପୂଜିତ ନୀଳ-ମାଧବଙ୍କର ହିନ୍ଦୁ ସଂସ୍କରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

"ହରିବଂଶୀୟ ବିରୁଦାବଳୀ ଲେଖନ" ପୋଥିରେ ଦାରୁବ୍ରହ୍ମ ପ୍ରତିଷ୍ଠା ବିଷୟରେ ରଚିତ ହୋଇଅଛି ଯେ, ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଶୂନ୍ୟବାଣୀ ଆଜ୍ଞାମତେ ବିଶ୍ୱ ଶବର ମଥାରେ ପାଟ ଚମ୍ପୁଲା ଥୋଇ ତହିଁ ପରେ ଦାରୁବ୍ରହ୍ମ ମୂର୍ତ୍ତି ର ନିମ୍ନମନ୍ତ୍ର ଉଚ୍ଚାରଣ କରି

ବାକ୍ସି ମୁହାଣ ଠାରୁ ବଡ ବେଢ଼ାକର ଜଗମୋହନ ଠାକୁ ନେଇ ଆସିଥିଲେ ।

ମନ୍ତ୍ର — ଓଁ ଶବର ଶୁଭ କାରଣ
ଶ୍ରୀ ଶ୍ରସ ପ୍ରିୟ କାରକ
ଦୈୖୈଶ ଦେବୀ ପୂଜସ୍ୟ
ବ୍ରହ୍ମ ଦାନା ଧ୍ୟକ୍ଷ ।"

ଏଥିରୁ ଅନୁମିତ ହେଉଛି ଯେ ଆର୍ଯ୍ୟ ଓ ଦ୍ରାବିଡ ମାନଙ୍କ ଠାରୁ ଶବର ମାନେ ଶ୍ରୀ ଜଗନ୍ନାଥଙ୍କର ନିକଟତମ ଓ ଆତ୍ମିୟ ଅଟନ୍ତି । ତେଣୁ ଶ୍ରୀ ଜଗନ୍ନାଥ ଧର୍ମ ସଂସ୍କୃତି ଶବରୀ ସଂସ୍କୃତି ନାମରେ ଖ୍ୟାତ ଅଟେ ।

ବେଦ ପୁରାଣ ଶାସ୍ତ୍ରରେ ଶବର ଜାତି ଆଦିମ ଅଧିବାସୀ ହୋଇଥିବାରୁ ଏବଂ ଏମାନେ ବୈଦିକଣୀ ସଭ୍ୟତାର ଅନ୍ତର୍ଗତ ହୋଇଥିବାରୁ ଏହି ସଭ୍ୟତା ଓ ଧର୍ମ ଯେ ଆର୍ଯ୍ୟ ଦ୍ରାବିଡ଼ ସଭ୍ୟତା ଓ ଧର୍ମଠାରୁ ପ୍ରାଚୀନତମ ଏଥିରେ ସନ୍ଦେହ ନାହିଁ । ପୌରାଣୀକ ମତରେ ସତ୍ୟ ଯୁଗର ଯାଜ୍ଞିକ ନୃପତି ଶ୍ୱେତ ରାଜା କଳି ଯୁଗରେ ରାଜା ଇନ୍ଦ୍ରବଳ ବା ଇନ୍ଦ୍ରଦ୍ୟୁମ୍ନ ନାମରେ ଜନ୍ମହୋଇ କୋଶଳ ଦେଶର ନୃପତି ଥାଇ ଶବର ମାନଙ୍କ ସହାୟତାରେ ଶ୍ରୀ ମନ୍ଦିର ନିର୍ମାଣ ଓ ଶ୍ରୀ ଦାରୁବିଗ୍ରହ ପ୍ରତିଷ୍ଠା କରିଥିଲେ ।

ଋକ୍ ବେଦରେ ଶ୍ରୀ ଜଗନ୍ନାଥଙ୍କର ଆବିର୍ଭାବ ବିଷୟ ବର୍ଣ୍ଣିତ ହୋଇଥିବାରୁ ଅନୁମାନ କରାଯାଏ ଯେ ପ୍ରାକ୍ ଆର୍ଯ୍ୟ ଯୁଗରେ ଜଗନ୍ନାଥ ଏ ଦେଶରେ ପୂଜିତ ହେଉଥିଲେ । ଇନ୍ଦ୍ରନୀଳମଣି ମୟୀ ବ୍ରହ୍ମମୂର୍ତ୍ତି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ସ୍ଥାପିତ ହୋଇଅଛନ୍ତି ।

ରାଜା ଇନ୍ଦ୍ରଦ୍ୟୁମ୍ନ ଦ୍ରାବିଡ଼ ବଂଶଧର ଥାଇ କୋଶଳ ରାଜତ୍ୱ କରୁଥିଲେ । ଏହି ସମୟରେ ଶବରମାନେ ଶିବଭକ୍ତ ଥାଇ ଶ୍ରୀଜଗନ୍ନାଥଙ୍କୁ ଭୈରବ ଭାବରେ ପୂଜା କରୁଥିଲେ । କଥିତଅଛି ନୀଳମାଧବ ବ୍ୟାଘ୍ର ଗୁମ୍ଫା ଭିତରେ ରହି ବିଶ୍ୱାବସୁ ଶବର ଦ୍ୱାରା ପୂଜିତ ହେଉଥିଲେ ।

ଶବରମାନେ ବ୍ୟାଧ ରୂପେ କଥିତ ହେଲେହେଁ ସେମାନେ ଧନୁର୍ବେଦରେ ଅଧିକାରୀ ହୋଇଥିବାରୁ କ୍ଷତ୍ରିୟ ଭାବାପନ୍ନ ଅଟନ୍ତି । ତେଣୁ ଶବର ନୃପତି ବିଶ୍ୱାବସୁ ଶ୍ରୀକ୍ଷେତ୍ର ପୂର୍ବରେ ଦାରୁବ୍ରହ୍ମ ପ୍ରତିଷ୍ଠା ସମୟରେ ବ୍ରାହ୍ମଣ ଓ କ୍ଷତ୍ରିୟ ମାନଙ୍କ ପରି ସମ ଆସନର ଅଧିକାରୀ ହୋଇଅଛି । ମାନବ ସମାଜର ସୁରକ୍ଷା ଓ ବିକାଶ ଦିଗରେ ବେଦ ପ୍ରତିଷ୍ଠା ପାଇଁ ବ୍ରାହ୍ମଣ ଧର୍ମର ଗୁରୁତ୍ୱ ଯେପରି ଅପରିହାର୍ଯ୍ୟ ରାଜ୍ୟ ରକ୍ଷା କ୍ଷେତ୍ରରେ ଧନୁର୍ବେଦୀ ଶବର ମାନଙ୍କର ଦାନ୍ତିତ୍ୱ ସେହିପରି ଅତୁଳନୀୟ । ବ୍ରାହ୍ମଣ ଓ ଶବର ଶକ୍ତି ଦ୍ୱୟ ଧର୍ମ ସଂସ୍ଥାପନ ଓ ଦେଶରକ୍ଷା ପାଇଁ ରାଜଶକ୍ତିର ଦୁଇଗୋଟି ବାହୁ ସଦୃଶ । ଏଣୁ ଶ୍ରୀମନ୍ଦିରରେ ବ୍ରାହ୍ମଣ ପୂଜକ ଓ ଶବର ପାଚକ ମଧ୍ୟରେ ନିବିଡ଼ ସଂପର୍କ ସ୍ଥାପନ କରା ଯାଇଅଛି । ଏଠାରେ ଶବର

ଖଣ୍ଡିତ ଯା'ରୂପେ ପୂର୍ଣ୍ଣଚନ୍ଦ୍ର ପ୍ରଭା
ମହାଦେବୀ ଦେବ ଯଜନ ସମ୍ଭବା ।
ବସନ୍ତ ପାର୍ଶ୍ୱରେ ବେଣୁକା ସୁନ୍ଦରୀ
ମୋର ସ୍ତୋତ୍ର ଶୋଧେ ଯଥା ବନ୍ଦେଶ୍ୱରୀ ।
ଗୋନାସିକା-ଗିରି ପୂତ ଝରୁ ଜାତ
ଯାର ସ୍ରୋତ, ମହା ବରାହ ଆଖ୍ୟାତ ।
ମହାବିଷ୍ଣୁ ସ୍ନାନେ ପୂଣ୍ୟ ଯାର ନୀର,
ଚଣ୍ଡୀ ଜଙ୍ଗଲେ ଆଢ୍ୟ ନଈସର ।
ସେହି ବୈତରଣୀ ଅଗ୍ରତେ ଭୂମ୍ବର,
ବନ୍ଦ ବତ୍ସ, ଭାବେ ଦେବୀଙ୍କ ପୟର ।
ବାହାରିଲେ ବ୍ରହ୍ମକୁଣ୍ଡୁଁ ବିରଜା ସୁନ୍ଦରୀ
ଦେବଯଜ୍ଞେ ପୂତନୀର ବୈତରଣୀ ତୀରେ
ଆଜ୍ୟପାତ୍ର ନିଜଦେବୀ ବୀଣାହୋତ୍ର କରେ ।
ଝଞ୍ଜାର ବେଗେ ଗଲେ ଭେଦଇ ପଲକେ
ସେ ଅନକୁ ଉସ୍ତନେଇ ସେ ଆଜ୍ୟେ ମିଶାଇ
ରଚି ଦିବ୍ୟାଞ୍ଜନ ଚକ୍ଷୁଁ ଦେବ ହବ୍ୟବାହ

× × ×

ଏହି ସେ ଅଞ୍ଜନ, ଯାହା ଏ ଦ୍ୱୈପାୟନ ଋଷି
ଦେଇଥିଲେ ସଞ୍ଜୟଙ୍କୁ ଏ ଅଞ୍ଜନ ଯୋଗେ
ଦୂର କୁରୁକ୍ଷେତ୍ର ରଣ ଦେଖି ସ୍ୱ ନୟନେ
କହିଥିଲେ ବାର୍ତ୍ତା ଭୂମ୍ନ ଜ୍ୟେଷ୍ଠ ତାତ ପଦେ ।

ବିରଜା ଦେବୀ ଯଜ୍ଞାନଳରୁ ବାହାରିଥିବାର କଥା ବିରଜା ମହାତ୍ମ୍ୟରେ ବର୍ଣ୍ଣିତ ଅଛି । ଏଥିରୁ ଅନୁମିତ ହୁଏ ଯେ ପ୍ରାକ ଆର୍ଯ୍ୟ କାଳରୁ ବୈତରଣୀ ସଭ୍ୟତାର ପ୍ରାଣକେନ୍ଦ୍ର ବିରଜା ମଣ୍ଡଳ ପ୍ରାଚୀନ ପ୍ରସିଦ୍ଧି ଲାଭ କରି ସିନ୍ଧୁ-ଗାଙ୍ଗେୟ ସଭ୍ୟତା ଠାରୁ ଉନ୍ନତତର ଥିଲା । ଏହି ମହାନ କ୍ଷେତ୍ରର ପ୍ରସିଦ୍ଧି ପ୍ରତିଷ୍ଠା କରିବା ଆମ୍ଭମାନଙ୍କର କର୍ତ୍ତବ୍ୟ ।

—0—

# ତୃତୀୟ ପରିଚ୍ଛେଦ

## କୀର୍ତ୍ତିରାଜି ଯଜ୍ଞଭୂମି

ପ୍ରାଚୀନ କଳିଙ୍ଗ ରାଜ୍ୟ ଉତ୍ତରରେ ଗଙ୍ଗା ମୁହାଣଠାରୁ ଦକ୍ଷିଣରେ ଗୋଦାବରୀ ମୁହାଣ ଯାଏ ସମୁଦ୍ର ଉପକୂଳରେ ବିସ୍ତୃତ ଥିଲା ଓ ତାହାର ପୃଷ୍ଠ ଦେଶରେ ଥିଲା ବନବନ ପର୍ବତ ସମାକୀର୍ଣ୍ଣ ଭୂଖଣ୍ଡ ମାଳଭୂମି । ମାତ୍ର କେତେକ ଐତିହାସିକ ଗଙ୍ଗାନଦୀ ପରିବର୍ତ୍ତେ ବୈତରଣୀ ନଦୀକୁ କଳିଙ୍ଗ ରାଜ୍ୟର ଉତ୍ତର ସୀମା ରୂପେ ନିର୍ଣ୍ଣୟ କରିଥାନ୍ତି । ଗଙ୍ଗା ମୁହାଣ ସମୀପରେ ଲୋମଶ ଋଷି ଯୁଧିଷ୍ଠିରଙ୍କୁ କଳିଙ୍ଗ ରାଜ୍ୟ ପ୍ରତି ଲକ୍ଷ କରି କହିଛନ୍ତି—"ଏଠାରୁ ହେଉଅଛି କଳିଙ୍ଗ ଜନତାଙ୍କ ରାଜ୍ୟ ଯେଉଁ ରାଜ୍ୟରେ ବୈତରଣୀ ନଦୀ ପ୍ରବାହିତ ।" ଲୋମଶ ଋଷି ବୈତରଣୀ ନଦୀ ତୀରବର୍ତ୍ତୀ ଭୂମିରେ ବହୁଜନମାନେ ବହୁକାଳରୁ ବାସ କରୁଥିବା ବିଷୟ ବ୍ୟକ୍ତ କରିଥିଲେ । ମାତ୍ର ବୈତରଣୀ ନଦୀକୁ କଳିଙ୍ଗ ରାଜ୍ୟର ଉତ୍ତର ସୀମା ରୂପେ ନିର୍ଣ୍ଣୟ କରିବା ଠିକ ହେବ ନାହିଁ ।

ମହାଭାରତ ବର୍ଣ୍ଣନାନୁସାରେ ବୈତରଣୀ ନଦୀ କୂଳରେ ଦକ୍ଷଙ୍କ ଯଜ୍ଞ ଭଗ୍ନ କରାଯାଇଥିଲା । ମୟୂରଭଞ୍ଜର ତାମ୍ର ଶାସନରୁ ଜଣାଯାଏ ଯେ 'ଭବଭଦ୍ରାମାଣ୍ଡ' ରାଜ୍ୟ ବୈତରଣୀ ତୀର ଦେଶରେ ଦକ୍ଷ ଅଂଗିଳ ଯଜ୍ଞ ଆରମ୍ଭ କରି ଶିବଙ୍କୁ ବରଣ ନ କରିବାରୁ ଶିବ କ୍ରୋଧ ହୋଇ ସେହି ଯଜ୍ଞ ଭଗ୍ନ କରିଥିଲେ । ସେତେବେଳେ ବୈତରଣୀ କୂଳରେ କଳିଙ୍ଗମାନେ ବାସ କରୁଥିବା କୁହାଯାଇଛି । ବୈତରଣୀ ନଦୀ ତୀରରେ ଅବସ୍ଥିତ କେନ୍ଦୁଝର ରାଜ୍ୟ ଯମଗର୍ତ୍ତ ମଣ୍ଡଳ ନାମରେ ଅଭିହିତ ଥିବାର ପ୍ରାଚୀନ ତାମ୍ର ଶାସନରୁ ଜଣାଯାଏ । ସେଠାରେ 'ଯମ' ସାଧନା କରାଯାଉଥିଲା । ଏହି ସାଧନାରେ ସାଧକର ଶରୀର କାଟି ବଳିଦାନ କରାଯାଉଥିବାର ଅନୁମିତ ହୁଏ । ଯାହାର ଜଳ ବହୁ ପ୍ରକାର ରକ୍ତମୟ ହୋଇଥିଲା । ସେହି ବୈତରଣୀ ପାର ହୋଇ ତପ୍ତ ବାଲୁକାରେ ତପସ୍ବୀମାନେ ଛାତି ତାତି ଗତି କରୁଥିବାର ଗରୁଡ଼ ଦେଖିଥିବା କଥା ଗରୁଡ଼ ପୁରାଣରେ ବର୍ଣ୍ଣିତ ହୋଇଅଛି ।

ସୃଷ୍ଟିର ପୂର୍ବରୁ ଅନ୍ଧକାର ଥିଲା ଓ କେବଳ ବ୍ରହ୍ମରୁ ସୃଷ୍ଟି ଜାତ ବୋଲି ଦୀର୍ଘତମା ଋଷି ନିଜ ସୂକ୍ତରେ ରଚନା କରିବାରୁ ବୈତରଣୀ ନଦୀ କୂଳରେ ନର ନାରୀଙ୍କ ମଧ୍ୟରେ ଗଙ୍ଗା ବା ଗାନ୍ଧର୍ବ ବିବାହ ପ୍ରଚଳିତ ହୋଇଥିଲା । ତେଣୁ ପ୍ରମାଣିତ ଭାବରେ କୁହାଯାଇଅଛି ଯେ ଦୀର୍ଘତମା ଋଷି ଯମଗର୍ତ୍ତ ମଣ୍ଡଳରେ ଅବସ୍ଥାନ କରି ଯମ ସାଧନା ପୂର୍ବକ ସମାଜରେ ସର୍ବ ପ୍ରଥମ ଗାନ୍ଧର୍ବ ବିବାହ ବ୍ୟବସ୍ଥା ପ୍ରଚଳନ କରାଇ ଥିଲେ । ପୌରାଣିକ ଯୁଗରେ ବୈତରଣୀ ଅବବାହିକା ପ୍ରସିଦ୍ଧି ଲାଭ କରି ଯମଗର୍ତ୍ତ ମଣ୍ଡଳ ନାମରେ ଖ୍ୟାତ ଥିଲା ।

# ବରାହେଶ୍ୱର

ଓଡ଼ିଶାରେ ସପ୍ତମ ଶତାବ୍ଦୀରେ ଭୌମ ବଂଶ ରାଜ୍ୟ ଶାସନ କରୁଥିଲେ । ଆହୋମ (ଆସାମ) ସହିତ ଏହି ରାଜବଂଶର ବୈବାହିକ ଓ ସାଂସ୍କୃତିକ ସମ୍ପର୍କ ରହିଥିଲା । ଆହୋମମାନଙ୍କ ପୂର୍ବରୁ ଆସାମର ନାମ ଥିଲା କାମରୂପ । ଭୌମମାନଙ୍କ ସମସମୟିକ କାଳରେ ଆହୋମରେ ସାମନ୍ତ ତନ୍ତ୍ର ଶାସନ-ନୀତି ପ୍ରଚଳିତ ଥିଲା । କେତେ ଜଣ ସାମନ୍ତଙ୍କ ପରାମର୍ଶରେ ରାଜା ଶାସନ ପରିଚାଳନା କରୁଥିଲେ । ସେହି ସମୟରେ ଓଡ଼ିଶାରେ ଭୌମ ଶାସନ କାଳରେ ସାମନ୍ତ ତନ୍ତ୍ର ଶାସନ ନୀତି ମଧ୍ୟ ପ୍ରବର୍ତ୍ତିତ ହୋଇଥିଲା ।

ଭୌମ ରାଜା "ଶାନ୍ତକର"ଙ୍କ ମୃତ୍ୟୁ ପରେ ଭୌମ କୁଳରେ ପୁତ୍ର ନ ଥିବାରୁ "ତ୍ରିଭୁବନ ଦେବୀ" ଭୌମ ସିଂହାସନରେ ବସିଲେ । ଏହି ବଂଶର ରାଣୀ ବକୁଳ ମହାଦେବୀ ମଧ୍ୟ ଭୌମ ସିଂହାସନରେ ବସିଥିଲେ । ସେ ଭଞ୍ଜ ରାଜ କନ୍ୟା ଥିଲେ । ଏହି ସମୟରେ ଭୌମ ରାଜ୍ୟ ଦକ୍ଷିଣରେ ଶୈଳୋଦ୍ଭବ ଶାସିତ କଙ୍ଗୋଦ ମଣ୍ଡଳ ଯାଏ ପ୍ରସାରିତ ହୋଇ "ଗୁହେଶ୍ୱର ପାଟକ" ବା ଆଧୁନିକ ଯାଜପୁର । ଏହାର ଗୌରବମୟ ରାଜଧାନୀ ଥିଲା । ଏଠାରେ ବରାହେଶ୍ୱର ସ୍ୱୟମ୍ଭୁ ଅଟନ୍ତି । କେଶରୀ ବଂଶ ଶାସନ କାଳରେ ଏଠାରେ ଦଶାଶ୍ୱମେଧ ଘାଟ ପ୍ରତିଷ୍ଠା, ସପ୍ତମାତୃକା ମୂର୍ତ୍ତି ସ୍ଥାପନ, ବରୋଜା ମନ୍ଦିର ନିର୍ମାଣ ଓ ଶୁଭସ୍ତମ୍ଭ କୀର୍ତ୍ତିରାଜି ଅଦ୍ୟାବଧି ରହିଅଛି ।

ଭାରତର ଅନ୍ୟତମ ପ୍ରସିଦ୍ଧ ତୀର୍ଥକ୍ଷେତ୍ର ଓ ପ୍ରାଚୀନ ଓଡ଼ିଶାର ରାଜଧାନୀ ଏହି ଯାଜପୁର ଆଜ ଯେପରି ଅବହେଳିତ ହୋଇ ପଡ଼ି ରହିଛି ତାହା ଦେଖିଲେ ଏ ଜାତିର ଯେ ମୁଣ୍ଡବୁଆ ଭୁଷୁଡ଼ି ଯାଇଛି ଏଥିରେ ସନ୍ଦେହ ରହେନାହିଁ । ଏହି ଐତିହ୍ୟପୂର୍ଣ୍ଣ ସ୍ଥାନର ସାମଗ୍ରିକ ଉନ୍ନତି ଆମର ଧ୍ୟେୟ ହେବା ବିଧେୟ ଅଟେ । ଏହା ଭୌମ ଓ କେଶରୀ ବଂଶର କୀର୍ତ୍ତି ସ୍ତମ୍ଭର ମିଳନ ପୀଠ, ଶୈବଶାକ୍ତ କ୍ଷେତ୍ରର ପେଣ୍ଠ ଭୂମି ।

# ଆଖଣ୍ଡଳେଶ୍ୱର

ଅନନ୍ତ କୋଣଙ୍କ କୋଳରେ ଧାଇଁ ବୈତରଣୀ ନଦୀ ସାଗର ସଙ୍ଗମ କରିଅଛି । ଆଖଣ୍ଡଳେଶ୍ୱର ବା ଆଖଣ୍ଡଳମଣି ଶେଷ ପାଦ ଲିଙ୍ଗ ଅଟନ୍ତି । ସର୍ବ ପ୍ରଥମେ ଏହି ଲିଙ୍ଗକୁ ଆଖଣ୍ଡଳ ବା ଇନ୍ଦ୍ର ପୂଜା କରି ରାଜ୍ୟ ପ୍ରାପ୍ତ ହୋଇଥିବାରୁ ଲିଙ୍ଗଙ୍କର ନାମ ଆଖଣ୍ଡଳେଶ୍ୱର ହୋଇ ଅଛି । ବାଲେଶ୍ୱର ଜିଲ୍ଲାର ଭୂଇଁପୁର ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଆରଡ଼ି ଗ୍ରାମରେ ଏହି ମନ୍ଦିର ବିଦ୍ୟମାନ । ଏଠାରେ ସର୍ପ ଦଂଶନ କଲେ ଲୋକେ ଆଖଣ୍ଡଳମଣିଙ୍କ ପାଦୁକା ପାନ କରାଇ ରୋଗୀକୁ ଭଲ କରିଥାନ୍ତି । ଶୁଣାଯାଏ ଆଖଲମଣିଙ୍କ ଶଙ୍ଖ କୁଣ୍ଡରେ ସଞ୍ଚିତ ଥିବା ପାଦୁକା କଂସା ପାତ୍ରରେ ପାନ କରାଇଲେ ବିଷ ହରଣ ହୋଇଥାଏ । ଏହି ଲିଙ୍ଗ ପରଶମଣି ଅଟେ । ଆଖଣ୍ଡଳ ଏହି ପ୍ରକାର ମଣି ନିଜର ରାଜମୁକୁଟରେ ଧାରଣ କରିଥାନ୍ତି ।

ପ୍ରାୟ ୨୫୦ ବର୍ଷ ଧରି ଆଖଣ୍ଡଳମଣି ଆଠଗଡ଼ ଗ୍ରାମରେ ପୂଜିତ ହୋଇ ଆସୁ ଅଛନ୍ତି । ବର୍ତ୍ତମାନର ମନ୍ଦିର କନକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜ ନିର୍ମାଣ କରାଇ ଥିଲେ । ଏଠାକୁ ଯିବାକୁ ମଟର ରାସ୍ତା ଓ ଜଳପଥ ରହିଅଛି । ବୈତରଣୀ ନଦୀର ଆପାଦ ମସ୍ତକ ଶିବଶକ୍ତି ପୂଜାରେ ପରିପୂର୍ଣ୍ଣ ହୋଇଥିବାରୁ ଭଞ୍ଜ ରାଜବଂଶ ଯେ "ଭବଭବାମାଣଃ" ଥିଲେ ଏହା ତାହାର ପ୍ରମାଣ ଅଟେ ।

## କୋଶଳେଶ୍ୱର

କୋଶଳେଶ୍ୱର ବା କୁଶଳେଶ୍ୱର ମହାଦେବ ପ୍ରତ୍ୟକ୍ଷ ଫଳଦାୟକ ଅଟନ୍ତି । ଆନନ୍ଦପୁର ଠାରୁ ୮ କି: ମି: ଦୂରରେ କୁଶଭଦ୍ରା ନଦୀ ଉପକଣ୍ଠରେ ଅବସ୍ଥିତ ଦେଓଗାଁ ଗ୍ରାମ । କଳକଳ ନିନାଦିନୀ ତୀବ୍ର ପ୍ରବାହମାନା-ଖରସ୍ରୋତା ଗିରି ନିର୍ଝରିଣୀ-କୁଶଭଦ୍ରା ନଦୀର ଶ୍ୟାମଳ କୃଷି କ୍ଷେତ୍ର ପରିଶୋଭିତ ଉପତ୍ୟକା- ନାଗେଶ୍ୱର, ଚମ୍ପକ, ବକୁଳ, ବରଓସ୍ତ, ଆମ୍ବ, ପଣସ, ନଡ଼ିଆ, କଇଥା, କରମଙ୍ଗା ପ୍ରଭୃତି ବୃକ୍ଷ ଶୋଭିତ ଏକ ପ୍ରାକୃତିକ ଉପବନ ମଧ୍ୟରେ କୋଶଳେଶ୍ୱରଙ୍କର ମନ୍ଦିର ବିଦ୍ୟମାନ । ପ୍ରାଚୀନ କାଳରେ ଏହି ଶିବ ଲିଙ୍ଗର ପାଦୁକା ପାନ କରି କୁଷ୍ଠ ରୋଗୀ ଭଲ ହୋଇ ଯାଉ ଥିବାର ଜନଶ୍ରୁତି ପ୍ରଚଳିତ ଅଛି ।

କୁଶଭଦ୍ରା ନଦୀ କେନ୍ଦୁଝର ଜିଲ୍ଲାର କାଳିଆହତା ଗ୍ରାମପଞ୍ଚାୟତର ମେଘାସନ ପର୍ବତରୁ ବାହାରି ପ୍ରାୟ ୮୦ କି: ମି: ପ୍ରାନ୍ତର୍ଯ୍ୟ ଭୂମି ଅତିକ୍ରମ କରି ବାରୋ ଗ୍ରାମଠାରେ ବୈତରଣୀ ନଦୀ ସହିତ ମିଶି ଅଛି । ଏହି ନଦୀର ଉଭୟ ତୀର ଦେଶ ଘନ କୁଶ ଶଯ୍ୟା ପୂର୍ଣ୍ଣ ହୋଇ ଥିବାରୁ ନଦୀର ନାମ କୁଶଭଦ୍ରା ଓ ଏହାଙ୍କର ନାମ କୋଶଳେଶ୍ୱର ବା କୁଶଳେଶ୍ୱର ହୋଇଅଛି । ଐତିହାସିକ ଦୃଷ୍ଟି କୋଣରୁ କେନ୍ଦୁଝର ପ୍ରାଚୀନ କୋଶଳ ରାଜ୍ୟ ଅନ୍ତର୍ଗତ ଥିବାର ନିଦର୍ଶନ ସ୍ୱରୂପ ଏହି ଲିଙ୍ଗଙ୍କର ନାମ କୋଶଳେଶ୍ୱର ଅଟେ ।

କୋଶଳେଶ୍ୱର ମନ୍ଦିରର ଆକୃତି କ୍ଷୁଦ୍ର ହେଲେହେଁ ଏଠାରେ ଦର୍ଶନ ଯୋଗ୍ୟ ଓ ଗବେଷଣା ସାପେକ୍ଷ କଳା ସ୍ଥାପତ୍ୟ ଓ ମୂର୍ତ୍ତିମାନ ରହିଅଛି । ଏହି ଲିଙ୍ଗ ସ୍ୱୟମ୍ଭୂ ଓ ଅର୍ଦ୍ଧ ଗୋଲାକୃତି ଅଟେ । ପାର୍ଶ୍ୱଦେବଙ୍କ ଗହଣରେ ଗଣେଶ, ଦୁର୍ଗା, କାର୍ତ୍ତିକେୟ, ଭୈରବ ମୂର୍ତ୍ତିମାନ ବିଦ୍ୟମାନ । ଏଠାରେ ଥିବା ଭୈରବ ଓ କାର୍ତ୍ତିକେୟ ମୂର୍ତ୍ତି ନିର୍ମାଣ କୌଶଳ ବିଚିତ୍ର ପ୍ରକାରର ଅଟେ ।

### ଭୈରବ ମୂର୍ତ୍ତି

ଏଠାରେ ଏକ ଗୋଡରେ ଦଣ୍ଡାୟମାନ ପାଷାଣ ଭୈରବ ମୂର୍ତ୍ତିଙ୍କର ନାମ ଘଣ୍ଟାକର୍ଣ୍ଣ ହୋଇ ଥିଲେହେଁ କର୍ଣ୍ଣର ଆକୃତି ଘଣ୍ଟା ସଦୃଶ୍ୟ ନୁହେଁ । ଏହି ଘଣ୍ଟା କର୍ଣ୍ଣ ଭୈରବ ସର୍ବ ବ୍ୟାଧି ନିବାରକ, ସର୍ବୋପଦ୍ରବ୍ୟ ସଂହାରକ ଏବଂ ମନ୍ଦିର ରକ୍ଷକ ରୂପେ କଥିତ ଅଟନ୍ତି । ଏହି ଭୈରବ ମୂର୍ତ୍ତି ଜୈନ ସିଦ୍ଧଙ୍କର ଯେ ନ ହୋଇଥିବ ଏକଥା କିଏ କହିବ ?

**କାର୍ତ୍ତିକେୟ**

ଏହି ମନ୍ଦିରରେ ଥିବା କାର୍ତ୍ତିକେୟ ମୂର୍ତ୍ତି ଅନ୍ୟ କୌଣସିଠାରେ ଦେଖାଯାଏ ନାହିଁ । କାର୍ତ୍ତିକେୟଙ୍କ ଧ୍ୟାନମନ୍ତ୍ର ବର୍ଣ୍ଣନା ନିମ୍ନମତେ କରାଯାଇ ଅଛି :—

"କାର୍ତ୍ତିକେୟଂ ମହାଭାଗଂ ମୟୂରୋପରିସଂସ୍ଥିତଂ
ତପ୍ତ କାଞ୍ଚନ ବର୍ଣ୍ଣାଭଂ ଶକ୍ତି ହସ୍ତଂ ବରପ୍ରଦଂ ।
ଦ୍ୱିଭୁଜଂ ଶତ୍ରୁହନ୍ତାରଂ ନାନାଲଙ୍କାର ଭୂଷିତ
ପ୍ରସନ୍ନ ବଦନଂ ଦେବଂ ସର୍ବସେନା ସମାବୃତଂ ।"

କାର୍ତ୍ତିକେୟଙ୍କର ଛଅଗୋଟି ମୁଖଥିବାରୁ ତାହାଙ୍କର ନାମ ଷଡ଼ାନନ ଅଟେ । ତାହାଙ୍କର ଦ୍ୱାଦଶ ହସ୍ତ ଥାଏ । ମାତ୍ର ମନ୍ଦିର ମାନଙ୍କରେ ଅଙ୍କିତ କାର୍ତ୍ତିକେୟ ମୂର୍ତ୍ତି ଛଅ ମୁଖ ଓ ଦୁଇ ହସ୍ତ ବିଶିଷ୍ଟ ଅଟେ । ଦେବତା ମାନଙ୍କର ମୁଖର ସେ ଦୁଇଗୁଣ ହସ୍ତହେବ ସେକଥା ସ୍ୱତଃସିଦ୍ଧ ନୁହେଁ । ବ୍ରହ୍ମା ଚାରିମୁଖ ହୋଇଥିଲେହେଁ ଅଷ୍ଟ ହସ୍ତ ବିଶିଷ୍ଟ ନୁହନ୍ତି । ବିଷ୍ଣୁ ଏକ ମୁଖ ହୋଇ ସୁଦ୍ଧା ଚତୁର୍ଭୁଜ ଅଟନ୍ତି । ଶିବ ପଞ୍ଚମୁଖ ହୋଇ ଥିଲେହେଁ ଦଶଭୁଜ ନୁହନ୍ତି । ଶିଳ୍ପୀ ନିଜର କଳ୍ପନାନୁସାରେ ମାନସମୂର୍ତ୍ତିର ରୂପ ଅଙ୍କନ କରିଥାଏ । ମାତ୍ର ଏହି ମନ୍ଦିରରେ ଥିବା କାର୍ତ୍ତିକେୟ ମୂର୍ତ୍ତି କେଉଁ ଧ୍ୟାନ ଧାରଣା ଅନୁସାରେ ନିର୍ମିତ ତାହା ଗବେଷଣା ସାପେକ୍ଷ । ଏହାଙ୍କର ଏକମୁଖ ଓ ଚାରିବାହୁ ଅଟେ । ଦକ୍ଷିଣ ପ୍ରଥମ ହସ୍ତରେ ଶକ୍ତି ବା ଖଡ୍ଗ, ଦକ୍ଷିଣ ଦ୍ୱିତୀୟ ହସ୍ତରେ ମୟୂର ଚଞ୍ଚୁ ଦ୍ରଶିତ ଗୋଟିଏ ବିକଶିତ ପଦ୍ମଫୁଲ, ପ୍ରଥମ ବାମ ହସ୍ତରେ ଭୂମି ସ୍ପର୍ଶ କରିଥିବା ଗଦା ବା ଲଗୁଡ, ଓ ଦ୍ୱିତୀୟ ବାମ ହସ୍ତରେ ଉଚ୍ଚବକ୍ଷ ଗୋଟିଏ କୁକ୍କୁଟ ଛବି ରହିଅଛି । ମସ୍ତକରେ ଦେବ ପଟଳ ରହିଅଛି । ମୂର୍ତ୍ତି ଦଣ୍ଡାୟମାନ ଓ ସନ୍ନିକଟରେ ବାହାନ ମୟୂର ମଧ୍ୟ ଦଣ୍ଡାୟମାନ ।

ସ୍କନ୍ଦ ଦେବତା ହାତରେ ଏକ କୁକୁଡ଼ା ପକ୍ଷୀ ଧାରଣ କରିବା ଏକ ବିଚିତ୍ର ବ୍ୟାପାର ପରି ମନେ ହୁଏ । କାର୍ତ୍ତିକେୟଙ୍କର ଅନେକ ନାମ ମଧ୍ୟରୁ "କୃକବାକୁଧ୍ୱଜ" ଅନ୍ୟତମ ନାମ ଅଟେ । "କୃକବାକୁ ଧ୍ୱଜ" ଶବ୍ଦର ଅର୍ଥ କୁକ୍କୁଟ ଏବଂ ମୟୂର ଅଟେ । ମହୀଧର ସ୍ପଷ୍ଟ ଲେଖିଛନ୍ତି :—

"କୃକବାକୁ ତାମ୍ର ଚୂଡ଼"

ସବିତାଙ୍କ ପକ୍ଷରେ ଏହି ପକ୍ଷୀ ପବିତ୍ର ଅଟେ । ଯାସ୍କଙ୍କ ଅର୍ଥରେ କୁକ୍କୁଟ ରାତ୍ରିର ବିନାଶ ଓ ସବିତାଙ୍କର କାଳାନୁବାଦ ବାର୍ତ୍ତା ପ୍ରଚାର କରି ସୁପ୍ତ ଜଗତକୁ ଜାଗ୍ରତ କରୁଥିବାର ଏହା ସୂର୍ଯ୍ୟଙ୍କର ପ୍ରିୟ ପକ୍ଷୀ ଅଟେ । ଏହାର ନାମ କୃକବାକୁ ହେବାର କାରଣ ଏହି ଯେ ଏହି ପକ୍ଷୀ ପୂର୍ବାଙ୍କୁ ଅନୁକରଣ କରେ ବା "କୃକ" ଶବ୍ଦ କରେ । ସୁତରାଂ କୃକବାକୁ ଧ୍ୱଜ ଶବ୍ଦର ଅର୍ଥ ଯେ କୁକ୍କୁଟ ଧ୍ୱଜ ଏଥିରେ ସନ୍ଦେହ ନାହିଁ । କାର୍ତ୍ତିକେୟ ଯେ କେବଳ ମୟୂର ପ୍ରତି ଅନୁରକ୍ତ ତାହା ନୁହେଁ,

ସେ ତତ୍ ଜାଗାସ୍ଥ କୁକ୍କୁଟ ମୂର୍ତ୍ତି ମଧ୍ୟ ଅନ୍ୟତମ ଅଟନ୍ତି । ଶିବଙ୍କ ପରିବାରରେ ଶିବ ଗୃହ ପାଳିତ ପଶୁର ରକ୍ଷକ ଭାବରେ, ପାର୍ବତୀ ସିଂହ ପ୍ରମୁଖ ବନ୍ୟ ପଶୁଙ୍କ ପାଳିକା ରୂପେ, ବଡ଼ ପୁଅ କାର୍ତ୍ତିକେୟ ମୟୂର କୁକୁଡ଼ା ପ୍ରମୁଖ ପକ୍ଷୀ ଜାତିର ପାଳକ ପର ଏବଂ ସାନ ପୁଅ ଗଣେଶ ମୂଷା, ସରୀସୃପ ଗଣଙ୍କର ରକ୍ଷକ ଅଟନ୍ତି । ଏଣୁ ଶିବ ପରିବାର ପଶୁ ପକ୍ଷୀ ଶଙ୍ଖସ୍ପର୍ଶ ନେଙ୍କର ପାଳନ କର୍ତ୍ତା ଅଟନ୍ତି ।

ଦେଶର ଅନ୍ୟତ୍ର ଏପରି ମୂର୍ତ୍ତି ଅଛି କି ନା ଗବେଷଣା ସାପେକ୍ଷ । ପୁରୀ ମନ୍ଦିର ଗାତ୍ରରେ କୁକୁଟ ମୂର୍ତ୍ତି ସ୍ଥାନ ପାଇଛି ପରି ଏଠାରେ କୁକୁଡ଼ା ମୂର୍ତ୍ତି ସ୍ଥାନ ପାଇବାର ବିଶେଷ ବିଚିତ୍ରତା ନାହିଁ । ଏପରିକି ବୈଦିକ କର୍ମକାଣ୍ଡ ମତରେ ଅଶ୍ୱମେଧ ଯଜ୍ଞରେ ମଧ୍ୟ କୁକ୍କୁଟ ବଳୀର ବ୍ୟବସ୍ଥା ରହିଅଛି । ଧନ୍ୟ କେନ୍ଦୁଝର ଧନ୍ୟ ତୋର ଗୌରବମୟ ଗରିମାରାଜି ।

## ଝାଡ଼େଶ୍ୱର

ବୈତରଣୀ ନଦୀର ସମତଳ ଅବବାହିକାରେ ଅବସ୍ଥିତ ପ୍ରାଚୀନ ଆନନ୍ଦପୁର ସହରର ଦକ୍ଷିଣ ପାର୍ଶ୍ୱରେ ଘସିପୁର ଗ୍ରାମର ଈଶାନ ମଧ୍ୟରେ ଅବସ୍ଥିତ ଝାଡ଼େଶ୍ୱର ଶିବ ଲିଙ୍ଗ ମଧ୍ୟ ଲିଙ୍ଗ ନାମରେ କଥିତ । ନିଘଞ୍ଚ ଆମ୍ରକାନନ ପରିଶୋଭିତ ଏକ ପ୍ରାକୃତିକ ପରିବେଷ୍ଟନୀ ମଧ୍ୟରେ ଏହି ମନ୍ଦିର ଅବସ୍ଥିତ । ଝାଡ଼େଶ୍ୱର ସ୍ୱୟମ୍ଭୂ ଲିଙ୍ଗ ଅଟନ୍ତି । ଏହି ଶିବ ମନ୍ଦିରର ଦକ୍ଷିଣ ପଶ୍ଚିମରେ ବିଶ୍ୱଗୁରୁ ବାଇଆ-ପାଗଳା ସିଦ୍ଧପୀଠ ସଭିଙ୍କ ମୁଣ୍ଡ ଅବସ୍ଥିତ । ଝାଡ଼ବଣ ମଧ୍ୟରେ ଅବସ୍ଥିତ ଝାଡ଼େଶ୍ୱର ପ୍ରଧାନ ଶୈବକ୍ଷେତ୍ର ଅଟେ । ଲୋକଶ୍ରୁତି ଅଛି ଯେ ୧୪୮° ଖ୍ରୀଷ୍ଟାବ୍ଦରେ ଆନନ୍ଦପୁରରେ ପାଟବସ୍ତ୍ର ବୟନ କରୁଥିବା ଏକ ପାଟରା ପରିବାରରେ ଆନନ୍ଦ ଓ ପୂର୍ଣ୍ଣମା ନାମକ ଦୁଇ ଜଣ ବାଳକ ବାଳିକା ପ୍ରତ୍ୟହ ବୈତରଣୀ ନଦୀ ପାର ହୋଇ ଆସି ଝାଡ଼ବଣ ମଧ୍ୟରେ ଅବସ୍ଥିତ ଝାଡ଼େଶ୍ୱରଙ୍କର ସେବା ପୂଜା କରୁଥିଲେ । ଏକଦା ଆନନ୍ଦପୁରର ଗୋଟିଏ ଶଙ୍ଖରା ଜାତିର ବୁଢ଼ାର ଦୁଧିଆଳି ଗାଈ ହଜି ଗଲା । ସେ ଗାଈ ଖୋଜିଖୋଜି ଆସି ଦେଖିଲେ ଝାଡ଼ବଣରେ ଗୋଟିଏ ବିଲ୍ୱ ବୃକ୍ଷ ମୂଳରେ ଅର୍ଦ୍ଧଉନ୍ମୋଚିତ ଗୋଟିଏ ଶିବ ଲିଙ୍ଗ ରହିଅଛି । ଗାଈଟି ସେଠାରେ ଠିଆ ହୋଇଛି ଏବଂ ତାହାର ପହ୍ନାରୁ କ୍ଷୀର ଝରି ଲିଙ୍ଗରେ ପଡୁଅଛି । ସଙ୍କର୍ଷଣ ଦାସ ବୁଢ଼ା ଏହି ବିଚିତ୍ର ଦୃଶ୍ୟ ଦେଖି ଆନନ୍ଦିତ ହୋଇଗଲେ ଓ ସେହି ଦିନଠାରୁ ଆନନ୍ଦ ଓ ପୂର୍ଣ୍ଣମାର ପରାମର୍ଶରେ ଝାଡ଼େଶ୍ୱରଙ୍କର ପୂଜା ଆରାଧନା କଲେ । ପରବର୍ତ୍ତୀ ସମୟରେ ଏହି ଆନନ୍ଦ ଓ ପୂର୍ଣ୍ଣମାର ମିଳିତ ନାମରୁ ଆନନ୍ଦପୁର ନାମର ଉତ୍ପତ୍ତି ହେଲା । କେନ୍ଦୁଝରର ତତ୍କାଳୀନ ରାଜା ତ୍ରିଲୋଚନ ଭଞ୍ଜ ଝାଡ଼େଶ୍ୱରଙ୍କର ପୂଜା ଆରାଧନା ନିମନ୍ତେ ବିନୟ ସ୍ଥଳୀରେ ଗୋଟିଏ ମଣ୍ଡପ ନିର୍ମାଣ କରାଇ ବ୍ରାହ୍ମଣ ପୂଜକ ନିଯୁକ୍ତ କରାଇଥିଲେ ।

କରିଥିଲେ । କିଛୁଦିନ ପରେ ନଦୀ ବନ୍ୟାରେ ଏହି ମଣ୍ଡପ ଭାଙ୍ଗି ଯିବାରୁ ୧୮୫୦ ମସିହାରେ ରାଜା ଗଦାଧର ଭଞ୍ଜ ଆଉ ଗୋଟିଏ ମଣ୍ଡପ ନିର୍ମାଣ କରାଇ ଥିଲେ । ୧୮୮୦ ଖ୍ରୀଷ୍ଟାବ୍ଦରେ ରାଜା ଧନୁର୍ଜୟ ନାରାୟଣ ଭଞ୍ଜ ଏଠାରେ ମନ୍ଦିର ନିର୍ମାଣ କରାଇ ଥିଲେ । ମାତ୍ର ୧୯୨୭ ମସିହା ବନ୍ୟାରେ ସେହି ମନ୍ଦିର ଭାଙ୍ଗି ଯିବାରୁ ତାହାର ଇଟା ପଥରରେ ଛଟାରାୟ ଲକ୍ଷ୍ମୀନାରାୟଣ ଭଞ୍ଜ ବର୍ତ୍ତମାନର ମନ୍ଦିର ନିର୍ମାଣ କରାଇ ଅଛନ୍ତି ।

ଆନନ୍ଦପୁର ବହୁ ପ୍ରାଚୀନ ଯୁଗରୁ ଧର୍ମ, ଦର୍ଶନ, ଶିକ୍ଷା, ସଂସ୍କୃତି, ଭାଷା କ୍ଷେତ୍ରରେ ସବିଶେଷ ପ୍ରାଧାନ୍ୟ ଅର୍ଜନ କରି ଆସିଛି । ପ୍ରାଚୀନ କାଳରେ ଉତ୍ତର ଓ ଦକ୍ଷିଣ ଭାରତ ମଧ୍ୟରେ ପୂର୍ବ ଭାରତରେ ଅବସ୍ଥିତ ଆନନ୍ଦପୁର ଦେଇ ସ୍ଥଳ ପଥରେ ବାଣିଜ୍ୟ କାରବାର ହେଉଥିଲା । କେନ୍ଦୁଝର ରାଜ୍ୟର ପଣ୍ୟଦ୍ରବ୍ୟ ଗୁଡିକ ଆନନ୍ଦପୁରଠାରୁ ନଦୀ ପଥରେ ମଧ୍ୟ ଧାମରା ମୁହାଣ ଦେଇ ବିଦେଶକୁ ରପ୍ତାନୀ ହେଉଥିଲା । ଏତେକି ପ୍ରସ୍ତର ଯୁଗରୁ ଓ ଧାତବ ଯୁଗରୁ ଶାଳନ୍ଧୀ ବୈତରଣୀ ଅବବାହିକାରେ ଲୌହ, ତମ୍ବା, ବ୍ରୋଞ୍ଜ ପ୍ରଭୃତି ଧାତୁର ଆଦ୍ୟ ବ୍ୟବହାର ପ୍ରଚଳିତ ହୋଇଥିଲା ।

ପୌରାଣିକ ବର୍ଣ୍ଣନାରୁ ଜଣାଯାଏ ଯେ ଆନନ୍ଦପୁରଠାରେ ବୈତରଣୀ ନଦୀର ତୀର ଦେଶରେ ଅବସ୍ଥିତ ସୁବିସ୍ତୃତ ବାଲୁକା ଭୂମି ମହାଶ୍ମଶାନ ନାମରେ କଥିତ । ଏଠାରେ କବନ୍ଧ ଦୈତ୍ୟର ବିନାଶ ହୋଇଥିଲା । ଏହି ମହାଶ୍ମଶାନର ପୂର୍ବରେ ଅନତି ଦୂରରେ ମହାଶକ୍ତି ପୀଠ ଯାଜପୁର ଅବସ୍ଥିତ । ସପ୍ତମାତୃକା ବିଗ୍ରହ, ଦଶାଶ୍ୱମେଧ ଘାଟ, ବରାହ ଯଜ୍ଞକୁଣ୍ଡ, ଶୁଭସ୍ତମ୍ଭ ସମେତ ଅସଂଖ୍ୟ ଶୈବ ଶାକ୍ତ ମନ୍ଦିର ରହିଅଛି । ବରହେଶ୍ୱର ନାଭିଲିଙ୍ଗ ଅଟନ୍ତି । ତାଙ୍କୁ ନାଭିଗୟା ମଧ୍ୟ କୁହାଯାଏ । ଯାଜପୁର ପରି ଆନନ୍ଦପୁର ମଧ୍ୟ ପ୍ରାଚୀନତମ ଓ ଗୌରବମୟ ନଗ୍ର ଥିଲା ।

ଏହି ମହାଶ୍ମଶାନର ଉତ୍ତର ଦିଗରେ ଉତ୍ତରେଶ୍ୱର ଓ ଦକ୍ଷିଣ ଦିଗରେ ଝାଡେଶ୍ୱର ସ୍ୱୟମ୍ଭୁ ଲିଙ୍ଗ ଓ ମଧ୍ୟ ଦେଶରେ ବହ୍ନି ରକ୍ତ ରଞ୍ଜିତ ବୈତରଣୀର ଜଳଧାର ପ୍ରବାହିତ ହେଉଅଛି । ଏଠାରେ ଥିବା ବିଶାଳ ତପ୍ତ ବାଲୁକା ରାଶିରେ ମୁନିଋଷୀମାନେ ପାଦରେ ଗୁଳାଗୁଳି ଅତିକ୍ରମ କରୁଥିବା ଦୃଶ୍ୟ ରାବଣ ଦେଖିଥିଲେ ବୋଲି ରାମାୟଣରେ ବର୍ଣ୍ଣିତ ହୋଇଅଛି । ଆନନ୍ଦପୁରର ପୂର୍ବରେ ଶାଳନ୍ଦୀ ନଦୀର ଅବବାହିକାରେ ଅବସ୍ଥିତ ଭାରତର ଅନ୍ୟତମ ଜୈନ୍ୟ ତୀର୍ଥ କ୍ଷେତ୍ର "ଚକ୍ରତୀର୍ଥ" ଓ ପ୍ରସିଦ୍ଧ ଶିଳାଲେଖ "ବୈଦାଖ୍ୟା" ବା "ବୌଦ୍ଧ ଆଖ୍ୟା" ଅବସ୍ଥିତ । ବର୍ତ୍ତମାନ ଏଠାରେ ଶାଳନ୍ଦୀ ନଦୀବନ୍ଧ ଯୋଜନା, ବିଦ୍ୟାଧରପୁର ଜଳ ଭଣ୍ଡାର ଓ ବିଖ୍ୟାତ ବୋଉଲା କ୍ରୋମାଇଟ ଖଣି ଅବସ୍ଥିତ ।

ପୌରାଣିକ ତଥା ପ୍ରାଗ୍ ଐତିହାସିକ ଯୁଗ ବ୍ୟତୀତ ଇତିହାସ ଯୁଗରୁ ମଧ୍ୟ ଆନନ୍ଦପୁରର ଗୌରବମୟ ଇତିହାସ ଭଞ୍ଜ ରାଜ ବଂଶକୁ ଉଜ୍ଜୀବିତ କରିଅଛି ।

କଥିତ ଅଛି ୧୪୮୦ ଖ୍ରୀଷ୍ଟାବ୍ଦରେ ଆନନ୍ଦପୁର ବା ଆଠଗଡ଼ ଖୋର୍ଦ୍ଧାର ଗଜପତି ପୁରୁଷୋତ୍ତମ ଦେବଙ୍କ ଶାସନ କାଳରେ ଖୋର୍ଦ୍ଧା ରାଜ୍ୟରୁ ଆସି କେନ୍ଦୁଝରର ରାଜା ଗୋବିନ୍ଦ ଭଞ୍ଜଙ୍କ ନେତୃତ୍ୱରେ ଷ୍ଟେଟ ସହିତ ସାମିଲ ହୋଇଥିଲା ।

କେନ୍ଦୁଝରର ରାଜା ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜ ଆନନ୍ଦପୁର ରାଜବାଟୀରେ ଅବସ୍ଥାନ କରି ପ୍ରସିଦ୍ଧ ଅମ୍ବିକା ବିଳାସ ରଚନା କରିଥିଲେ । ସମସ୍ତ ଓଡ଼ିଶାରେ କେବଳ ଆନନ୍ଦପୁରରେ ଅଭିଧାନିକ ଓଡ଼ିଆ ଭାଷା କଥିତ ଭାଷା ଅଟେ । ଏଣୁ ଏହି ପରମ ନିର୍ଭ ଭାଷା ଅମ୍ବିକା ବିଳାସର ନିଜସ୍ୱ ଭାଷା ଅଟେ ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ବ୍ୟାସକବି ଫକୀର ମୋହନ ଏଠାରେ ଷ୍ଟେଟର ମେନେଜର ଥାଇ ତାଙ୍କର 'ଉତ୍କଳ ଭ୍ରମଣ'' କାବ୍ୟ ରଚନା ଓ ମୁଦ୍ରଣ କରାଇ ଥିଲେ । ଆନନ୍ଦପୁର ସହରର ମଧ୍ୟ ଦେଶରେ ଅବସ୍ଥିତ ଆନନ୍ଦେଶ୍ୱର ମନ୍ଦିର ଆନନ୍ଦପୁର ନାମର କୀର୍ତ୍ତି ସ୍ତମ୍ଭ ପରି ମନେ ହୁଏ ।

## ଚକ୍ରତୀର୍ଥ

ଆର୍ଯ୍ୟମାନେ ସିନ୍ଧୁ ଗାଙ୍ଗେୟ ଅବବାହିକାରେ ସ୍ଥିତି ପ୍ରତିଷ୍ଠା କରି ଶେଷରେ କଳିଙ୍ଗ ରାଜ୍ୟରେ ଶେଷ ଉପନିବେଶ ସ୍ଥାପନ କଲେ । ସେମାନେ ପୂର୍ବରୁ କଳିଙ୍ଗରେ ବାସ କରୁଥିବା ଆଦିମ ଅଧିବାସୀମାନଙ୍କୁ ବଣ ଜଙ୍ଗଲକୁ ତଡ଼ି ଦେଇ ଥିଲେ ।

ସେତେବେଳେ କଳିଙ୍ଗର ପଡ଼ୋଶୀ ରାଜ୍ୟ "ଚମ୍ପା" ବା "ଚମ୍ପାନଗ୍ର" ଆଧୁନିକ (ଭଦ୍ରକ,)ରେ ଦଧିବାମନ ଓ ପଦ୍ମାବତୀ ନାମରେ ରାଜାରାଣୀ ରହିଥିଲେ । ଏକଦା ଗର୍ଭବତୀ ରାଣୀ ପଦ୍ମାବତୀ ରାଜାଙ୍କ ସହିତ ବନ ଭ୍ରମଣ କରୁଥିବା ସମୟରେ ଘଟଣା ହୋଇ ରାଜାଙ୍କ ଠାରୁ ଅଲଗା ହୋଇ ଶେଷରେ କଳିଙ୍ଗ ରାଜ୍ୟର ଜଣେ ବ୍ରାହ୍ମଣ ଘରେ ଆଶ୍ରୟ ନେଇ ସେଠାରେ ଗୋଟିଏ ପୁତ୍ର ଜାତ କରାଇ ତାଙ୍କର ନାମ "କରକଣ୍ଡୁ" ରଖିଥିଲେ । ଏହି "କରକଣ୍ଡୁ" କଳିଙ୍ଗର ରାଜା ହୋଇଥିଲେ । ସେତେବେଳେ କଳିଙ୍ଗର ରାଜସିଂହାସନ ପୁରୁଷାନୁକ୍ରମିକ ନହୋଇ ପରନ୍ତୁ ସକ୍ଷମ ଯୋଗ୍ୟ ବ୍ୟକ୍ତି ଦାୟିତ୍ୱରେ ନ୍ୟସ୍ତ ହେଉଥିଲା । ଲୋକେ ନିଜ ଭିତରୁ ନିଜ ଇଚ୍ଛାରେ ନୂଆ ରଜାଟିଏ ବାଛୁଥିଲେ । ଯିଏ ପ୍ରଜାମାନଙ୍କୁ ଶତ୍ରୁ ହାତରୁ ରକ୍ଷା କରି ପାରିବ, ସେଇ ଭଳି ଲୋକ ରାଜା ହେଉଥାଏ । ସେଥିପାଇଁ ହାତୀ ମଥାରେ ସୁନା କଳସ ଥୋଇ ଲୋକେ ନୂଆ ରାଜା ଖୋଜି ଖୋଜି "କରକଣ୍ଡୁ"ଙ୍କୁ ବାଛି ଥିଲେ । କରକଣ୍ଡୁ କଳିଙ୍ଗର ରାଜା ହେବାପରେ ନିଜର ପିତୃରାଜ୍ୟ ଚମ୍ପା ବା ଚମ୍ପାନଗ୍ର ମଧ୍ୟ ପିତାଙ୍କଠାରୁ ପାଇଥିଲେ । ସେ ଜଣେ ପ୍ରଜାରଞ୍ଜକ ଓ ଧାର୍ମିକ ରାଜା ଥିଲେ । ସେ ରାଜ୍ୟରେ ଜୀବ ହତ୍ୟା ନିଷେଧ କରି ଜୈନଧର୍ମ ଗ୍ରହଣ କରିଥିଲେ । ସେ ସ୍ଥାପନ କରିଥିବା 'କରକଣ୍ଡୁ-ବିହାର'

ସୌଭଳାର ଚମ୍ପାର୍ଣ୍ଣ କି ନା ଗବେଷଣା ସାପେକ୍ଷ ଅଟେ । ମାତ୍ର ଆଧୁନିକ ଉଦ୍ୟଖର ପ୍ରାଚୀନ ନାମ ଚମ୍ପାନଗ୍ର ଥିବାରୁ ଏବଂ ଚମ୍ପାର୍ଣ୍ଣ ଉଦ୍ୟଖର ନିକଟତମ ହେତୁ ବୋଇଲା ପର୍ବତ ଶ୍ରେଣୀ ବକ୍ଷରେ ରାଜା କରକଣ୍ଡୁ ବିହାର ନିର୍ମାଣ କରି ଥିବା ନିଶ୍ଚିତ ।

ବୋଇଲା ପର୍ବତ ଶ୍ରେଣୀ ଲୋଇର କେନ୍ଦୁଝରର ସୁବିସ୍ତୃତ ଉଚ୍ଚତମ ପର୍ବତ ଅଟେ । ଏହି ପର୍ବତ ଶ୍ରେଣୀ ଜିଲ୍ଲାର ଉତ୍ତର ପୂର୍ବ କୋଣରେ ଅବସ୍ଥିତ ରହି ମୟୂରଭଞ୍ଜ ଓ କେନ୍ଦୁଝର ସୀମାକୁ ପୃଥକ କରୁଅଛି । ଏହାର ଉଚ୍ଚତା ୨୨୦୦ ଫୁଟ ଅଟେ ।

ଶାଳନ୍ଦୀ ନଦୀ ମୟୂରଭଞ୍ଜର ଶିମିଳିପାଳ ପର୍ବତର କନ୍ୟା ସ୍ୱରୂପା । ଏହି ନଦୀ ମୟୂରଭଞ୍ଜ କେନ୍ଦୁଝର ଓ ବାଲେଶ୍ୱର ଜିଲ୍ଲାରେ ପ୍ରବାହିତ ହୋଇ ବୈତରଣୀ ସହିତ ମିଶି ଅଛି । ଏହାର ତୀର ଦେଶ ନାଗେଶ୍ୱର, ଚମ୍ପକ, ହରିଅନା, ଆମ୍ବ, ଅଶ୍ୱତ୍ଥ ଆଦି ବିଭିନ୍ନ ବୃକ୍ଷ ଲତା ଆଦିବାସୀ ପଲ୍ଲୀ ବାଳା ମାନଙ୍କର ଉନ୍ମୁକ୍ତ ସ୍ନାନ, ଜଳକ୍ରୀଡା, କେଶ ମର୍ଦ୍ଦନ, ଜଳକୁମ୍ଭ କାଖରେ ଲମ୍ବିତ ଗତିରେ ଯାତ୍ରା, ଚଟଲ, ରୋହିତ, ଜଳ୍ୟାଦି ମତ୍ସ୍ୟ ଓ କୁମ୍ଭୀରାଦିଙ୍କ କ୍ରୀଡା, ବରାହ, ହସ୍ତୀ, ଭଲ୍ଲୁକ ବ୍ୟାଘ୍ର, ମୃଗ ପ୍ରଭୃତି ବନ୍ୟ ପଶୁ ପକ୍ଷୀ ଶଙ୍ଖମୃଗ ଗଣଙ୍କର ଜଳପାନ, ଶିକାରୀ ମାନଙ୍କର ଶିକାର ଦୃଶ୍ୟ-ପାଳନ ଓ ମାଚଣାର ଏକ ଅପୂର୍ବ ସମାବେଶ । ଆଦିବାସୀ ଅଧ୍ୟୁଷିତ ଏହି ନଦୀ ଉପତ୍ୟକା ଶରତ ଋତୁରେ କାଶତଣ୍ଡି, ହେମନ୍ତରେ ଧାନ ଶିଶିରରେ ସର୍ଷପ, ବସନ୍ତରେ କିଂଶୁକ ଓ ଅଶୋକ ଭୂଷା ଭୂଷିତା ନବ ଯୌବନଶ୍ରୀ ଓ ନିଦାଘରେ ତାର ଦିଗମ୍ବର ମୂର୍ତ୍ତି, ଶୁଷ୍କ ତପ୍ତ ବାଲୁକା ଶଯ୍ୟା ଓ ଘୂର୍ଣ୍ଣିବାୟୁର ଝଡଝଞ୍ଜା ଦର୍ଶକ ମନରେ ଆନନ୍ଦ ତଥା ଆତଙ୍କ ସୃଷ୍ଟି କରିଥାଏ । ଶାଳନ୍ଦୀ ନଦୀର ସୁଶୋଭିତ ଉପକଣ୍ଠରେ ସୀତାକୁଣ୍ଡ, ବାଙ୍କେଶ୍ୱର, ଅଶିଜ, ଅସ୍ତଳ ମଠର ଧ୍ୱଂସାବଶେଷ, ଅଦ୍ୟାବଧି ରହିଅଛି । ବୋଇଲା ପର୍ବତ ଶ୍ରେଣୀ ମଧ୍ୟରେ ଥିବା ଗୋଟିଏ ପଥର କୁଣ୍ଡକୁ ଚମ୍ପାର୍ଣ୍ଣ ବୋଲି ଯାଏ । ଲୋକ ଶୁଣି ଅଛି ଯେ ଦ୍ୱାପର ଯୁଗ ଶେଷରେ ସୁଦର୍ଶନଚକ୍ର ଶ୍ରୀକୃଷ୍ଣଙ୍କ ଆଜ୍ଞାରେ ତାଙ୍କର ପୁତ୍ର ପ୍ରଦ୍ୟୁମ୍ନଙ୍କର ଶିରୋଚ୍ଛେଦନ କରି ଦୁଃଖ ପୁତ୍ର ହତ୍ୟା ଦୁଃଖରେ ମର୍ମାହତ ହୋଇ ଏହିଠାରେ ପାତାଳ ପୁରରେ ଗୁପ୍ତ ହୋଇ ଯାଇଥିଲେ । ପ୍ରତ୍ୟେକ ରଜ ସଂକ୍ରାନ୍ତି ଦିନ ଏଠାରେ ଗୋଟିଏ ପ୍ରକାଣ୍ଡ ମେଳା ହୋଇଥାଏ । ଲୋକଙ୍କର ବିଶ୍ୱାସ ଯେ ରଜସଂକ୍ରାନ୍ତି ଦିନ ଯେଉଁ ଲୋକ ସେହି କୁଣ୍ଡ ଜଳରେ ସ୍ନାନ ତର୍ପଣ କରନ୍ତି ତାଙ୍କର ପିତୃପୁରୁଷମାନେ ସ୍ୱର୍ଗବାସ କରନ୍ତି ।

"ପାରମ୍ପରିକ ବିଦଗ୍ଧ ଅଭିଜାତ୍ୟ ଓ ସଂସ୍କୃତ ସାହିତ୍ୟ ସୃଷ୍ଟିର ଉତ୍ସ । ଅଖ୍ୟାତ ଅଞ୍ଚଳକୁ ପ୍ରଖ୍ୟାତ କରାଇଲା, ଅପରିଚିତ ଦୃଶ୍ୟକୁ ଲୋକ ଲୋଚନକୁ ଆଣିବା, ପୌରୁଷ ମଧ୍ୟରେ ଅପୌରୁଷେୟ ଖ୍ୟାତିର ପ୍ରଖ୍ୟାତି ଗାନ କରି

ଅଖ୍ୟାତ ଦୂର କରିବା ସାହିତ୍ୟ ସେବାର ଲକ୍ଷ । ବ୍ୟକ୍ତିର ଅଖ୍ୟାତି ବା ଅପବାଦ ବା ନିନ୍ଦାସ୍ତୁତି ଗାନ ସାହିତ୍ୟରେ ବର୍ଜନୀୟ" ।

କବି କଲମରୁ ଦେଖିବାକୁ ମିଳେ—

"ଶତ ଶତ ଯାତ୍ରୀଦଳ ପୁଲକିତ ମନେ
ଚାଲିଛନ୍ତି ଅବିରତ ତୀର୍ଥ ପର୍ଯ୍ୟଟନେ ।
ବୌଳା ନାମେ ପରିଚିତ ପ୍ରସିଦ୍ଧ ପର୍ବତେ
ରହିଛି ପ୍ରାଚୀନ କାଳୁଁ କେନ୍ଦୁଝର ପ୍ରାନ୍ତେ ।
ଅତ୍ୟୁଚ୍ଚ ଅଟଇ ସେହି ନଗ ଶିରୋନ୍ନତ
ଦେଖିଲେ ନୟନ ଜ୍ୟୋତି ହୁଏ ପରାଭୂତ ।
ପୁଣି ସେହି ବୌଳା ଶୈଳେ ଅଛି ପୁଣ୍ୟମୟ
ଚକ୍ରତୀର୍ଥ ନାମେ ଏକ ସ୍ଥାନ ଶୋଭାମୟ ।
ବିରାଜେ ଅଦ୍ୟାପି ଶୈଳ ମଧ ବର୍ତ୍ତୀ ସ୍ଥାନେ
ଯହିଁ ସ୍ୱୟଂ ଭଗବାନ ପ୍ରବଳ ପିପାସା-
ମେଣ୍ଟାଇବା ପାଇଁ କୂପ ଖୋଳିଲେ ସ୍ୱହସ୍ତେ ।"

ଲୋକେ କହନ୍ତି, ଯଦୁବୀର ଶ୍ରୀକୃଷ୍ଣ ସ୍ୱବଂଶ ସେନା ଏକଦା ମୃଗୟା କରୁଥିବା ସମୟରେ ଯଦୁବଂଶ ବାନ୍ଧବଙ୍କୁ ତୃଷାରୁ ରକ୍ଷା କରିବା ପାଇଁ ଏହିଠାରେ ଗୁପ୍ତରେ ରହିଥିବା ଏକ କୂପ ମଧ୍ୟରୁ ବ୍ରହ୍ମଶାପ ଭୋଗ କରୁଥିବା କୃକଳାସ ରୂପୀ ସୋମବଂଶୀ ଧାର୍ମିକ ରାଜା ନୃଗଙ୍କୁ ଉଦ୍ଧାର କରିବା ସଙ୍ଗେ ସଙ୍ଗେ ଶୁଦ୍ଧ ସ୍ୱଚ୍ଛ ଜଳ ପାନ କରିବାକୁ ଦେଇଥିଲେ ।

ବୌଳା ପର୍ବତର ମଝିରେ ମଝିରେ ଗୋଟାଏ ଗୋଟାଏ କେନ୍ଦୁ, ଶାଳ, ପିଆଶାଳ, ଅସନ, ମହୁଲ, ହରିଡ଼ା, ବାହାଡା ଅଁଳା, ଅଗୁରୁ, ନିମ୍ବ, ମହାନିମ୍ବ, ହେଭ୍ଲିଭ ବୃକ୍ଷ, ଗୁଡ଼ିକର ସବୁଜ ଶିରଂ ନିର୍ମୂଳ, ଶିଆଳି ପ୍ରଭୃତି ଲତାବୃତ ହୋଇ ବାବନାଭୂତ ପରି ଦଣ୍ଡାୟମାନ । ପର୍ବତର ପାଦ ଦେଶରେ ଠିଆ ହୋଇ ଉପରକୁ ଚାହିଁଲେ ଅଗ୍ରଦେଶ ଦେଖାଯାଏ ନାହିଁ । ଏହି ପର୍ବତର ଚତୁର୍ଦ୍ଦିଗରେ ପରସ୍ତ ପରସ୍ତ ହୋଇ ମାଳ ଶୈଳ ଶ୍ରେଣୀ ଦଣ୍ଡାୟମାନ ରହି ଏକ ଶୈଳବର୍ତ୍ତୀ ସୃଷ୍ଟି କରିଅଛି । ଏହି ସ୍ଥାନର ନଗ ଗୁଡ଼ିକର ଶୋଭା ମାଳ ବସନ ପରିଧାନ କରି ନବ କିଶୋରୀର ଅଳସ ଅଙ୍ଗ ରେଖା ଓ ଅନାବୃତ ପୀନସ୍ତନପରି ପ୍ରତୀୟମାନ ହୁଏ । ଏହି ପର୍ବତ ଶ୍ରେଣୀକୁ ଅର୍ଦ୍ଧଚନ୍ଦ୍ର ଆକାରରେ ବେଷ୍ଟନ କରି ରଖିଅଛି ଶାଳନ୍ଦୀ ଶାଳୁକୀ ଶୈଳ-ତନୂଜା ସୁନ୍ଦରୀ । ଦନ୍ତୁରିତ ଶୈଳ ବକ୍ଷ ବିଦାରଣ କରି ସ୍ଥାନେ ସ୍ଥାନେ ଜଳପ୍ରପାତ ସୃଷ୍ଟି କରି ଜଳ ତରଙ୍ଗ

ବାଦ୍ୟନାଦରେ ନୃତ୍ୟରତା- ଶାଳନ୍ଦୀ ବହି ଯାଉଛି କ୍ରମେ ନିମ୍ନକୁ ।

ପ୍ରାଚୀନ କାଳରୁ କେନ୍ଦୁଝରର ପ୍ରାକୃତିକ, ପୌରାଣିକ ତଥା ଐତିହାସିକ ଗୌରବ ଗରିମାମୟ ହୋଇ ରହି ଆସିଛି । କେନ୍ଦୁଝର ରାଜ୍ୟ କଳିଙ୍ଗର ରତ୍ନଗର୍ଭା ନାମରେ ସୁପରିଚିତ । ପ୍ରାଗ୍ ଐତିହାସିକ ଯୁଗରୁ ଆରମ୍ଭ କରି ଅଦ୍ୟାବଧି ବହୁ କବି, ମହାପୁରୁଷ, ଧର୍ମ ପ୍ରଚାରକ ପୁଣ୍ୟତୋୟା ବୈତରଣୀ ତୀରରେ ଜନ୍ମ ହୋଇ କୀର୍ତ୍ତି ଧ୍ୱଜା ଉଡ଼ାଇ ଅଛନ୍ତି ।

ଭାରତରେ କେଂଦୁଝରର ଭୌଗଳିକ ଅବସ୍ଥିତି ହେତୁ ସୃଷ୍ଟିର ଆବହ- ମାନ କାଳରୁ ଯେଉଁ ସବୁ ଧର୍ମ ପ୍ରଚାରକମାନେ ଶ୍ରୀଜଗନ୍ନାଥ ତୀର୍ଥ ଦର୍ଶନରେ କଳିଙ୍ଗ ଆସି ଅଛନ୍ତି ସେମାନେ ସମସ୍ତେ ଏହି ମଧ୍ୟଦେଶ ବା କେଂଦୁଝର ରାଜ୍ୟ ଦେଇ ଉତ୍କଳ ଜାହ୍ନବୀ ବୈତରଣୀ କୂଳେ କୂଳେ ଶ୍ରୀକ୍ଷେତ୍ରକୁ ଯାଇ ଅଛନ୍ତି । ଏପରିକି ପ୍ରାଚୀନ ଯୁଗରେ ଉତ୍ତର ଓ ଦକ୍ଷିଣ ଭାରତ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଏହି କେଂଦୁଝର ରାଜ୍ୟ ଦେଇ ସ୍ଥଳପଥରେ ହେଉଥିଲା । ପୌରାଣିକ ତଥା ଐତିହାସିକ ଗୁରୁତ୍ୱପୂର୍ଣ୍ଣ ଏହି କେଂଦୁଝର ରାଜ୍ୟର ଏକ ପବିତ୍ର ତଥା ପ୍ରଧାନ ତୀର୍ଥକ୍ଷେତ୍ର ହେଉଛି ଆନନ୍ଦପୁରର ଚନ୍ଦ୍ରତୀର୍ଥ ।

ଗବେଷକମାନଙ୍କ ମତରେ ଏହି ବୈତରଣୀ ତୀର ଦେଶରେ ଅବସ୍ଥିତ ବଉଳା କ୍ଷେତ୍ର ବା ବୈତରଣୀ ତୀର୍ଥ ପର ଶାଳନ୍ଦୀ ନଦୀ ଅବବାହିକାରେ ପ୍ରସିଦ୍ଧ ଚନ୍ଦ୍ରତୀର୍ଥ ଓ ପ୍ରାଚୀନ ଶିଳାଲେଖ ବୌଦ୍ଧ ଆଖ୍ୟା ଅବସ୍ଥିତ । ଚନ୍ଦ୍ରତୀର୍ଥ ଜୈନ ଧର୍ମ କ୍ଷେତ୍ରର ଏକ ପ୍ରଧାନ ତୀର୍ଥ ସ୍ଥାନ । ସେମାନଙ୍କ ମତରେ ପୃଥିବୀର ସର୍ବ ପ୍ରଥମ ଧର୍ମ ଜୈନଧର୍ମର ଆଦି ପ୍ରବର୍ତ୍ତକ ରୂପେ ଋଷଭଦେବଙ୍କର ଏହା ହେଉଛି ଏକ ପ୍ରଧାନ ଧର୍ମ କ୍ଷେତ୍ର । ତେଣୁ ଏହାର ନାମ ଚନ୍ଦ୍ରକ୍ଷେତ୍ର ବା ଚନ୍ଦ୍ରତୀର୍ଥ ହୋଇଅଛି । ଆନନ୍ଦପୁର କଚେରୀ ଠାରୁ ୧୫ କ: ମି: ଦୂରରେ ବଉଳା ପର୍ବତ ମଳା ଶିଖର ଦେଶରେ ଅବସ୍ଥିତ ଏହି ଚନ୍ଦ୍ରତୀର୍ଥ କ୍ଷେତ୍ରରେ ବହୁ ପ୍ରାଚୀନ ଯୁଗରୁ ଋଷଭନାଥ ଜୈନଧର୍ମ ପ୍ରଚାର କରିଥିଲେ ।

ଆନନ୍ଦପୁରର ପୋଡ଼ାଦିହିଙ୍କଡ଼ା ଗ୍ରାମରେ ପ୍ରାପ୍ତ ଏକ ମାଇଲ ପରିମିତ ଏକ ବର୍ଗାକାର ସୁବୃହତ୍ତ ଭୂମି ରହିଅଛି । ଏହାର ଅପର ପାର୍ଶ୍ୱରେ ଗୋଟିଏ ପ୍ରାଚୀନ ଦୁର୍ଗର ଧ୍ୱଂସାବଶେଷ ଦେଖାଯାଏ । ବର୍ତ୍ତମାନ ଏଠାରେ ଶତାଧିକ ଜୈନ ତୀର୍ଥଙ୍କର କାରୁକାର୍ଯ୍ୟ ପୂର୍ଣ୍ଣ ପ୍ରସ୍ତର ମୂର୍ତ୍ତି, ଯକ୍ଷ, ଯକ୍ଷଣୀ ମୂର୍ତ୍ତିମାନ ଅଯତ୍ନ ଭାବରେ ପଡ଼ି ରହିଛି । ଅନେକ ଭଗ୍ନପ୍ରାପ୍ତ ବହୁ ଜୈନ ଦେବ ଦେବୀ ମୂର୍ତ୍ତିକୁ ଆଜି ହିନ୍ଦୁମାନେ ନିଜର ଆରାଧ୍ୟ ଦେବତା ରୂପେ ପୂଜା କରୁ ଅଛନ୍ତି । ବଉଳା ପର୍ବତର ପାଦ ଦେଶରେ ଏକ ଜୈନମୂର୍ତ୍ତି ବଉଳାଶୁଣ୍ଢି ଠାକୁରାଣୀ ରୂପେ ପୂଜିତ ହୋଇ ଅଛନ୍ତି । କୁଶଳେଶ୍ୱର ଓ ବାଲୁକେଶ୍ୱର ମନ୍ଦିର ବେଢ଼ାରେ ଅନେକ ଜୈନମୂର୍ତ୍ତି ପୂଜା ପାଉ ଅଛନ୍ତି ।

ବଉଳା ପର୍ବତର ଶିଖର ଦେଶରେ ମହାବୀରଙ୍କ ମୂର୍ତ୍ତି ପୂଜା ପାଉଥିବାର ଭଗ୍ନାବଶେଷ ମଧ୍ୟ ଦେଖାଯାଏ ।

ଭୌଗଳିକ ଅବସ୍ଥିତିରୁ ଜଣାଯାଏ ଯେ କେନ୍ଦୁଝରର ବୋଉଳା ପର୍ବତ ଏକଦା ତୋଷାଳୀ ରାଜ୍ୟର ଶୈଳପୁର ନାମରେ ଏକ ପବିତ୍ର ତୀର୍ଥ ସ୍ଥାନ ଥିଲା । ତୋଷାଳୀରେ ଜୈନ୍ୟ ଋଷିମାନେ ଯେଉଁ ଗୋଟାଏ ପୋଖରୀ ଖୋଳାଇ ଥିଲେ ତାହା ପବିତ୍ର ତୀର୍ଥ ନିକଟରେ ଥିବା ନୈସର୍ଗିକ ହ୍ରଦ "କୁଦଗଡ଼ଠାରେ" ରହିଥିବା ମନେହୁଏ । ବୋଉଳା ପର୍ବତର ପ୍ରାକୃତିକ ଶୋଭା ଅତ୍ୟନ୍ତ ମନୋରମ ହୋଇ ଥିବାରୁ ଏହି ସ୍ଥାନରେ ଜୈନ ଋଷି ଋଷଭନାଥ ତୀର୍ଥକ୍ଷେତ୍ର ସ୍ଥାପନ କରିଥିବା ସ୍ୱାଭାବିକ । ଦୁଇଶତ ଫୁଟ ଉଚ୍ଚରୁ କଳ କଳ ନାଦ କରି ନିର୍ଝରଣୀ ଆତ୍ମହରା ହୋଇ ପର୍ବତର ପାଦ ଧୋଇ ଦେବା ପାଇଁ ଧାଇଁ ଯାଉଛି ନିମ୍ନକୁ । ଘନ ଅରଣ୍ୟ ପରିବେଷ୍ଟିତ ପ୍ରାକୃତିକ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ ଓ ବିଭିନ୍ନ ପଶୁ ପକ୍ଷୀମାନଙ୍କର ଏହି ବିହାର ସ୍ଥଳୀ ଅତ୍ୟନ୍ତ ମନୋରମ । ଏହିପରି ଏକ ପବିତ୍ର ଭୂମିରେ ଶୈଳପୁର ନିର୍ମିତ ହେବା ଅସମ୍ଭବ ନୁହେଁ ।

ମହାଭାରତ ଯୁଗରେ କେନ୍ଦୁଝର କୋଶଳ ରାଜ୍ୟ ନାମରେ କଥିତ ହୋଇ ସେଠାରେ ଋଷଭନାଥ ପୂଜା ପାଉଥିବା କଥା ଜଣାଯାଏ । କେନ୍ଦୁଝରର ପ୍ରାଚୀନ ନାମ କୋଶଳ ଥିବା କଥା କୁଶଳେଶ୍ୱର ମହାଦେବ ଓ କୁଶଭଦ୍ରା ନଦୀର ନାମରୁ ଅନୁମିତ ହୁଏ । ମହାଭାରତ ଯୁଗରୁ ଏହି ତୀର୍ଥକ୍ଷେତ୍ର ପ୍ରତିଷ୍ଠା ଲାଭ କରି। ଜୈନ ସାଧୁ ଋଷି ମାନଙ୍କର ଯଜ୍ଞସ୍ଥାନ ଥିବାର ପ୍ରମାଣ ସ୍ୱରୂପ ଏଠାରେ ଜାଗମରା ଗ୍ରାମ ରହିଅଛି । ଜୈନ ସାଧୁମାନେ ତୀର୍ଥଙ୍କର ନାମରେ ଖ୍ୟାତ ଥିବାରୁ ଏହି ଜୈନ ବିହାର ତୀର୍ଥକ୍ଷେତ୍ର ନାମରେ ପ୍ରସିଦ୍ଧ ଅଟେ ।

ଜୈନ ଧର୍ମକ୍ଷେତ୍ର ବୋଉଳା ପର୍ବତ ଶ୍ରେଣୀର ପାଦ ଦେଶରେ ବୈଦାଖ୍ୟା ନାମରେ ଏକ ସ୍ଥାନ ରହି ଅଛି । ଏହିଠାରେ ଗୋଟିଏ ପଥର ଦେହରେ ଶିଳାଲେଖ ରହିଅଛି । ପତ୍ନତତ୍ତ୍ୱବିତ୍ ମାନଙ୍କ ମତରେ ଏହି ଶିଳାଲେଖ ଆର୍ଯ୍ୟ ସଂସ୍କୃତିର ନିଦର୍ଶନ ବୋଲି କହିଥାନ୍ତି । ମାତ୍ର କେତେକ ଗବେଷକ ବୈଦାଖ୍ୟାକୁ ବୌଦ୍ଧ-ଆଖ୍ୟା ବୋଲି କହିଥାନ୍ତି । ଏହା ଗବେଷଣା ସାପେକ୍ଷ ।

## କପିଳେଶ୍ୱର

କେନ୍ଦୁଝର ଜିଲ୍ଲାର ଜ୍ୟୋତିପୁର ଗ୍ରାମ ପଞ୍ଚାୟତରେ କପିଳେଶ୍ୱର ବିଦ୍ୟମାନ । ପୁରାଣ ଯୁଗରେ ଏହି କପିଳେଶ୍ୱର କପିଳ ମୁନିଙ୍କର ଯୋଗାଶ୍ରମ ଥିଲା ବୋଲି, ଜନଶ୍ରୁତି ରହିଅଛି । ଏହା ଗୋଟିଏ ରମଣୀୟ ସ୍ଥାନ ।

ଅଛି । ପ୍ରାୟ ଦଶ ଏକର ଜମି ଉପରେ ଅବସ୍ଥିତ ଏକ ବର୍ତ୍ତୁଳାକାର ପଥର ଚଟାଣକୁ କପିଳେଶ୍ୱର ବୋଲାଯାଏ । ସେଠାରେ ବହୁ ଦେବ ଦେବୀଙ୍କର ଭଗ୍ନାଂଶ ଦେଖିବାକୁ ମିଳେ । ସେଠାରେ ଥିବା ବିଭିନ୍ନ ଦେବ ଦେବୀଙ୍କର ମନ୍ଦିର ନିର୍ମାଣ ପରିପାଟି ବଡ଼ ଚିତ୍ତାକର୍ଷକ ଅଟେ । ଏହାର ଜଳବାୟୁ ଅତ୍ୟନ୍ତ ସ୍ୱାସ୍ଥ୍ୟକର । ଏଠାରେ ପଥର ବକ୍ଷରେ ଗୋଟିଏ ପ୍ରାକୃତିକ ପୁଷ୍କରିଣୀ ରହିଅଛି । କାଠ ଭିତରେ ଅଗ୍ନିର ଅବସ୍ଥିତି ପରି ପଥର ବକ୍ଷରେ ଜଳ ଭଣ୍ଡାରର ଅବସ୍ଥିତି ଯେତିକି ସାତ୍ତ୍ୱିକ ସେତିକି ମଙ୍ଗଳମୟ ଅଟେ ।

କପିଳେଶ୍ୱର ଚଟାଣରେ ଅବସ୍ଥିତ "ପିହ୍ଲୁଲି ପେଟ" ନାମରେ ଗୋଟିଏ ଦେବୀସ୍ଥଳ ଅଛି । ପ୍ଲିହା ରୋଗାକ୍ରାନ୍ତ କୌଣସି ରୋଗୀ ଦେବୀଙ୍କର ପାଦୁକା ସେବନ କଲେ ରୋଗ ଉପଶମ ହୋଇଥାଏ । ତେଣୁ ଏଠାକୁ ବହୁ ପେଟ ରୋଗୀଙ୍କର ଆଗମନ ହୋଇଥାଏ ।

କପିଳେଶ୍ୱର ଚତ୍ୱର ଉପରେ ଦେବଖିର ନାମରେ ଗୋଟିଏ ପର୍ବ ପାଳିତ ହୋଇଥାଏ । ମାଘ ସପ୍ତମୀ ଦିନ ଏହି ଉତ୍ସବ ସମ୍ପାଦିତ ହୋଇଥାଏ । ଏହି ଦିନ ଜ୍ୟୋତିପୁର ଦଣ୍ଡପାଟର ପ୍ରାୟ ପ୍ରତ୍ୟେକ ପରିବାରର ପ୍ରତିନିଧିମାନେ ଅରୁଆ ଚାଉଳ, ଗୁଡ଼, ମୁଗ, ଦୁଧ, ଦହି, ଘିଅ, କାଇଣମସଲା, ହାଣ୍ଡି, କାଠ, ପ୍ରଭୃତି ଏକତ୍ର ମିଶାଇ ଦେଇ ଦେବଖିର ଖିରି ପ୍ରସ୍ତୁତ କରାଯାଇ କପିଳେଶ୍ୱରଙ୍କୁ ଭୋଗ ଦିଆଯାଇ ସମବେତ ଜନତା ଏକତ୍ର ବସି ଚଟାଣ ଉପରେ ପ୍ରସାଦ ସେବନ କରନ୍ତି । ଏହି କାର୍ଯ୍ୟ ଗଡ଼ନାୟକଙ୍କ ତତ୍ତ୍ୱାବଧାନରେ ଅନୁଷ୍ଠିତ ହୋଇଥାଏ ।

କପିଳ ଋଷିଙ୍କର କାମଧେନୁ ବଳଦା ଗାଈକୁ ବାଘ ଏହି ଚଟାଣ ଉପରେ ମାଡ଼ି ଦେଇ ଥିବାର ସଙ୍କେତ ସ୍ୱରୂପ ଏହି ପଥର ବକ୍ଷରେ ଗୋ-ଖୋଜର ଚିହ୍ନ ରହି ଅଛି ।

## ଖଲି-ଚବୁତି-ଘାଟ

ବାଡ଼ିହା ଥାନାର ସିଡ଼ଙ୍ଗି ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଫୁଲ-କଅଁଳେଇ ଗ୍ରାମ ମୁଖ୍ୟତଃ ବୈତରଣୀ ନଦୀ କୂଳରେ ଜଙ୍ଗଲ ପରିବେଷ୍ଟନୀ ମଧ୍ୟରେ ଗ୍ରାମବଧୂ ପରି ଅନ୍ତରାଳରେ ଲୁଚି ରହିଛି । ତାର ମୁଖର ଶିଶୁ ସମାନ କଲରବ ବୈତରଣୀ ନଦୀ କଳକଣ୍ଠରେ କଳ କଳ କରି ପ୍ରଖର ବେଗରେ ବହି ଯାଉଛି । ଏଠାକୁ ଯିବା ପାଇଁ ଯାନବାହୀ ବସର ବ୍ୟବସ୍ଥା ଅଛି ଓ ଏହି ଗ୍ରାମ ଜ୍ୟୋତିପୁରଠାରୁ ଅନତି ଦୂରରେ ରହିଅଛି ।

ଫୁଲ କଅଁଳେଇ ଗ୍ରାମଠାରେ ଥିବା ବୈତରଣୀ ନଦୀଘାଟ ଖଲିଚବୁତି

ଘାଟ ନାମରେ ପରିଚିତ । କଥିତ ଅଛି ମତ୍ସ୍ୟ ଦେଶରେ ପାଣ୍ଡବମାନେ ଅଜ୍ଞାତ ବନବାସ କରିବା ପୂର୍ବରୁ ଏଠାରେ ଅଳ୍ପଦିନ ରହି ପଥର ଚଟାଣ ବକ୍ଷରେ ରଖି ଭୋଜନ କରିଥିବା ଦୃଷ୍ଟାନ୍ତ ଅନୁଯାୟୀ ପଥର ବକ୍ଷରେ ଖଳି, ଚକୁଳି ଓ ଘଟର ଚିହ୍ନ ରହିଛି । ଏଣୁ ଲୋକେ ଏ ସ୍ଥାନକୁ ଖଳି-ଚକୁଳି-ଘଟ ବା ଖଳି-ଚକୁଳି-ଘାଟ ବୋଲି କହନ୍ତି ।

ଗତ ତା ୨୫ । ୧୧ । ୬୭ ରିଖ ଦିନ ସେ ଗ୍ରାମର ଜଣେ ଲୋକ ଚାଷ କରୁଥିଲା ସମୟରେ କେତେ ଗୋଟି ଦେବ ଦେବୀଙ୍କର ପଥର ମୂର୍ତ୍ତି ପାଇଥିଲେ । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ତାହା ଗବେଷଣା କରି ଏହି ପଥର ମୂର୍ତ୍ତି ଗୁଡ଼ିକ ପ୍ରାଚୀନ ପ୍ରସ୍ତର ଯୁଗର ବୋଲି କହି ଅଛନ୍ତି । ଏହି ସବୁ ମୂର୍ତ୍ତି ମଧ୍ୟରେ ଗୋଟିଏ ଛଡ଼ଭୁଜା ବନଦୁର୍ଗା ମୂର୍ତ୍ତି ମିଳି ଅଛି । ଏଥିରୁ ଅନୁମାନ ହୁଏ ଯେ, ପ୍ରାଚୀନ ପ୍ରସ୍ତର ଯୁଗରୁ ଏଠାରେ ମୂର୍ତ୍ତି ପୂଜନ ପଦ୍ଧତି ପ୍ରଚଳିତ । ଏହି ସ୍ଥାନରେ ପୁଙ୍ଖାନୁପୁଙ୍ଖ ପ୍ରତ୍ନତାତ୍ତ୍ୱିକ ଗବେଷଣା କରାଗଲେ ପ୍ରସ୍ତର ଯୁଗର ସଭ୍ୟତା ସମେତ ଭଞ୍ଜବଂଶ ସମ୍ବନ୍ଧରେ ବହୁ ଗୁପ୍ତ ତଥ୍ୟ ଜଣାପଡ଼ିବ । ଆନନ୍ଦପୁର ଓ ଜ୍ୟୋତିପୁର ରାଜ୍ୟ ପଥର ଅନତି ଦୂରରେ ଏହି ସ୍ଥାନ ଅବସ୍ଥିତ । ବରାଟଡ଼େରର ଭଗ୍ନାବଶେଷ, ଷିଙ୍ଗ ମନ୍ଦିର ଓ ଏକାଦଶ ରୁଦ୍ର ମନ୍ଦିର ଏଠାରୁ ଅଳ୍ପ ଦୂରରେ ରହିଅଛି ।

## ଶ୍ରୀ ମୃଗେଶ୍ୱର

ଶ୍ରୀ ଶ୍ରୀ ମୃଗଧର ମହାଦେବଙ୍କ ମନ୍ଦିର ଯୋଡ଼ା ବ୍ଲକ ଅନ୍ତର୍ଗତ ଦେବଝର ଗ୍ରାମର ଠାକୁରାଣୀ ଗିରିର ପାଦ ଦେଶରେ ଅବସ୍ଥିତ । ଏଠାରେ ପ୍ରବାହିତ ହୋଇ କ୍ଷୁଦ୍ର ଜଳପ୍ରପାତ ସୃଷ୍ଟି କରୁଥିବା ଗିରି ଝରଣା ମହାଦେବ ନଦୀଝର ତୀର ପ୍ରବାହମାନ । ଏହି ଗିରି ନିର୍ଝରିଣୀ ଠାକୁରାଣୀ ପର୍ବତର କୋଳରୁ ବହି ଆସି ମହାଦେବ ନଦୀଠାରେ ଶ୍ରୀ ଶ୍ରୀ ମୃଗଧର ମହାଦେବଙ୍କର ପାଦ ପ୍ରକ୍ଷାଳନ କରି ବରକଳା ଗ୍ରାମଠାରେ ସୁନା ନଦୀ ସହିତ ମିଶି ବୈତରଣୀରେ ପଡ଼ିଅଛି । ମୃଗ ମହାଦେବଙ୍କ ମନ୍ଦିର ବମଲା-ବଡ଼ବିଲ ରାସ୍ତାରେ ଅବସ୍ଥିତ ବଲେଇପଦାଠାରୁ ମାତ୍ର ୫ କି:ମି: ଦୂରରେ ଅବସ୍ଥିତ । ଏହା ବାଲେଇପଦା-ନୂଆମୁଣ୍ଡି ରାସ୍ତାର ମଧ୍ୟଦେଶରେ ଓଡ଼ିଶା ବିହାର ସୀମାନ୍ତରେ ବିଦ୍ୟମାନ ରହିଅଛି । ଏହା ଘନବନ ପରିପୂର୍ଣ୍ଣ ନିର୍ଜ୍ଜନ ସ୍ଥାନ ଅଟେ । ଏଠାରେ ଓଡ଼ିଶା ଖଣିଜ ଉନ୍ନୟନ ସଂସ୍ଥା, ସମେତ ଅନେକ ଗୁଡ଼ାଏ ଖଣି କମ୍ପାନୀ କାର୍ଯ୍ୟ କରୁ ଅଛନ୍ତି ।

ଏହି ବନ ମୃଗବନ ନାମରେ ଖ୍ୟାତ । ଏଠାରେ ମୃଗଧର ମହାଦେବଙ୍କର ସ୍ୱୟମ୍ଭୁ ଲିଙ୍ଗ ବିରାଜମାନ । ଶିବ ଏହି ବନରେ ବାସ କରୁଥିବା ସମୟରେ ମୃଗ ରୂପୀ ବ୍ରହ୍ମା ନିଜର ମୃଗୀରୂପୀ କନ୍ୟାକୁ ହରଣ କରିବାକୁ ଉଦ୍ୟମ କରୁଥିଲା

ସମୟରେ ବ୍ରହ୍ମାଙ୍କ କନ୍ୟା ସନ୍ଧ୍ୟା ଶିବଙ୍କର ଶରଣାଗତ ହେଲେ । ଶିବ ଏହି ଅନ୍ୟାୟକୁ ସହି ନପାରି ଧନୁଶର ପ୍ରହାରକରି ମୃଗରୂପୀ ବ୍ରହ୍ମାର ଶିରଚ୍ଛେଦନ କରିଥିବାରୁ ସେହି ଦିନଠାରୁ ଶିବଙ୍କର ନାମ ମୃଗଧର ଓ ବନର ନାମ ମୃଗବନ ହେଲା । ସେହି ଦିନଠାରୁ ବ୍ରହ୍ମାଙ୍କର ମୃଗୀରୂପୀ ସନ୍ଧ୍ୟା କନ୍ୟା ଏହି ମୃଗବନରେ ବାସ କରି ମୃଗଧର ମହାଦେବଙ୍କର ସେବା ପୂଜା କଲେ । ତେଣୁ ଶିବଙ୍କର ନାମ ବର୍ଣ୍ଣନାରେ ଅଛି :—

"ବନ୍ଦେ ପନ୍ନଗ ଭୂଷଣଂ ମୃଗଧରଂ ବନ୍ଦେ ପଶୂନା ପତିମ୍ ।"

ପୂର୍ବେ ଏହି ବନରେ ଶତ ଶତ ସଂଖ୍ୟାରେ ମୃଗ ତଥା ସର୍ପମାନେ ବାସ କରୁଥିଲେ ଓ ଶିବ ଏହିମାନଙ୍କୁ ପାଳନ କରି ମୃଗଧର ନାମ, ପଶୁପତି ନାମ ଓ ପନ୍ନଗ ଭୂଷଣ ଗୁଣର ସାର୍ଥକତା ପ୍ରତିପାଦନ କରି ଅଛନ୍ତି ।

ପୌରାଣିକ ଯୁଗରୁ ମର୍ତ୍ତ୍ୟପୁରରେ ଗଙ୍ଗା ଜନ୍ମ ହେବାର ଅବ୍ୟବହିତ ପୂର୍ବରୁ ଏହି ତୀର୍ଥ ସ୍ଥାନର ଉତ୍ପତ୍ତି ହୋଇଅଛି । କାରଣ ବାମନ ଜନ୍ମ ପୂର୍ବରୁ ଗଙ୍ଗା ବ୍ରହ୍ମାଙ୍କ କମଣ୍ଡଳୁ ମଧ୍ୟରେ ସଞ୍ଚିତ ଥାଇ ଭଗବାନ ବାମନ ଅବତାର ଧରି ବଳୀକୁ ନାଭିବ୍ରହ୍ମ ପାଦରେ ପାତାଳରେ ଚାପିବା ପରେ ବ୍ରହ୍ମା ସେହି ଦୁର୍ଲ୍ଲଭ ବ୍ରହ୍ମପାଦକୁ ଗଙ୍ଗା ଜଳରେ ଧୋଇ ଦେବା ସମୟରେ ଗଙ୍ଗା ବିଷ୍ଣୁ ନଖକୋଣରେ ଗୁପ୍ତ ହୋଇ ଗଲେ ମାତ୍ର ଏହି ବ୍ରହ୍ମପଦ ଧୌତ ସମୟରେ କମଣ୍ଡଳରୁ କିଛି ଗଙ୍ଗାଜଳ ଝର୍ପିପଡି ଗୁପ୍ତଗଙ୍ଗା ବା ଗୋନାସିକା ସ୍ରୋତରେ ରହି ମର୍ତ୍ତ୍ୟରେ ବୈତରଣୀ ନାମରେ ପ୍ରବାହିତ ହେଲେ । ଏହିଘଟଣାର ବାର ବ୍ରହ୍ମ ବର୍ଷ ପରେ ସୂର୍ଯ୍ୟବଂଶୀ ରାଜା ଭଗୀରଥଙ୍କର ତପସ୍ୟାରେ ସନ୍ତୋଷ ହୋଇ ଗଙ୍ଗା ବିଷ୍ଣୁ ନଖ କୋଣରୁ ଝରି ଗଙ୍ଗାଧରଙ୍କ ଜଟାରେ ରହି ହିମାଳୟ ବକ୍ଷ ଦେଶ ଦେଇ ମର୍ତ୍ତ୍ୟରେ ପ୍ରବାହିତ ହେଲେ । ଏହି କାରଣରୁ ବୈତରଣୀ ନଦୀ ଗଙ୍ଗାଠାରୁ ପବିତ୍ରତମ ଓ ବାର ବ୍ରହ୍ମ ବର୍ଷ ବୟୋଜ୍ୟେଷ୍ଠ ଅଟେ ।

ଅନୁମାନ କରାଯାଏ ଗଙ୍ଗା ଜନ୍ମ ପୂର୍ବରୁ ଶିବ ଗୋ-ବ୍ରହ୍ମହତ୍ୟା ପାତକରୁ ଉଦ୍ଧାର ପାଇବା ପାଇଁ ପତିତପାବନୀ ବୈତରଣୀ ତୀର ଦେଶରେ ଅବସ୍ଥାନ କରି ଯୋଗ ସାଧନ କରୁଥିଲେ । ମୃଗଧର ନାମ ଧାରଣ ପରେ ଶିବ ଗଙ୍ଗାଧର ନାମ ଧାରଣ କରିଥିବା ମନେ ହୁଏ । ବୈତରଣୀ ନଦୀ ଉତ୍ପତ୍ତିର ବାର ବ୍ରହ୍ମ ବର୍ଷ ପରେ ବିଷ୍ଣୁ ନଖକୋଣରୁ ଜନ୍ମ ହେବା ସମୟରେ ମୃଗଧର ମହାଦେବ ବୈତରଣୀ ତୀର୍ଥରୁ ଗୋ-ବ୍ରହ୍ମ ହତ୍ୟା ଦୋଷ ମୁକ୍ତ ହୋଇ ମସ୍ତକରେ ଗଙ୍ଗାଙ୍କୁ ଧାରଣ କରି ଗଙ୍ଗାଧର ନାମ ଧାରଣ କରିଥିଲେ ।

( ଆମ୍ଭ ରଚିତ ଶ୍ରୀ ଶ୍ରୀ ମୃଗ ମହାଦେବ ପୁସ୍ତକ ଦ୍ରଷ୍ଟବ୍ୟ )

ମହାଭାରତ ପ୍ରଭୃତିରେ ଏହି ସ୍ଥାନ ଋକ୍ଷ୍ୟାଚଳ ବା ଋକ୍ଷ୍ୟାଚଳ ନାମରେ କଥିତ । ଏହା ଆଦିମ ଅଧିବାସୀ ଅଧ୍ୟୁଷିତ ଅଞ୍ଚଳ ଅଟେ । ମୃଗ ମହାଦେବଙ୍କ ପୂଜକ ଜଣେ ଭୂୟାଁ ଅଟେ ।

## ଭୀମକୁଣ୍ଡ

ମହାଭାରତ ବର୍ଣ୍ଣନାନୁଯାୟୀ ଦ୍ୱିତୀୟ ପାଣ୍ଡବ ଭୀମସେନ ସତ୍ୟ ରକ୍ଷା କରି ବନବାସ କରୁଥିବା ସମୟରେ ବୈତରଣୀ ତୀର ଦେଶରେ ପ୍ରବେଶ କଲେ । ସେ ସ୍ନାନ କରିବା ପାଇଁ ଏଠାରେ ଜଳରେ ପ୍ରବେଶ କଲେ । ଜଳ ଅଳ୍ପ ହେବରୁ ସେ ଦୁଇ ପର୍ବତ ମଧ୍ୟ ଦେଶରେ ଶୋଇ ରହିଲାରୁ ଜଳଧାର ବନ୍ଦ ହୋଇ ଯାଇ କ୍ରମଶଃ ଗିରି ଫୋଟ ଦେଇ ପାତାଳକୁ ପ୍ରବେଶ କଲା । ତେଣୁ ଏହି ସ୍ଥାନ ଭୀମକୁଣ୍ଡ ନାମରେ ପରିଚିତ ।

ବର୍ତ୍ତମାନ ଏହିଠାରେ ଭୀମକୁଣ୍ଡ ନଦୀବନ୍ଧ ଯୋଜନା ୧୬୨ କୋଟି ଟଙ୍କା ବ୍ୟୟରେ ନିର୍ମିତ ହେବାକୁ ଯାଉଛି । ଏହା ବନ୍ୟା ନିୟନ୍ତ୍ରଣ ବିଦ୍ୟୁତ ଉତ୍ପନ୍ନ, ଜଳ ସେଚନ, ମତ୍ସ୍ୟଚାଷ ପ୍ରଭୃତି ବହୁମୁଖୀ ଯୋଜନା ଅଟେ । ଏଠାରୁ ଯେଉଁ ବିଦ୍ୟୁତ ଉତ୍ପତ୍ତି ହେବ ତାହା ଭାରତର ଅନ୍ୟ ଯୋଜନାରୁ ଉତ୍ପନ୍ନ ହେଉଥିବା ଠାରୁ ସର୍ବନିମ୍ନ ହେବ । ଏହି ଯୋଜନା ଯୋଗୁଁ ଜିଲ୍ଲାର ପ୍ରାୟ ଅର୍ଦ୍ଧାଧିକ ଉଚ୍ଚଭୂମିରେ ଜଳ ସେଚନ ହୋଇ ପାରିବ ।

## ଜଳ ପ୍ରପାତ

ଅପର କେନ୍ଦୁଝରରେ ୪ ଗୋଟି ଜଳ ପ୍ରପାତ ଦେଖିବାକୁ ମିଳେ । ଯଥା :- ବଡଘାଗରା, ସାନ ଘାଗରା, ହାଣ୍ଡିଭଙ୍ଗା ଏବଂ ଖଣ୍ଡାଧାର ।

## ଖଣ୍ଡାଧାର ଜଳ ପ୍ରପାତ

ଜଳ ପ୍ରପାତ ମୌଳ କେନ୍ଦୁଝର ଗଡ଼ର ଉତ୍ତର ପଶ୍ଚିମରେ ପ୍ରାୟ ୫୦ କି: ମି: ଦୂରରେ କେନ୍ଦୁଝର ବଣାଇ ସୀମାରେ ୩୦୦୦ ଫୁଟ ଉଚ୍ଚତା ବିଶିଷ୍ଟ ଖଣ୍ଡାଧାର ଜଳ ପ୍ରପାତ ବିଦ୍ୟମାନ । ହେବେ ଶିଖରେ ୧୫୦ ଫୁଟ ତଳେ ଗୋଟିଏ ସମତଳ ସ୍ଥାନରେ ଶିବ ମନ୍ଦିର, ସାଧୁ ଆଶ୍ରମ ଓ ଅଖଣ୍ଡ ଅଗ୍ନିକୁଣ୍ଡ ରହିଅଛି । ବର୍ତ୍ତମାନ ଏଠାରେ ଲୁହା ଖଣି କାର୍ଯ୍ୟ ହେଉଅଛି ।

କାଦକଲା ଗ୍ରାମଠାରେ ଏହି ଶୁଭ୍ରଭୁଙ୍ଗ ମଳଶୈଳ ଶ୍ରେଣୀର ଶିଖର ହେଉରୁ ପାଦଦେଶ ପର୍ଯ୍ୟନ୍ତ ହସ୍ତୀ ଶୁଣ୍ଡାକୃତି ସ୍ଫଟିକୋଜ୍ଜ୍ୱଳ ଜଳଧାର ଦର୍ଶନରେ ଦର୍ଶକର ହୃଦୟ ଆନନ୍ଦୋଲ୍ଲାସରେ ଆପ୍ଲୁତ ହୋଇଯାଏ । ଏହାର ସୁନ୍ଦର ସୌନ୍ଦର୍ଯ୍ୟ ଓ ଏକାକୀତାରେ ଦର୍ଶକ ନିଜର ଅସ୍ତିତ୍ୱ ଭୁଲି ଯିବା ସ୍ୱାଭାବିକ ଅଟେ । ଦର୍ଶକ

ନିର୍ନିମେଷ ନୟନରେ ଆନନ୍ଦବିଭୋର ହୋଇ ଉଠେ । ବାୟୁ ସଞ୍ଚାଳିତ ଶୀକର କଣି ସ୍ପର୍ଶରେ ଶରୀର ଅର୍ଦ୍ଧ ସ୍ନାତ ହୋଇଯାଏ । ଦୂରରୁ ଦୃଷ୍ଟିପାତ କଲେ ଏହି ଜଳ ପ୍ରପାତ ଖଣ୍ଡାଧାର ସଦୃଶ ଦେଖା ଯିବାରୁ ଏହାକୁ ଖଣ୍ଡାଧାର ଜଳ ପ୍ରପାତ ବୋଲଯାଏ । ଖଣ୍ଡାଧାର ପର୍ବତରୁ ଏହା ବାହାରି ଅଛି । ପ୍ରାୟ ୩୦୦ ଫୁଟ ଉପରୁ ପାଣି ନିମ୍ନ ଦେଶରେ କୁଣ୍ଡରେ ପଡୁଅଛି । ସେଠାରୁ ଏହି ପାଣି ବୈତରଣୀ ନଦୀ ସଙ୍ଗେ ମିଶୁଅଛି । ଏହା ହିନ୍ଦୁ ମାନଙ୍କର ଗୋଟିଏ ତୀର୍ଥ ସ୍ଥାନ ଓ ଏଠାରେ ସ୍ନାନ କଲେ ସେମାନେ ନିଜକୁ ପବିତ୍ର ମନେ କରନ୍ତି । ଖଣ୍ଡାଧାର ପର୍ବତର ଉପରଭାଗ ସମତଳ । ସେଠାରେ ବର୍ଷର ସବୁ ସମୟରେ ଜଳ ଦେଖିବାକୁ ମିଳେ ଏହି ଜଳ ପର୍ବତ ମଧ୍ୟ ଦେଇ କିଛି ଦୂରରେ ଦେଖା ଦେଇ ତଳେ ପଡୁଅଛି । ସତେଅବା ଶିବ ଜଟା ଦେଇ ଗଙ୍ଗା ମୁକ୍ତଳ ଧାରରେ ନିମ୍ନକୁ ଖସି ପଡୁଛନ୍ତି । ପ୍ରାୟ ୪୦୦ ଫୁଟ ଉଚ୍ଚ ପ୍ରାକୃତିକ ପ୍ରସ୍ତର ବକ୍ଷରୁ ଗୋଟିଏ କ୍ଷୁଦ୍ର ଜଳଧାର ନିର୍ଗତ ହେଉଥିବାରୁ ସେଥିରେ ବିଶେଷ ଭାବରେ ପବନ ଧରି ଜଳଧାର ତଳକୁ ଆସିବା ବେଳକୁ ତାହା ବର୍ଷା ଜଳ ସଦୃଶ କ୍ଷୁଦ୍ର କଣାରେ ପରିଣତ ହୋଇଯାଏ । କିଛି କିଛି ବ୍ୟବଧାନରେ ଭୁହାକୁ ଭୁହା ଜଳ ପ୍ରବାହିତ ହୋଇ ନିମ୍ନ ଦେଶରେ ସ୍ନାନ କରୁଥିବା ଲୋକର ଦେହରେ ପଡ଼ିଲେ ତାହା ସୂଚୀବେଧ ସଦୃଶ ଅନୁଭୂତ ହୁଏ । ମେଘ ବିମୁକ୍ତ ଆକାଶରେ ସୂର୍ଯ୍ୟରଶ୍ମି ଶିକରରେ ପ୍ରତିଫଳିତ ହୋଇ ସହସ୍ର ସଂଖ୍ୟାରେ ଶକ୍ରଧନୁର ଶୋଭା ବୃଦ୍ଧି କରିଥାଏ । ଚିର ହାସ୍ୟମୟୀ ସବୁଜ ବନାନୀ, ମେଘମେଦୁର ବା ମୁକ୍ତ ନିର୍ମଳାକାଶ, ନୀଳ ପର୍ବତ ଶ୍ରେଣୀର ସବୁଜ ଶୋଭା ସ୍ବଚ୍ଛ ଜଳଧାର ମଧ୍ୟରେ ଇନ୍ଦ୍ରଧନୁର ରହସ୍ୟମୟ ପ୍ରକଟ ମଧ୍ୟରେ ଭୀମଭୟଙ୍କର ଗର୍ଜ୍ଜନ ଅବର୍ଣ୍ଣନୀୟ ଅଟେ । ଧନ୍ୟ ସେହି ସ୍ରଷ୍ଟା ଯେ ତାର ଏହି ଅବର୍ଣ୍ଣନୀୟ ଶରୀର ନିର୍ମାଣ କରି ଅଛନ୍ତି । ମରଣଶୀଳ ମନୁଷ୍ୟ ଏହି ଶିକରକଣର ସ୍ପର୍ଶ ପାଇ ତାହାକୁ ଅସହ୍ୟ ମନେ କରି ଦୂରକୁ ଚାଲି ଯାଏ । କିନ୍ତୁ ଏହି ପାଷାଣ ଅହରହ ତାର ପ୍ରେମ ରସ ଗ୍ରହଣରେ ନୈପୁଣ ଗ୍ରାହକତା ଦେଖାଇ ନୀରବରେ ଶୋଇ ରହିଛି । ପାଷାଣ ବକ୍ଷରେ ରସଧାର ବାସ୍ତବିକ ଅତୀବ ମିଳନ ଅଟେ ।

ହେ ! ପ୍ରେମିକ ପ୍ରପାତ ତୁମେ ତୁମ ସାଧନାରେ ନିମଜ୍ଜିତ ଥାଇ ମଧ୍ୟ କ୍ଷିପ୍ତ ଉନ୍ମାଦ ମାନବକୁ ତୁମର ଶୀକରସ୍ପୃଷ୍ଟ କୋଳକୁ ଟାଣି ଆଣି ନବ ଧର୍ମରେ ଦୀକ୍ଷିତ କରି ଛାଡ଼ ଦେଉଛ । କେତେ ତୁମର ସମ୍ପଦ, ମାତ୍ର କେତେ ତୁମର ଦୈନ୍ୟ । ଅଚଳ ତୁମକୁ ଶିଖରରେ ସ୍ଥାନ ଦେଲା ବୋଲି ତୁମେ ସ୍ବଚ୍ଛନ୍ଦରେ ଅବତରଣ କରି ତାର ପଦ ପ୍ରକ୍ଷାଳନ କରୁଅଛ । ଉପକାରର ପ୍ରତ୍ୟୁପକାର କରିବା ଧର୍ମରେ ଶିକ୍ଷା ଦେଉଅଛ । ରହସ୍ୟମୟୀ ପ୍ରକୃତିର ସେହି ଅଭିନବ ନୀଡ଼ସ୍ଥଳୀ ଛାଡ଼ି ଆସିବାକୁ କାହାର ବା ମନ ବଳିବ ?

"ମନର ବିଷୟ ନୁହେଁ ଏ ଛବି ?
ହୃଦୟ କେବଳ ପାରେ ଅନୁଭବି ।"
"ଖଣ୍ଡାଧାର ଚଣ୍ଡ ପ୍ରପାତ ଶବ୍ଦେ ଝଙ୍କାରିତ ଚର୍ଣ୍ଣିଧାର
ଅଟଇ ଯେ ସ୍ଥଳୀ ବୈତରଣୀଙ୍କର ନର୍ତ୍ତନ ସୂତିକା ଗାର ।"

## ବଡଘାଗରା

ମାଛକାନ୍ଦଣା ନଦୀ ବହି ଆସୁ ଆସୁ ନିଜଗଡର ପଶ୍ଚିମ ଦିଗରେ ପ୍ରାୟ ୩ ମାଇଲ ଦୂରରେ ଦୁଇ ଗୋଟି ଜଳ ପ୍ରପାତ ସୃଷ୍ଟି କରିଅଛି । ସେ ଦୁଇଟିର ନାମ ବଡ଼ଘାଗରା ଓ ସାନଘାଗରା । ଉଭୟ ଘାଗରା ନିକଟରେ ଜଳ ଖୁବ୍ ଉଚ୍ଚରୁ ତଳକୁ ପଡିବା ଯୋଗୁଁ ଜଳ ପ୍ରପାତର ସୃଷ୍ଟି ହୋଇଅଛି ।

## ସାନଘାଗରା

ପ୍ରକୃତିପ୍ରିୟ କେଁନ୍ଦୁଝରର ଉତ୍ତୁଙ୍ଗ ଗିରିମାଳା ଦିଗନ୍ତ ବ୍ୟାପୀ ଅରଣ୍ୟାନୀ, କଳ କଳ ନିନାଦିନୀ ଗିରି ନିର୍ଝରିଣୀ, ରମଣୀୟ ଜଳ ପ୍ରପାତ ସାହିତ୍ୟ ସମ୍ପଦ ଅଟେ ।

କେଁନ୍ଦୁଝର ଗଡ଼ ନିକଟରେ ସାନଘାଗରା ଜଳ ପ୍ରପାତ ଅବସ୍ଥିତ । ଗୋବର୍ଦ୍ଧ ପାହାଡର ସନ୍ନିକଟରେ ବର୍ତ୍ତମାନ ପୁରୁଣା ଓ ଆଁ ପାଖ ଦେଇ ମାଦରାଜ ରାସ୍ତା ଯାଇଅଛି । ରାସ୍ତାର ଦୁଇ ଦିଗରେ ପ୍ରକୃତି ରାଣୀ ଚିତ୍ରି ଶ୍ୟାମଳ ଶୋଭା ଭଣ୍ଡାର । ସ୍ଥାନେ ସ୍ଥାନେ ପୁଷ୍ପିତ ଲତାଗୁଳ୍ମ ଗୁଡିକ ନାନା-ପୁଷ୍ପବର୍ଣ୍ଣ ରୂପେ କ୍ଲାନ୍ତ ପଥିକକୁ ନିର୍ମଳ ଗୁଚ୍ଛ ଉପହାର ଦେଇ ସନ୍ତୋଷ କରନ୍ତି ।

ସାନଘାଗରା ଜିଲ୍ଲା ମଧ୍ୟରେ ଗୋଟିଏ ମନୋରମ ଜଳପ୍ରପାତ ଅଟେ । ତାହାକୁ ଘାଗରା ବୋଲି କହିବାର ଅର୍ଥ ହେଉଛି, ଏହା ବେଦ "ଘର୍ଘର" ଶବ୍ଦରୁ ଉତ୍ପତ୍ତି ହୋଇଅଛି । ପ୍ରାୟ ୯୦ ଫୁଟ ଉଚ୍ଚରୁ ମାଛକାନ୍ଦଣା ନଦୀର ଜଳ୍କ୍ଷିତ ବକ୍ଷ ହୋଇଣ କରି ଶତଧାରରେ ପ୍ରବାହିତ ଜଳଧାରକୁ ସାନଘାଗରା ବୋଲାଯାଏ ।

ଅସ୍ତଗାମୀ ସୂର୍ଯ୍ୟର ରଶ୍ମି କିରଣ ସ୍ପର୍ଶରେ ଶ୍ୟାମଳ ବନାନୀ ଶୋଭା ଅବର୍ଣ୍ଣନୀୟ ଅଟେ । ତନ୍ତ୍ୟା ପ୍ରପାତରେ ସହସ୍ର ସଂଖ୍ୟାରେ ନର୍ତ୍ତନଶୀଳ ସୂର୍ଯ୍ୟ ପ୍ରତିବିମ୍ବ ଦେଖାଯାଏ । ସେହିପରି ବଡଘାଗରାର ସୌନ୍ଦର୍ଯ୍ୟ ଅତ୍ୟନ୍ତ ମନୋରମ ଅଟେ ।

## ହାଣ୍ଡିଭଙ୍ଗା ଜଳ ପ୍ରପାତ

ପ୍ରପାତ ମାଳମା କେଂଦୁଝରର ଜଣୁହାର ହେଉଛି ନୂତନ ଭାବରେ ଧରା ପଡ଼ିଥିବା ହାଣ୍ଡିଭଙ୍ଗା ଜଳପ୍ରପାତ । ଯୋଡ଼ା ବ୍ଲକ ଅନ୍ତର୍ଗତ ବଡ଼ଜଳଦା ଗ୍ରାମ-ପଞ୍ଚାୟତର ହାଣ୍ଡିଭଙ୍ଗା ନାମକ ଗ୍ରାମରେ ଅବସ୍ଥିତ ଅଝୁଙ୍ଗ କାଳିଆ ପର୍ବତର ବକ୍ଷ ଦେଶରେ ଘନ ଅରଣ୍ୟ ମଧ୍ୟରେ ଏହା ଗୁପ୍ତରେ ରହିଅଛି । ପ୍ରସିଦ୍ଧ ଗୁରୁଡ଼ା ଖଣି ହାଣ୍ଡିଭଙ୍ଗା ଜଳପ୍ରପାତର ନିକଟରେ ଅବସ୍ଥିତ । ସୁନ୍ଦରଗଡ଼ ଜିଲ୍ଲାରୁ ପ୍ରବାହିତ ଏକ ସୁନ୍ଦର ଗିରି ନିର୍ଝରଣୀ ଝର ଝର ଗତିରେ ବହି ଆସି କାଳିଆ ପର୍ବତର ବକ୍ଷ ବିଦାରଣ କରି ଘର୍ଘର ନାଦ କରି ପ୍ରାୟ ୩୦୦ ଫୁଟ ଉଚ୍ଚରୁ କୁଣ୍ଡ ମୋଟ ଜଳଧାର ନିମ୍ନ ଦେଶରେ ପଡ଼ୁଅଛି । ପ୍ରପାତର ଜଳ ଯେଉଁଠାରେ ପଡ଼ୁଅଛି ତାହା ପ୍ରସ୍ତର ବକ୍ଷରେ ପ୍ରାୟ ପାତାଳକୁ ଭେଦ କରିଅଛି । ଶୁଣାଯାଏ ଏହି କୁଣ୍ଡ ଭିତରେ ପ୍ରାୟ କେବେ ସମୟରେ ଏକ ସୁବିଶାଳ କଚ୍ଛପ ଦେଖାଯାଏ । ଲୋକେ ଏହାକୁ ଦେବୀ ଦର୍ଶନ ବୋଲି ବିଶ୍ୱାସ କରନ୍ତି । ଜଳପ୍ରପାତର ଜଳକୁ ଧରି ରଖିବା ପାଇଁ ହାଣ୍ଡି ପାତିଲେ ତାହା ଜଳର ପ୍ରଖର ଘାତରେ ଭାଙ୍ଗି ଯାଉଥିବାରୁ ଜଳ ପ୍ରପାତ ଓ ଗ୍ରାମର ନାମ ହାଣ୍ଡିଭଙ୍ଗା ହୋଇଅଛି । ହାଣ୍ଡିଭଙ୍ଗା ଗ୍ରାମଟିଏ ଜନ ଅଧ୍ୟୁଷିତ ଜଙ୍ଗଲ ଗ୍ରାମ ଅଟେ । ଏହି ଜଳ ପ୍ରପାତର ପ୍ରଖର ଜଳଧାର ସାନକଳାମାଟି ଗ୍ରାମ ଦେଇ ଦୁବୁନା ଖଣିର ଭିତରେ ପ୍ରବେଶ କରି ନୟାଗଡ଼ ଗ୍ରାମଠାରେ ବୈତରଣୀ ନଦୀ ସହିତ ମିଶିଅଛି ।

ପ୍ରପାତ ମାଳମା କେଂଦୁଝରର ଖଣ୍ଡାଧାର ଜଳ ପ୍ରପାତଠାରୁ ହାଣ୍ଡିଭଙ୍ଗା ଜଳ ପ୍ରପାତର ପ୍ରାକୃତିକ ଶୋଭା, ନୈସର୍ଗିକ ଅରଣ୍ୟଶ୍ରୀ, ଅଧିକ ମନୋରମ ଓ ଉପଭୋଗ୍ୟ ଅଟେ । ଏଠାକାର ପ୍ରାକୃତିକ ଶୋଭା, ଚଳଚିତ୍ର ଶିଳ୍ପ ପ୍ରତି ଏକ ଲାଭଜନକ ସ୍ଥାନ ଅଟେ । ଅଦ୍ଭୁତ ଆଶ୍ଚର୍ଯ୍ୟ ଓ ବିସ୍ମୟର କଥା ଯେ ଘନ ଅରଣ୍ୟ ମଧ୍ୟରେ ଅବସ୍ଥିତ ଏହି ଗିରି ପୋତର ଶୀର୍ଷ ଭାଗରେ ୩୦୦ ଫୁଟ ଉଚ୍ଚରେ ଅବସ୍ଥିତ ଅବବାହିକା କଦଳୀ, ଆମ୍ବ, ପଣସ, ଲିଚୁଡ଼, ଗୁବ, ଦାଲିମ୍ବ ପ୍ରଭୃତି ଫୁଲ ଫଳ ଉପବନ ଶୋଭିତ ଅଟେ । ବିଭିନ୍ନ ବନ୍ୟ ଜନ୍ତୁଙ୍କର ଜଳ ଘାଟ । ଏହି ସ୍ଥାନ ଯୋଗିକ ଭକ୍ତଙ୍କର ସେବକ ଆଶ୍ୱସ୍ତିର ଆଶ୍ରମ ଅଟେ । ଏହି ସ୍ଥାନର ଉତ୍ତରୋତ୍ତର ଉନ୍ନତି ଓ ଦର୍ଶନୀୟ ସ୍ଥାନ ରୂପେ ସଂରକ୍ଷିତ ହେବା ଉଚିତ ।

## ଠେଙ୍କିଆଡିହା

ଚଂପୁଆ ସବଡିଭିଜନ ଅନ୍ତର୍ଗତ ଚମକପୁର ଗ୍ରାମର ଅପର ପାର୍ଶ୍ୱରେ ବୈତରଣୀ ତୀରରେ ଠେଙ୍କିଆଡ଼ିହା ଜିଲ୍ଲାର ଅନ୍ୟତମ ପ୍ରତ୍ନତାତ୍ତ୍ୱିକ କ୍ଷେତ୍ର ଅଟେ ।

ଏହି ସ୍ଥାନ ବୈତରଣୀ ନଦୀର ତୀର ଦେଶରେ ଏକ ବିରାଟ ନଦୀ ପଠା ଉପରେ ଅବସ୍ଥିତ । ଏଠାରେ ଛେଳଆଉଡ଼ା ନାମରେ କୌଣସି ଗ୍ରାମ ନାହିଁ । ଏହା ଏକ ନିର୍ଜନ ବାଲୁକା ପ୍ରାନ୍ତର ଅଟେ । ଏଠାକୁ ଯିବା ପାଇଁ ଶମିଳ ବଡ଼ବିଲ ରାସ୍ତାରେ ଅବସ୍ଥିତ ବେଲଇପଦାଠାରୁ ଦକ୍ଷିଣକୁ ଗୋଟିଏ ଗାଡ଼ିଚଲା ରାସ୍ତା ଯାଇ ଅଛି । ପଥ ମଧ୍ୟରେ ସୁନା ନାମକ ଗିରିନିର୍ଝରିଣୀ ଅତିକ୍ରମ କରିବାକୁ ପଡ଼ିଥାଏ । ଏହା ବେଲେଇପଦାଠାରୁ ପ୍ରାୟ ୫ କି:ମି: ଦୂରରେ ଅବସ୍ଥିତ ।

ଛେଳଆଉଡ଼ାଠାରେ ଏକ ବିସ୍ତୀର୍ଣ୍ଣ ବାଲୁକା ପ୍ରାନ୍ତରରେ ପ୍ରାଚୀନ ଯୁଗର ବହୁ ଇଟାପଥର ଖଣ୍ଡ ଉନ୍ନତ କଳା ସମ୍ପନ୍ନ ଦେବାଦେବୀଙ୍କ ପ୍ରତିମା ବିକ୍ଷିପ୍ତ ଭାବରେ ପଡ଼ି ରହିଅଛି । ଏହି ଭଗ୍ନ ପ୍ରତିମା ଗୁଡ଼ିକର ନିର୍ମାଣ ପରିପାଟୀ ପୁରୀ, ଭୁବନେଶ୍ୱରରେ ଥିବା ମୂର୍ତ୍ତି ଗୁଡ଼ିକ ପରି ଅତ୍ୟନ୍ତ ସୁନ୍ଦର ଅଟେ । ଏଠାରେ ବିକ୍ଷିପ୍ତ ହୋଇ ପଡ଼ିଥିବା ବୃହତ ପଥର ବକ୍ଷରେ ଏକାଧିକ ଶିଳାଲେଖ ଲେଖା ଥିବାର ଦେଖାଯାଏ । ଏହି ସ୍ଥାନରେ ସବଂସ ବୃହତ୍ ଇଷ୍ଟକ ସ୍ତୂପମାନ ରହି-ଥିବାର ଦେଖାଯାଏ । ଏହି ସ୍ଥାନ ବର୍ତ୍ତମାନ ସୁଦ୍ଧା ରାଜ୍ୟ ସରକାରଙ୍କର ପ୍ରତ୍ନତତ୍ତ୍ୱ ବିଭାଗର ଦୃଷ୍ଟି ଗୋଚରକୁ ଆସି ନଥିବାରୁ ଏଠାରେ ପଡ଼ିଥିବା ଇଟା ପଥର ଗୁଡ଼ିକୁ ଗ୍ରାମବାସୀମାନେ ବୋହି ନେଇ ଘର ତିଆର କାର୍ଯ୍ୟରେ ଲଗାଇ ଅଛନ୍ତି । ଏଠାରେ ଭୀମକାଣ୍ଡ ନାମରେ ଏକାଧିକ ବର୍ତ୍ତୁଳାକାର ପଥର ଖଣ୍ଡମାନ ପ୍ରାନ୍ତରର ଚତୁର୍ଦ୍ଦିଗରେ ପୋତା ହୋଇ ରହିଅଛି । ଏହା ଦ୍ୱାରା ଏହି ସ୍ଥାନର ଚତୁଃସୀମା ମଧ୍ୟ ନିର୍ଦ୍ଦିଷ୍ଟ ହୋଇ ପାରୁଛି । ପୂର୍ବରୁ ଏଠାରେ ଥିବା ଗୋଟିଏ ଶିବଲିଙ୍ଗଙ୍କୁ ଏବେ ଗ୍ରାମବାସୀମାନେ ଗୋଟିଏ କ୍ଷୁଦ୍ର ମନ୍ଦିର ନିର୍ମାଣ କରି ସ୍ଥାପନ କରି ଅଛନ୍ତି । ଏହି ଶିବଙ୍କର ନାମ ଧବଳେଶ୍ୱର ଅଟେ । ମକର ଦିନ ଏଠାରେ ଗୋଟିଏ ମେଳା ହୋଇଥାଏ । ବର୍ତ୍ତମାନ ପର୍ଯ୍ୟନ୍ତ ଲୋକଲୋଚନର ଅନ୍ତରାଳରେ ରହିଥିବା ଏହି ଛେଳଆଉଡ଼ା ସ୍ଥାନର ପ୍ରତ୍ନତାତ୍ତ୍ୱିକ ଗବେଷଣା କରାଗଲେ କେନ୍ଦୁଝର ରାଜ୍ୟ ଓ ଭଞ୍ଜବଂଶ ସମ୍ବନ୍ଧରେ ଯେ ବହୁ ତଥ୍ୟ ପ୍ରକାଶ ପାଇବ ଏକଥା ନିଶ୍ଚିତ ସତ୍ୟ ଅଟେ । ଏଥିପାଇଁ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଉଚିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବାକୁ ଆମ୍ଭେ ନିବେଦନ କରୁଅଛୁ ।

## ଧାନବେଣୀ

କେନ୍ଦୁଝର ଜିଲ୍ଲାର ସଦର ସବ୍‌ଡିଭିଜନ ଅନ୍ତର୍ଗତ ଖିରେଇଟାଙ୍ଗିରି ଗ୍ରାମର ପାର୍ଶ୍ୱ ଦେଶରେ ଧାନବେଣୀ ପର୍ବତ ଅବସ୍ଥିତ । ପର୍ବତଟି ବୃକ୍ଷଲତା ଶୂନ୍ୟ ଗୋଟିଏ ଗୋଲାକାର ଟାଙ୍ଗର ଅଟେ । ଏହାର ଉଚ୍ଚତା ପ୍ରାୟ ୫୦୦ ଫୁଟ ହେବ । ସମଗ୍ର ଟାଙ୍ଗରଟି ଗୋଟିଏ ପଥର ଓ ଏହାର ପରିଧି ପ୍ରାୟ ପାଞ୍ଚ କିଲୋମିଟର ହେବ । ଏହି ଟାଙ୍ଗରର ଚତୁଃପାର୍ଶ୍ୱ ଜଳାର୍ଣ୍ଣବ ଓ ଜଙ୍ଗଲ ପୂର୍ଣ୍ଣ । ଶୁକ୍ଳବର୍ଣ୍ଣ

ଦଧିଭାଣ୍ଡ ମଧ୍ୟରେ ଖୁଆ ଦଣ୍ଡ ଶୋଭା ପାଇଲା ପରି ଚତୁର୍ଦ୍ଦିଗ ଜଳପୂର୍ଣ୍ଣ ଧରା ସ୍ତରରେ ଧାନକେଣୀ ପର୍ବତର ଶୋଭା ଖୁଆଦଣ୍ଡ ପରି ଦୃଶ୍ୟମାନ ଅଟେ । ଏହି ପର୍ବତର ଶୀର୍ଷ ଦେଶରେ ଦଣ୍ଡାୟମାନ ହୋଇ ଅସ୍ତଗାମୀ ସୂର୍ଯ୍ୟଙ୍କର ଦର୍ଶନ କରାଯାଇଥାଏ । ତେଣୁ ଏହି ପର୍ବତର ଶୀର୍ଷ ଦେଶରେ ଅଲେଖ ନିରଞ୍ଜନ ପରମବ୍ରହ୍ମଙ୍କର ନିର୍ଗୁଣ ମଠ ସ୍ଥାପିତ ହୋଇଅଛି । ବିଶାଳ ବର୍ତ୍ତୁଳାକାର ଟାଙ୍ଗର ବକ୍ଷରେ ସ୍ୱଚ୍ଛ ଜଳଭଣ୍ଡାର ଓ ନିର୍ଗୁଣ ଉପାସନା ମନ୍ଦିର ରହିଅଛି । ସେଠାରେ ବଳ୍କଳୀ ବାବାଜୀମାନେ ଅବସ୍ଥାନ କରି ନିରାକାର ପ୍ରଭୁଙ୍କର ଉପାସନା କରୁଥିବାରୁ ଏହି ସ୍ଥାନ ଅଲେଖ ଧର୍ମ ପ୍ରଚାର କେନ୍ଦ୍ର ଅଟେ । ଏଠାରେ ସଂସାର ତ୍ୟାଗୀ ଅବସ୍ଥାନ କରି ନିରଞ୍ଜନ ଧ୍ୟାନମଗ୍ନ ହେବାର ଉପଯୁକ୍ତ ସ୍ଥାନ ଅଟେ । ଏଠାରେ ପ୍ରତିବର୍ଷ ଅଗ୍ରହ୍ରବ ଅବସରେ ଗୋଟିଏ ଅଲେଖ ମେଳା ଅନୁଷ୍ଠିତ ହୋଇଥାଏ । ବଳ୍କଳୀମାନେ ଶତଶତ ସଂଖ୍ୟାରେ ଧୁନି ଲଗାଇ ମହିମା ଧର୍ମ ଭଜନ କୀର୍ତ୍ତନ କରି ରାତି ଉଜାଗର ରହନ୍ତି ।

ଭାରତର ଅନ୍ୟତମ ଲୋକପ୍ରିୟ ଧର୍ମ ମହିମା ଧର୍ମ ବା ଅଲେଖ ଧର୍ମ ଢେଙ୍କାନାଳର ଯୋରନ୍ଦାଠାରେ ଜନ୍ମଲାଭ କରିଥିଲା । ଏହି ଧର୍ମର ପ୍ରତିଷ୍ଠାତା ମହିମାସ୍ୱାମୀ ନିର୍ଗୁଣ ବ୍ରହ୍ମବାଦ ପ୍ରଚାର ପାଇଁ ଭୀମଭୋଇ ନାମକ ଜଣେ କନ୍ଧଙ୍କୁ ଆଜ୍ଞା ଦେଇଥିଲେ । ଅଲେଖ ଧର୍ମର ନିୟମ ଅନୁଯାୟୀ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଧର୍ମଦୀକ୍ଷା ଦେବାର ବ୍ୟବସ୍ଥା ଥିଲେହେଁ ପରମ୍ପରାରେ ପରିଚାଳିତ ରଜା, ବିପ୍ର, ନାପିତ, ବ୍ରହ୍ମପୁତ୍ର ଓ ରଜକକୁ ଦୀକ୍ଷା ଦେବା କିମ୍ବା ଭିକ୍ଷା ଗ୍ରହଣ କରିବା ନିଷେଧ କରାଯାଇ ଥିବାରୁ ଏହି ଧର୍ମ ଯେ ସାର୍ବଜନୀନ ନୁହେଁ ଏ କଥା ସତ୍ୟ ଅଟେ । ଏହି କାରଣରୁ ଅଲେଖ ଧର୍ମ ବୌଦ୍ଧ ଧର୍ମର ପରବର୍ତ୍ତୀ ରୂପାନ୍ତର ହୋଇଥିଲେ ମଧ୍ୟ ଏହା ସର୍ବଲୋକ ଧର୍ମ ନୁହେଁ । ଏହି ଧର୍ମରେ ଜନ୍ମାନ୍ତର ବାଦ, କର୍ମ ଫଳରେ ବିଶ୍ୱାସ ଓ ଏକେଶ୍ୱରବାଦ ଉପରେ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ସଗୁଣ ବ୍ରହ୍ମବାଦକୁ ଗ୍ରହଣ କରାଯାଇ ନାହିଁ । ଏପରିକି ଅଲେଖ ଧର୍ମରେ ଜଗନ୍ନାଥ ଦର୍ଶନ ଓ ମହାପ୍ରସାଦ ସେବନକୁ ବାରଣ କରାଯାଇଅଛି । ଏହି ଧର୍ମ ଯେତେ ସରଳ ଓ ତାତ୍ତ୍ୱିକ ହେଲେ ମଧ୍ୟ ଯେହେତୁ ଏଥିରେ ଓଡ଼ିଆ ଜାତିର ପରମ ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥଙ୍କ ପ୍ରତି ଆକ୍ଷେପୋକ୍ତି କରାଯାଇଛି ସେହେତୁ ଏହି ଧର୍ମକୁ ଓଡ଼ିଶାର ଜାତୀୟ ଧର୍ମ ରୂପେ ଗ୍ରହଣ କରାଯାଇ ନାହିଁ । ମାତ୍ର ଅଲେଖ ଧର୍ମରେ ଜାତିଭେଦ ପ୍ରତି ଧ୍ୟାନ ଦିଆଯାଇ ଥିବାରୁ ଏହା ଯେ ଓଡ଼ିଶାର ଅଧିକସ୍ତୁ ଲୋକପ୍ରିୟ ଧର୍ମ ଏଥିରେ ସନ୍ଦେହ ନାହିଁ । ତେଣୁ କେନ୍ଦୁଝରର ସର୍ବତ୍ର ଅଲେଖ ଟୁଙ୍ଗୀମାନ ରହିଅଛି । ଅତାସାହି, ନଦୁଆଁର ଟୁଙ୍ଗୀ ସେମାନଙ୍କ ମଧ୍ୟରେ ପ୍ରଧାନ ଅଟେ ।

# ଭଞ୍ଜଭୂମି କେନ୍ଦୁଝରର ପ୍ରତ୍ନତାତ୍ତ୍ୱିକ ପ୍ରସିଦ୍ଧି

ଉତ୍କଳର ପୂର୍ବାଞ୍ଚଳ ଓ ଦକ୍ଷିଣାଞ୍ଚଳର କଳା, ସ୍ଥାପତ୍ୟ, ଐତିହ୍ୟ ସମଗ୍ର ଦେଶର ଦୃଷ୍ଟି ଆକର୍ଷଣ କରି ଥିଲେହେଁ ଉତ୍ତରାଞ୍ଚଳଯେ ସମୁନ୍ନତ କଳା ସ୍ଥାପତ୍ୟରେ ପରିପୂର୍ଣ୍ଣ ଏହା ନିଶ୍ଚିତ ରୂପେ ଜଣା ଯାଇଛି । ଉତ୍ତର ଓଡ଼ିଶାର ଉତ୍ତର କବାଟ ରୂପେ ଅବସ୍ଥିତ ଆଧୁନିକ ବଣେଇ, କେନ୍ଦୁଝର, ସିଂହଭୂମି ଓ ମୟୂରଭଞ୍ଜ ଜିଲ୍ଲା ଗୁଡ଼ିକୁ ନେଇ ଗଠିତ ହୋଇ ଥିବା ପ୍ରାଚୀନ ରାଜ୍ୟ "ଭଞ୍ଜଭୂମି" ଅନ୍ତର୍ଗତ କେନ୍ଦୁଝର ଜିଲ୍ଲାର ଅସନପାଟ, ସୀତାବିଞ୍ଜି ଓ ବଇଦାଖିଆ ପ୍ରଭୃତି ଶିଳାଭିଲେଖ ଓ ଶୈଳ ଚିତ୍ରାଙ୍କନ ଉଲ୍ଲେଖ ଯୋଗ୍ୟ ଅଟେ । ଏହି ସବୁ ପ୍ରତ୍ନତାତ୍ତ୍ୱିକ ପ୍ରସିଦ୍ଧ ସ୍ଥାନ ଗୁଡ଼ିକର ପ୍ରାଥମିକ ଖୋଦନ ଓ ଗବେଷଣାରୁ ଯେଉଁ ସବୁ ଲେଖ, ମୂର୍ତ୍ତି, ଚିତ୍ରାଙ୍କନ, ମୁଦ୍ରା, ଧ୍ୱଂସସ୍ତୂପ, ପଥର ମାଳ ପ୍ରଭୃତି ମିଳିଛି, ସେ ଗୁଡ଼ିକର ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନରୁ ଦେଖାଯାଏ ଯେ ଉତ୍କଳର ପୂର୍ବାଞ୍ଚଳ ଓ ଦକ୍ଷିଣାଞ୍ଚଳପରି ଉତ୍ତରାଞ୍ଚଳ ମଧ୍ୟ ଐତିହ୍ୟ ପୂର୍ଣ୍ଣ କଳା ସ୍ଥାପତ୍ୟରେ ସମୃଦ୍ଧ-ଶୀଳ ଅଟେ । ତେଣୁ ଭଞ୍ଜଭୂମି କେନ୍ଦୁଝର ରାଜ୍ୟର ଏକଦା ଯେ ଏକ ସମୁନ୍ନତ ଗୌରବମୟ ଅତୀତ ଥିଲା ତାହାର ମୂକ ସାକ୍ଷୀ ହେଉଛି ଅସନପାଟ, ସୀତାବିଞ୍ଜି, ଓ ବଇଦାଖିଆ । ଏହି ସମସ୍ତ ସ୍ଥାନ ଗୁଡ଼ିକରେ ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ ଓ ଐତିହାସିକ ପ୍ରସିଦ୍ଧି ନିମ୍ନମତେ ନିର୍ଦ୍ଧାରଣ କରି ଯାଇ ଅଛି ।

## ଅସନପାଟ ଶିଳାଭିଲେଖ

ଅସନପାଟ ହେଉଛି ଗୋଟିଏ ଗିରି ପଲ୍ଲୀ । ଏହା ଝୁମ୍ପୁରା ଗ୍ରାମ ପଞ୍ଚାୟତ ଅନ୍ତର୍ଗତ ଅସନପାଟ ଗ୍ରାମ ପଞ୍ଚାୟତର ଅସନପାଟ ଗ୍ରାମ ଅଟେ । ଏହି ଗ୍ରାମରେ ବାଥୁଡ଼ି ଜାତିର ଲୋକ ମାନେ ବାସ କରନ୍ତି ଓ ଲୋକ ସଂଖ୍ୟା ହେଉଛି ୨୦୦୦ (ଦୁଇ ହଜାର) । ଏଠାକୁ ଯିବାକୁ ଝୁମ୍ପୁରା ଠାରୁ ୧୫ କି.ମି. କଚ୍ଚା ରାସ୍ତା ଯାଇ ଅଛି । ସିଜୁକଲା ଠାରୁ ମଧ୍ୟ ୮ କି. ମି. ଦୂର ଅଟେ ।

ଅସନପାଟ ଗ୍ରାମଟି ଗ୍ରାମ୍ୟ କୁଳବଧୂ ପରି ସଂଗୋପନରେ ଲୁଚି ରହିଛି ବନ ଗିରି ବେଷ୍ଟିତ ନିର୍ଜ୍ଜନ ପ୍ରକୃତି ଶ୍ରୀ କୋଳରେ । ମହାନ ଐତିହ୍ୟ ଓ ଗୁରୁ ଗୌରବର ଅଧିକାରୀ ଅସନପାଟ ଗ୍ରାମରେ ଏକ ସୁବିସ୍ତୃତ ଆମ୍ର କାନନ ମଧ୍ୟରେ ଅସନପାଟ ଶିଳାଭିଲେଖ ରହି ଅଛି ।

ଖ୍ରୀଷ୍ଟୀୟ ୧୭୭ ବର୍ଷରେ ଉତ୍ତର ଭାରତରେ ଶକ୍ତିଶାଳୀ କୁଶାଣ-ମୁରୁଣ୍ଡ ଶାସନର ବିଲୋପ ସାଧନ କାରୀ ରୂପେ ପରିଚିତ ବିନ୍ଧ୍ୟାଟବୀ ରାଜ୍ୟର ନାଗ ବଂଶୀୟ ମହାରାଜା ଶତ୍ରୁଭଞ୍ଜଙ୍କର ନାମ ଉଲ୍ଲେଖ ଯୋଗ୍ୟ ଅଟେ ।

ଅସନପାଟ ଠାରୁ ମିଳିଥିବା ଓ ବର୍ତ୍ତମାନ ରାଜ୍ୟ ସଂଗ୍ରହାଳୟରେ ରଖା ଯାଇଥିବା ପ୍ରସ୍ତର ନିର୍ମିତ ଏକ ନଟରାଜ ଶିବର ବିଗ୍ରହ ନିମ୍ନାଂଶରେ ଖୋଦିତ ହୋଇଥିବା ସେ କାଳର ଯେଉଁ ଅଭିଲେଖ ଆବିଷ୍କୃତ ହୋଇ ଅଛି ତହିଁରୁ ଶତ୍ରୁ ଭଞ୍ଜଙ୍କର କ୍ରିୟା-କଳାପର ସବିଶେଷ ବିବରଣୀ ମିଳେ । ସେହି ଶିଳା ଲେଖରୁ ଜଣା ପଡ଼େଯେ ଶତ୍ରୁଭଞ୍ଜ ବହୁ ଯୁଦ୍ଧ କ୍ଷେତ୍ରରେ କୁଶାଣ ମୁରୁଣ୍ଡ (ଦେବ ପୁତ୍ର) ଙ୍କୁ ପରାସ୍ତ କରିଥିଲେ । ସେ ତାଙ୍କର ବହୁ ସାମନ୍ତ ରାଜାଙ୍କୁ ବଶୀଭୂତ କରି ପାଟଳିପୁତ୍ର, ଗୟା, କୃମିଳ, ଦଣ୍ଡାବର୍ଦ୍ଧନ, ପୁଣ୍ଡ୍ର-ବର୍ଦ୍ଧନ, ବର୍ଦ୍ଧମାନ, ଗୌହାଟୀ, କାମରୁପ, ଖଦ୍ରଙ୍ଗ ତାମ୍ରଲିପ୍ତ ଓ ଉଭୟ ତୋଷାଳୀ ଠାରେ ଲକ୍ଷ ଲକ୍ଷ ସଂଖ୍ୟାରେ ଗୋଦାନ କରିଥିଲେ ଏବଂ ଅହୀଛତ୍ର ଠାରେ ଥିବା ଶଙ୍ଖ-କାରମଠ, ଲକ୍ଷେଶ୍ୱରଙ୍କ ମହିଭଦ୍ରା ମଠ ଓ ଅନ୍ୟାନ୍ୟ ବହୁ ମଠ ମନ୍ଦିରକୁ ଲକ୍ଷ ଲକ୍ଷ ସଂଖ୍ୟାରେ ସ୍ୱର୍ଣ୍ଣ ମୁଦ୍ରା ଦାନ କରିଥିଲେ । ସେତେବେଳେ ପାଟଳୀପୁତ୍ର, ଗୟା ଓ କୃମିଳ ରାଜ୍ୟ ମୁରୁଣ୍ଡ ସାମ୍ରାଜ୍ୟର ହୃତପିଣ୍ଡ ଥିଲା ଏବଂ ସେ ସବୁ ଅଞ୍ଚଳରେ ଶତ୍ରୁଭଞ୍ଜ ଆଧିପତ୍ୟ ବିସ୍ତାର କରିଥିବା ଦୃଷ୍ଟିରୁ ସେ ସବୁ ସାମ୍ରାଜ୍ୟର ପତନ ଘଟିଥିବା ସ୍ପଷ୍ଟ ଜଣା ଯାଏ । ମଗଧର ମୁରୁଣ୍ଡ ଶାସନର ବିଲୋପ ସାଧନ କରିବାରେ ମଧ୍ୟ ସେ କୃତିତ୍ୱ ଅର୍ଜନ କରି-ଥିଲେ ।

ମହାରାଜା ଶତ୍ରୁଭଞ୍ଜ ଏହି ଅଭିଲେଖର ଶିରୋଭାଗରେ ନଟରାଜ ଶିବଙ୍କ ବିଗ୍ରହ ସ୍ଥାପନ କରି ସୂଚାଇ ଦେଇ ଅଛନ୍ତିଯେ ଅଭିଲେଖ ବର୍ଣ୍ଣିତ ବିଷୟବସ୍ତୁ ସତ୍ୟ ଅଟେ । ଭଞ୍ଜରାଜା ମାନେଯେ ଶିବଭକ୍ତ ମାହେଶ୍ୱର ଥିଲେ ଏହାହିଁ ତାହାର ପ୍ରକୃଷ୍ଟ ପ୍ରମାଣ । ସେହି ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ ଅସନପାଟ ଶିଳାଲେଖ ପ୍ରାଚୀନ ଉତ୍କଳ ଇତିହାସରେ ଏକ ନବୀନ ଆଲୋକ ବର୍ତ୍ତିକା ।

ସେହି ଅଭିଲେଖରୁ ଜଣାଯାଏଯେ ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ବିନ୍ଧ୍ୟାଟବୀ ରାଜ୍ୟର ଭଞ୍ଜ ଉପାଧି ଧାରୀ ନାଗ ବଂଶୀୟ ରାଜା ମାନେ ପ୍ରଭାବ ଶାଳୀ ଥିଲେ । ଆଧୁନିକ କେନ୍ଦୁଝର, ମୟୂରଭଞ୍ଜ, ସିଂହଭୂମି ଓ ବଣେଇ ଅଞ୍ଚଳକୁ ନେଇ ପ୍ରାଚୀନ ବିନ୍ଧ୍ୟାଟବୀ ରାଜ୍ୟ ସଂଗଠନ କରି ତହିଁରେ ମହାରାଜା ଶତ୍ରୁଭଞ୍ଜ ନିରଙ୍କୁଶ ଶାସନ କରୁଥିଲେ । ସେ ମହାରାଜା ମାଣଭଞ୍ଜ ଓ ମହାରାଣୀ ଦମୟନ୍ତୀ ଦେବୀଙ୍କର ପୁତ୍ର ଥାଇ ନାଗବଂଶର ଗୌରବ ବର୍ଦ୍ଧକ ସମ୍ରାଟ ଥିଲେ । ସେ ବହୁ ଯୁଦ୍ଧ କ୍ଷେତ୍ରରେ କୁଶାଣ ମୁରୁଣ୍ଡଙ୍କୁ ପରାସ୍ତ କରି ଥିଲେ ଏବଂ ସୂର୍ଯ୍ୟ ତୁଲ୍ୟ ତେଜ ଓ ବରୁଣ ତଥା କଳ୍ପବଟ ସଦୃଶ ଅକ୍ଷୟ ଗୁଣର ଅଧିକାରୀ ଥିଲେ । ପଶ୍ଚିମରେ ଅହୀଛତ୍ର ଠାରୁ ପୂର୍ବରେ ତାମ୍ରଲିପ୍ତ ଓ ଗୌହାଟି ଯାଏ ଏବଂ ଦକ୍ଷିଣ ପୂର୍ବରେ ଉଭୟ ତୋଷଳୀ ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରି ଥିଲେ । ଭାରତରୁ ବୈଦେଶିକ ଶାସନ ହଟାଇବା ନିମନ୍ତେ ସେତେବେଳେ ଯେଉଁ ସାମରିକ ଅଭିଯାନ ହୋଇ ଥିଲା ତହିଁରେ ମଥୁରା, କୌଶାମ୍ବୀ ଓ ପଦ୍ମାବତୀ ରାଜ୍ୟର ନାଗରାଜା ମାନଙ୍କ ସହିତ ବିନ୍ଧ୍ୟାଟବୀ ରାଜ୍ୟର ନାଗ ରାଜା ଶତ୍ରୁଭଞ୍ଜ ସକ୍ରିୟ ଅଂଶ ଗ୍ରହଣ କରି ଉତ୍ତର ଭାରତର ବିଭିନ୍ନ ସ୍ଥାନ ମାନଙ୍କରେ ଗୋଦାନ, ସ୍ୱର୍ଣ୍ଣ ଦାନ ପ୍ରଭୃତି କରି ଥିଲେ ।

ମଗଧ ସମ୍ରାଟ ଅଶୋକ କଳିଙ୍ଗ ବିଜୟ କରି ଥିଲେହେଁ କଳିଙ୍ଗର ପଶ୍ଚିମାଞ୍ଚଳ ତାଙ୍କ ଦ୍ୱାରା ବିଜିତ ହୋଇ ନଥିଲା । ସେହି ସମୟରେ କଳିଙ୍ଗର ଅଟବିକ ଅଞ୍ଚଳ ବିଦ୍ୟାଧର ରାଜ୍ୟ ନାମରେ ଅଭିହିତ ଥିଲା । ଏହାର ଅପର ନାମ ଅଷ୍ଟାଦଶାଟବୀ ବା ଅଠର ଗଡ଼ଜାତ ଥିଲା । ପ୍ରଥମ ଖ୍ରୀଷ୍ଟାବ୍ଦରେ କଳିଙ୍ଗର ସମ୍ରାଟ ଖାରବେଳଙ୍କ ଶାସନ କାଳରେ ଏହି ଅଞ୍ଚଳ ତ୍ରିକଳିଙ୍ଗ ନାମରେ ଖ୍ୟାତ ଥିଲା । ଏହାର ଅପର ନାମ ଗିରି-କଳିଙ୍ଗ ମଧ୍ୟ ଥିଲା । ଏହା ଉଭୟ କୋଶଳକୁ ନେଇ ଗଠିତ ହୋଇଥିଲା । ବାଲେଶ୍ୱର ମୟୂରଭଞ୍ଜ,କେନ୍ଦୁଝର ଓ କଟକର କେତେକ ଅଞ୍ଚଳକୁ ନେଇ ଉତ୍ତର ତୋଷଳୀ ରାଜ୍ୟ ଓ ଗଞ୍ଜାମ, ପୁରୀ, ଫୁଲବାଣୀ, ଢେଙ୍କାନାଳ ଏବଂ କଟକର କେତେକ ଅଂଶକୁ ନେଇ ଦକ୍ଷିଣ ତୋଷଳୀ ରାଜ୍ୟ ଗଠିତ ହୋଇଥିଲା । ମହାନଦୀ ଉଭୟ ରାଜ୍ୟର ସୀମା ବିଭେଦକାରୀ ରେଖା ଥିଲା । ଅସନପାଟ ଅଭିଲେଖରେ ସେହି ଉଭୟ ତୋଷଳୀ ରାଜ୍ୟ ଏକ ଯୁଗ୍ମ ରାଜ୍ୟ ରୂପେ ସଂଗଠିତ ହୋଇ ଥିଲା । ତୃତୀୟ ଶତାବ୍ଦୀରେ ରଚିତ ଖଣ୍ଡବ୍ୟୂହ ନାମକ ଗ୍ରନ୍ଥରେ ଉଭୟ ତୋଷଳୀ ଅମିତ ତୋଷଳୀ ରାଜ୍ୟ ରୂପେ ବର୍ଣ୍ଣିତ ହୋଇ ସେଠାରେ ମହାରାଜା ଶତ୍ରୁଭଞ୍ଜଙ୍କର ରାଜନୈତିକ ପ୍ରଭାବ ପ୍ରତିଷ୍ଠିତ ହୋଇ ଥିବା ଜଣାଯାଏ । ଭୁବନେଶ୍ୱର ନିକଟସ୍ଥ ସୁନ୍ଦରପଡ଼ା ଗ୍ରାମ ଠାରେ ଯେଉଁ ନାଗ ରାଜାଙ୍କର ବିଗ୍ରହ ଏବେ ପୂଜିତ ହେଉ ଅଛି ତାହା ସମ୍ଭବତଃ ନାଗବଂଶୀ ମହାରାଜା ଶତ୍ରୁଭଞ୍ଜଙ୍କ ଦ୍ୱାରା ପ୍ରତିଷ୍ଠିତ ହୋଇ ଅଛି । ମଗଧ ରାଜ୍ୟର କୁଶାଣ ମୁରୁଣ୍ଡ ଶାସନର ବିଲୋପ ସାଧନ କରିବାରେ ଶତ୍ରୁଭଞ୍ଜଙ୍କର ସାମରିକ ଅଭିଯାନ ଯେ ସାଫଲ୍ୟ ଅର୍ଜ୍ଜନ କରି ଥିଲା ଏହା ନିଃସନ୍ଦେହରେ କୁହାଯାଇ ପାରେ । ମହାରାଜା ଶତ୍ରୁଭଞ୍ଜଙ୍କ ପରେ ଅଟବୀ ଅଞ୍ଚଳରେ ନାଗ ବଂଶ ଦୁର୍ବଳ ହୋଇ ପଡ଼ିଥିବା ଜଣା ଯାଏ ।

ମହାରାଜା ଶତ୍ରୁଭଞ୍ଜ ଶିବଙ୍କର ପରମ ଭକ୍ତ ଥିବା କଥା ଅସନପାଟ ଶିଳାଭିଲେଖର ଅଗ୍ର ଭାଗରେ ଖୋଦିତ ଶିବଙ୍କର ଆନନ୍ଦ ତାଣ୍ଡବ ବିଗ୍ରହରୁ ପ୍ରମାଣ ମିଳେ । ରାଜା ଶତ୍ରୁଭଞ୍ଜ ଶୈବ ଧର୍ମାବଲମ୍ବୀ ଥିଲେହେଁ ସେ ବ୍ରାହ୍ମଣ୍ୟ ଓ ହିନ୍ଦୁ ଧର୍ମର ପୃଷ୍ଠପୋଷକ ଥିବା ମଧ୍ୟ ଜଣା ଯାଏ । ତାଙ୍କର ଧର୍ମ ନୀତି ବଡ଼ ଉଦାର ଭିତ୍ତିରେ ପ୍ରତିଷ୍ଠିତ ହୋଇ ଥିବା ଜଣା ପଡ଼ୁଛି । କଳିଙ୍ଗ ସମ୍ରାଟ ଖାରବେଳଙ୍କ ପରି ସେ ସମସ୍ତ ଧର୍ମାବଲମ୍ବୀ ମାନଙ୍କୁ ସମ୍ମାନ ପ୍ରଦର୍ଶନ କରୁ ଥିଲେ । କେବଳ ବ୍ରାହ୍ମଣ୍ୟ ଧର୍ମର ବ୍ରହ୍ମଚାରୀ, ଚରକ ଓ ପରିବ୍ରାଜକ ମାନଙ୍କ ପାଇ ନୁହେଁ ଜାତି-ବର୍ଣ୍ଣ ଧର୍ମ ନିର୍ବିଶେଷରେ ବର୍ଣ୍ଣାଶ୍ରମୀକ ) ସମସ୍ତଙ୍କ ନିମନ୍ତେ ଏବଂ ଜୈନ୍ୟ ( ନିର୍ଗ୍ରନ୍ଥକ ) ଓ ବୌଦ୍ଧ ( ଭିକ୍ଷୁ ) ଙ୍କର ନିମନ୍ତେ ମଠ ଓ ବିହାର ମାନ ନିର୍ମାଣ କରାଇ ଥିଲେ । ସେ କାଳରେ ଶତ୍ରୁଭଞ୍ଜଙ୍କର ଧର୍ମ ନିରପେକ୍ଷ ନୀତି ଅତୁଳନୀୟ ଥିଲା ପରି ମନେ ହୁଏ । ଅଟବୀ ରାଜ୍ୟର ନାଗ ବଂଶୀୟ ମହାରାଜା ଶତ୍ରୁଭଞ୍ଜଙ୍କ ଠାରୁ କଳିଙ୍ଗରେ ଓ ପର ତୋଷ୍ଳୀରେ ନାଗ ଦେବତାଙ୍କର ପୂଜା ପ୍ରଚଳିତ ହୋଇଥିବା ସୂଚନା ମିଳେ ।

ସେ କାଳରେ କଳିଙ୍ଗରେ ବହୁଳ ପ୍ରଚଳିତ ଥିବା ବ୍ରାହ୍ମଣ୍ୟ ଧର୍ମ ଶାସ୍ତ୍ର, ପୁରାଣ, ମହାଭାରତ, ରାମାୟଣ' ଇତିହାସ, ବ୍ୟାକରଣ, ବେଦ, ଉପନିଷେଦ, ନ୍ୟାୟ, ମୀମାଂସା ସାଂଖ୍ୟ , ଷଡ଼ଦର୍ଶନ ଶିକ୍ଷ୍ୟା କରିବାରେ ରାଜା ଶତ୍ରୁଭଞ୍ଜ ପାରଦର୍ଶିତା ଲାଭ କରିଥିବା କଥା ଅସନପାଟ ଶିଳାଲେଖରୁ ଜଣା ପଡ଼େ ।

ଅସନପାଟ ଅଭିଲେଖର ଶିବ ବିଗ୍ରହ ଓଡ଼ିଶାରେ ଏଯାଏ ଆବିଷ୍କୃତ ହୋଇ ଥିବା ଶିବଙ୍କର ପ୍ରାଚୀନତମ ବିଗ୍ରହ ଅଟେ । ଶିବ ଅଷ୍ଟ ଭୁଜରେ ବିବିଧ ପ୍ରକାର ଆୟୁଧ ଧାରଣ କରି ଆନନ୍ଦ ତାଣ୍ଡବ ନୃତ୍ୟ ରଚନା କରୁ ଅଛନ୍ତି ଏବଂ ଉପର ଦୁଇ ହସ୍ତରେ ନିଜର ମଥା ଉପରେ ଏକ ସର୍ପ ଟେକି ଧରି ଅଛନ୍ତି । ଅନ୍ୟ ଦୁଇ ଡାହାଣ ହସ୍ତରେ ସେ ଧାରଣ କରିଛନ୍ତି ଅକ୍ଷମାଳା ଓ ଡମ୍ବରୁ ଏବଂ ଅନ୍ୟ ଦୁଇ ବାମ ହସ୍ତରୁ ଗୋଟିକରେ ବିଜୟ ପତାକା ଶୋଭିତ ତ୍ରିଶୂଳ ଏବଂ ଅନ୍ୟଟି ବରଦା ମୁଦ୍ରା ପ୍ରଦର୍ଶନ କରୁ ଅଛି । ମସ୍ତକରେ ଜଟା ମୁକୁଟ; ତୃତୀୟ ନେତ୍ର ଓ ଚନ୍ଦ୍ରକଳା ଶୋଭା ପାଉ ଅଛି । ଚକ୍ଷୁଦ୍ୱୟ ଅର୍ଦ୍ଧ ନିମିଳିତ ହୋଇ ଦୃଷ୍ଟି ନାଶିକାଗ୍ରରେ କେନ୍ଦ୍ରୀଭୂତ ହୋଇ ଅଛି । ତାଙ୍କର ବାମ ପାର୍ଶ୍ୱରେ ନନ୍ଦୀ ଊର୍ଦ୍ଧ୍ୱ ମୁଖରେ ବିମୋହିତ ହୋଇ ଗୁହାଁରିଛନ୍ତି ଏବଂ ଡାହାଣ ପାର୍ଶ୍ୱରେ ଜଣେ ଶୈବାଚାର୍ଯ୍ୟ ଗୁମ୍ଫ ଉପରେ ଯୁଗ୍ମ ହସ୍ତରଖି ପଦ୍ମାସନରେ ଉପବେସନ କରିଅଛନ୍ତି । ସମ୍ପ୍ରଦାୟ ବିଗ୍ରହରେ ଅପୂର୍ବ ଆଧ୍ୟାତ୍ମିକ ଭାବର ଅଭିବ୍ୟକ୍ତି ପରିଲକ୍ଷିତ ହୁଏ । ଶିବ ସଂପୂର୍ଣ୍ଣ ଯୋଗ ମଗ୍ନ ହେଲେ ହେଁ ବାହ୍ୟ ଜଗତ ପ୍ରତି ଯେ ଉଦାସୀନ ନୁହନ୍ତି ତାହା ତାଙ୍କର ବରଦା ମୁଦ୍ରା, ବୀଣା ଓ ଡମ୍ବରୁ ବାଦନରୁ ସ୍ପଷ୍ଟ:ସୂଚିତ ହୁଏ । ବିଗ୍ରହ ଖୋଦନ-ରେ ଉତ୍କର୍ଷ କଳାର ପାରଦର୍ଶିତା ପ୍ରକାଶିତ ହୋଇ ଅଛି । ଶିବଙ୍କର ମୁଖ ମଣ୍ଡଳରେ ଯୋଗୀର ଦୃଢ଼ତା ଓ ରୁକ୍ଷତା ସହିତ ଶରୀରର କୋମଳତା ଓ କମନୀୟତା ତଥା ନୃତ୍ୟର ସୌଷ୍ଠବତା ସମନ୍ୱିତ ହୋଇ ଏକ ଅନବଦ୍ୟ କଳାର ପରିଚୟ ପ୍ରଦାନ କରେ ।

ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ ରାଜା ଶତ୍ରୁଭଞ୍ଜ ପ୍ରାକୃତ ଭାଷା ଛାଡ଼ି ସର୍ବ ପ୍ରଥମେ ସଂସ୍କୃତରେ ନିଜର ଅଭିଲେଖ ଉତ୍କୀର୍ଣ୍ଣ କରାଇଥିବା କଥା ଅସନପାଟ ଅଭିଲେଖରୁ ଜଣା ଯାଏ । ତାହା କଳିଙ୍ଗର ଭାଷା କ୍ଷେତ୍ରରେ ଏକ ନୂତନ ପଦକ୍ଷେପ । କଳିଙ୍ଗରେ ସଂସ୍କୃତ ଭାଷାର ପ୍ରଚଳନ ଗୁପ୍ତ ଯୁଗରୁ ଆରମ୍ଭ ହୋଇଥିଲା ବୋଲି ଯାହା କୁହାଯାଏ ତାହା ଏହା ଦ୍ୱାରା ମିଥ୍ୟା ପ୍ରମାଣିତ ହୋଇ ଅଛି । ପରନ୍ତୁ ଖ୍ରୀଷ୍ଟୀୟ ଚତୁର୍ଥ ଶତାବ୍ଦୀ ଠାରୁ ମାଠର ବଂଶର ରାଜାମାନେ କଳିଙ୍ଗରେ ସଂସ୍କୃତ ଭାଷାକୁ ରାଜ ଭାଷା ରୂପେ ପ୍ରଚଳନ କରାଇଥିଲେ ।

ଖ୍ରୀଷ୍ଟାବ୍ଦ ୩୪ ରେ ଖାରବେଳ ଯେଉଁ ବିଶାଳ କଳିଙ୍ଗ ସାମ୍ରାଜ୍ୟ ସ୍ଥାପନ କରି

ଥିଲେ ତାହା ତାଙ୍କର ମୃତ୍ୟୁ ପରେ ଖଣ୍ଡ ବିଖଣ୍ଡିତ ହୋଇଥିଲା । ମାତ୍ର ଖ୍ରୀଷ୍ଟାବ୍ଦ ୧୭୭ରେ ରାଜା ଶତ୍ରୁଭଞ୍ଜ ବନ୍ଧ୍ୟାଟବୀ ରାଜ୍ୟର ଶାସକ ଥାଇ ସେ ବିଖଣ୍ଡିତ କଳିଙ୍ଗ ସାମ୍ରାଜ୍ୟକୁ ଏକ ସାମ୍ରାଜ୍ୟ ଅଧୀନରେ ରଖି ଭୁବନେଶ୍ୱର ଠାରେ ନାଗ ରାଜା ମୂର୍ତ୍ତି ପ୍ରତିଷ୍ଠା କରିଥିଲେ ।

ରାଜା ଶତ୍ରୁଭଞ୍ଜ କଳିଙ୍ଗର ଦ୍ୱିତୀୟ ଖାରବେଳ ଥିଲେହେଁ ଇତିହାସ ତାଙ୍କ ପ୍ରତି ଯଥୋଚିତ ସମ୍ମାନ ଦେଇ ପାରି ନାହିଁ । ଏହାହିଁ ହେଉଛି ଏକ ବୈଚିତ୍ର୍ୟମୟ ଅଧ୍ୟାୟ ।

# ସୀତାବିଞ୍ଜି ଶୈଳାଭିଲେଖ ଓ ଶୈଳ ଚିତ୍ରାଙ୍କନ

କେନ୍ଦୁଝର ଜିଲ୍ଲାର ସୀତାବିଞ୍ଜି ଠାରେ ଯେଉଁ ଚତୁଃମୁଖ ଲିଙ୍ଗ ଅଯତ୍ନ ହୋଇ ପଡ଼ି ରହିଛି, ତାହା ମହାରାଜା ଶତ୍ରୁଭଞ୍ଜଙ୍କର ବଂଶଧର ରାଣକ ଦିଶାଭଞ୍ଜଙ୍କର ଶାସନ କାଳର ସୂଚନା ଦିଏ । କାରଣ ସୀତାବିଞ୍ଜି ଠାରେ ଥିବା ରାବଣ ଗୁମ୍ଫା ନାମକ ପ୍ରାକୃତିକ ଆଶ୍ରୟ ସ୍ଥଳୀରେ ଥିବା ଭିତ୍ତିଚିତ୍ର ଧଣ୍ଡିତ ମହାରାଜା ଦିଶାଭଞ୍ଜଙ୍କର ନାମ ଦେଖିବାକୁ ମିଳେ । ଏହା ଛଡା ଦିଶାଭଞ୍ଜଙ୍କ ସମ୍ବନ୍ଧରେ ବିଶେଷ କିଛି ବିବରଣୀ ମିଳିନାହିଁ ।

ଖ୍ରୀଷ୍ଟୀୟ ତୃତୀୟ ଶତକରେ ବୌଦ୍ଧ ଉପାସିକା "ବୋଧିଶ୍ରୀ" ଭାରତର ବିଭିନ୍ନ ବୌଦ୍ଧ ତୀର୍ଥ କ୍ଷେତ୍ରରେ ଯେଉଁ ସାତଗୋଟି ଅପବାରକ ବା ଗୁମ୍ଫା ସ୍ଥାପନ କରାଇଥିଲେ ସେଥିମଧ୍ୟରୁ ପ୍ରଥମ ତିନିଗୋଟି ଅପବାରକ ବା ପିପିଲି ସୀତାବିଞ୍ଜି ସନ୍ନିକଟରେ ଥିବା ଆଧୁନିକ ପିପିଳିଆ ଗ୍ରାମ ଠାରେ ସ୍ଥାପିତ ହୋଇଥିଲା । ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀରେ କଳିଙ୍ଗ ଅଞ୍ଚଳରେ ବୌଦ୍ଧ ଧର୍ମକୁ ଲୋକପ୍ରିୟ କରି ରଖିବା ଉଦ୍ଦେଶ୍ୟରେ ଏ ଗୁଡିକ ସ୍ଥାପିତ ହୋଇଥିବା ମନେ ହୁଏ ।

ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀରେ ରାଜା ଦିଶାଭଞ୍ଜଙ୍କ ନେତୃତ୍ୱରେ ସୀତାବିଞ୍ଜି ଶିଳାଭିଲେଖ ଖୋଦିତ ହୋଇଥିବା ପରି ମନେ ହେଲେହେଁ ତାହାଙ୍କର ଶାସନ କାଳର ବିଶେଷ କିଛି ଜଣା ଯାଏ ନାହିଁ । ଏହା ଗବେଷଣ ସାପେକ୍ଷ ଅଟେ । ଉତ୍ତର ଭାରତରୁ କୁଶାଣ - ମୁରୁଣ୍ଡ ଶାସନ ବିଲୋପ ସାଧନ କ୍ଷେତ୍ରରେ ତଥା ଦାନପୁଣ୍ୟ କ୍ଷେତ୍ରରେ ଦାଗ କର୍ମ୍ମ ସୁଖ୍ୟାତି ଅର୍ଜ୍ଜନ କରିଥିବା ନାଗ ବଂଶର ରାଜା ଶତ୍ରୁଭଞ୍ଜଙ୍କ ପରେ ସୀତାବିଞ୍ଜି ଶିଳାଭିଲେଖର ପ୍ରସିଦ୍ଧ ରାଜା ରାଣକ ଦିଶାଭଞ୍ଜ ପର୍ବତ ବକ୍ଷରେ ଅନବଦ୍ୟ ଶୈଳ ଚିତ୍ରାଙ୍କନ ସୃଷ୍ଟି କରିବାରେ କଳିଙ୍ଗ ରାଜ୍ୟରେ ଅଦ୍ୱିତୀୟ ହୋଇ ରହି ଅଛନ୍ତି ।

## ସୀତାବିଞ୍ଜି ପର୍ବତ

ପ୍ରତ୍ନତାତ୍ତ୍ୱିକ ପ୍ରସିଦ୍ଧି ଓ ଐତିହାସିକ ଐଶ୍ୱର୍ଯ୍ୟପୂର୍ଣ୍ଣ ସୀତା ବିଞ୍ଜି ପର୍ବତ କେନ୍ଦୁଝର ଠାରୁ ୨୫ ମାଇଲ ଦୂରରେ ଘନବନ ପର୍ବତ ପରିବେଷ୍ଟିତ ଓାଙ୍ଗୁଆ ପଣୀ ଗ୍ରାମରେ ଅବସ୍ଥିତ । ଏହାର ଉଚ୍ଚତା ୨୨୦୦ ଫୁଟ୍ ଅଟେ । ଏଠାରେ ୮୦ ଫୁଟ ଓ ୮୫ ଫୁଟ ଉଚ୍ଚତାର ଦୁଇଗୋଟି ଶୈଳ ଗୁମ୍ଫା ରହି ଅଛି । ସୀତାବିଞ୍ଜି ପର୍ବତ କେନ୍ଦୁଝର ଠାରୁ ଯାଜପୁର ରୋଡ଼କୁ ଯାଇଥିବା (ବର୍ତ୍ତମାନ N.H. 5 ଓ 6)କୁ ସଂଯୋଗ କରୁଥିବା ପ୍ରଧାନ ରାସ୍ତାରେ ଅବସ୍ଥିତ । କଟରା ବେଡ଼ା ଗ୍ରାମ ଠାରୁ ଦକ୍ଷିଣରେ ୮କି:ମି: ଦୂରରେ ଅବସ୍ଥିତ । ସୀତାବିଞ୍ଜି ପର୍ବତର ପାଦଦେଶରେ, କ୍ଷୁଦ୍ର ଗେରି ନିର୍ଝରିଣୀ

ସୀତା ନଦୀ ପର୍ବତର ଗର୍ଭରେ ପ୍ରବାହିତ ହୋଇ ତାହାର ଜନନୀ – ବୈତରଣୀ କୋଳରେ ମିଶିଯାଇଛି । ସୀତାନଦୀ ସୀତା ବଞ୍ଜିଠାରୁ ମାତ୍ର ୧୦ କି: ମି: ଦୂରରୁ ଏକ ସମତଳ ସ୍ଥାନରୁ ବାହାରିଅଛି । ଏହି କ୍ଷୁଦ୍ର ଗିରି ଜଳ ଧାରରୁ ସ୍ୱର୍ଣ୍ଣ ରେଣୁ ସଂଗ୍ରହ କରା ଯାଇ ଥାଏ । ସୀତା ନଦୀର ନାମାନୁସାରେ ପର୍ବତର ନାମ ସୀତାବଞ୍ଜି ହୋଇଥିବା ମନେକରି-ନିବା ସ୍ୱାଭାବିକ ଅଟେ । ମାତ୍ର ଜନଶ୍ରୁତିରୁ ଜଣାଯାଏଯେ ଶ୍ରୀରାମପତ୍ନୀ ସୀତା ଦେବୀଙ୍କ ନାମାନୁସାରେ ଏହି ପର୍ବତର ନାମ ସୀତାବଞ୍ଜି ରଖା ଯାଇଛି । ପର୍ବତରନାମ ସୀତାବଞ୍ଜି ହେଲେହେଁ ଲୋକ ବସନ୍ତ ଗ୍ରାମର ନାମ ଡାଙ୍ଗୁଆପଶୀ ଅଟେ । ସେଠାରେ ଚଣ୍ଡ ଜାତିର ଲୋକେ ବିଶେଷ ଭାବରେ ବାସ କରନ୍ତି । ଗ୍ରାମଟି ଏକ ପ୍ରକାଣ୍ଡ ପୁଷ୍କରଣୀ ଉପରେ ଅବସ୍ଥିତ । ଏହି ପୁଷ୍କରଣୀର କେତେକଂଶ ବର୍ତ୍ତମାନ ଗୃହଜମି ସହିତ ମିଶିଯାଇ ଥିଲେ ମଧ୍ୟ ସେଥିରେ ଖରା ଦିନରେ ପ୍ରାୟ ୮।୯ ହାତ ଗଭୀର ଜଳ ରହେ । ଏହି ପୁଷ୍କରିଣୀର ଡାକ ନାମ ରାଣୀବନ୍ଧ ଓ ସତ୍ୟବନ୍ଧ ଅଟେ । ସାଧାରଣରେ ଲୋକେ ଏହାକୁ ଯୋଡ଼ାବନ୍ଧ ବୋଲି କହିଥାନ୍ତି ।

ଜନ ଶ୍ରୁତିରୁ ଜଣାଯାଏଯେ ରାମାୟଣ ଯୁଗର ଆରମ୍ଭରୁ ସୀତାବଞ୍ଜି ରତ୍ନାକର ଦସ୍ୟୁର ଆଡ୍ଡା ସ୍ଥଳୀ ଥିଲା ଏବଂ ରତ୍ନାକର ଦସ୍ୟୁ ବ୍ରହ୍ମାଙ୍କ ଠାରୁ ଗୁରୁମନ୍ତ୍ର ଦୀକ୍ଷା ଗ୍ରହଣକରି ଦସ୍ୟୁବୃତ୍ତି ତ୍ୟାଗ ସେହିଠାରେ ବାଲ୍ମିକ ମହର୍ଷୀ ହୋଇ ଆଶ୍ରମ ପ୍ରତିଷ୍ଠା କରିଥିଲେ ତ୍ରେତା ଯୁଗରେ ଭଗବାନ ଶ୍ରୀ ରାମଚନ୍ଦ୍ର ରାବଣକୁ ବିନାଶ କରି ଅଯୋଧ୍ୟାରେ ରାଜା ଥିବା ସମୟରେ ରାଜ୍ୟର ଜଣେ ଧୋବଣୀ ମୁଖରୁ ସତୀ ସୀତାଦେବୀଙ୍କର ନିନ୍ଦାଶୁଣି ତାହାଙ୍କୁ ବନକୁ ପଠାଇ ଦେଇଥିଲେ । ଅନୁଜ ଲକ୍ଷ୍ମଣ ଅଗ୍ରଜ ଶ୍ରୀରାମଙ୍କର ଆଜ୍ଞା ବହନ କରି ସୀତାଦେବୀଙ୍କୁ ଏହି ସୀତାନଦୀ କୂଳରେ ଅବସ୍ଥିତ ବାଲ୍ମିକ ମହର୍ଷିଙ୍କ ଆଶ୍ରମ ସନ୍ନିକଟରେ ଛାଡ଼ି ଦେଇ ଯାଇଥିଲେ । ସୀତାବଞ୍ଜି ଠାରେ ସୀତାଦେବୀ ଅବସ୍ଥାନ କରି ଲବ କୁଶ ନାମକ ଦୁଇଗୋଟି ପୁତ୍ରର ଜନନୀ ହୋଇଥିଲେ ।

ଏହାର ସ୍ମାରକ ସ୍ୱରୂପ ସୀତାବଞ୍ଜି ପର୍ବତରେ ଲବ କୁଶ ନାମରେ ଦୁଇଖଣ୍ଡ ଶିଳା ପୂଜା ପାଉଅଛି । ଲୌକିକ ବିଶ୍ୱାସ ଅଛିଯେ ସେଠାକୁ ବନ୍ଧ୍ୟାନାରୀ ଆସି ଏହି ଲବକୁଶ ନାମକ ପଥର ଦୁଇଖଣ୍ଡକୁ କାଖରେ କାଖେଇ ସୀତାଦେବୀ ଶାଳର ଚତୁପାର୍ଶ୍ୱ ପରିକ୍ରମା କଲେ ତାହାର ବନ୍ଧ୍ୟାତ୍ୱ ଦୂର ହୋଇ ସେ ପୁତ୍ର କନ୍ୟାବତୀ ହୋଇଥାଏ ।

ଆଉ କେତେକ କହନ୍ତି ଯେ ରାବଣକୁ ବଧ କରି ଶ୍ରୀରାମ ବାହୁଡ଼ା ଉତ୍ତରକୁ ପ୍ରତ୍ୟାବର୍ତ୍ତନ ସମୟରେ ଯେଉଁ ଯେଉଁ ସ୍ଥାନରେ ଅବସ୍ଥାନ କରୁଥିଲେ ସେହି ସେହି ସ୍ଥାନରେ ସେମାନେ ସୀତାବଞ୍ଜି ପରି ସୁନ୍ଦର ପଥର ଘରମାନ ତିଆରି କରିଥିଲେ । ସେ ଗୁଡ଼ିକ ମଧ୍ୟରେ ସୀତାବଞ୍ଜି ଅନ୍ୟତମ ଅଟେ ।

## ଖଣ୍ଡଘର

ଲୋକ ପ୍ରବାଦ ଅନୁଯାୟୀ ସୀତାବିଞ୍ଜି ରତ୍ନାକର ଦସ୍ୟୁର ଆଡ୍ଡାସ୍ଥଳ ଥିବାର ପ୍ରମାଣ ସ୍ୱରୂପ ଏହାର ଅନତିଦୂରରେ ଖଣ୍ଡଘର ନାମରେ ଗୋଟିଏ ଗ୍ରାମ ଏଯାବତ ରହିଅଛି । ଏହି ଖଣ୍ଡ ଘର ଗ୍ରାମ ନିକଟରେ ପ୍ରାପ୍ତ ଏକ କଲୋମିଟର ପରିଧି ବିଶିଷ୍ଟ ଗୋଟିଏ ଗୋଲାକାର ପଥର ଉପରେ ଦେଇ ଗ୍ଲେଲ ଗଲାବେଳେ ପଥର ଭିତରେ ସୁଡ଼ଙ୍ଗ ଥିବା ପରି ମନେହୁଏ । ଲୋକେ କହନ୍ତି ଏହି ପଥର ସୁଡ଼ଙ୍ଗ ଭିତରକୁ ଯିବା ପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ଅଛି ଓ ସେହି ଗୁମ୍ଫା ଦ୍ୱାର ଦେଶରେ ଖିଳାଣ ଲଗା ପଥର କବାଟ ଲାଗି ଅଛି । ଏହି ସ୍ଥାନର ନାମ ଖଣ୍ଡଘର ଅଟେ ।

## ଉଚକୋଇତ ଦୁଡ଼ି—

ପଣ୍ଡାପଡ଼ା ଥାନାର ତିନ ମାଇଲ ଦୂରରେ ଉଚକୋଇତ ଦୁଡ଼ି ଅବସ୍ଥିତ । ଏଠାରେ ଗୋଟିଏ ପର୍ବତ ଗୁମ୍ଫା ଭିତରେ ଗୋଟିଏ ଦେବୀ ମୂର୍ତ୍ତି ବିଦ୍ୟମାନ ଅଛି । ଲୋକ କଥାରେ ଏହିସ୍ଥାନ ରତ୍ନାକର ଦସ୍ୟୁର ଆଖଡ଼ା ଘର ଥାଇ ଏହି ଦେବୀ ମୂର୍ତ୍ତି ଅଧିଷ୍ଠାତ୍ରୀ ଦେବୀ ରୂପେ ପୂଜିତ ହେଉଥିଲେ ।

## ପାଟହରା—

ପିଠାଗୋଲା ଗ୍ରାମ ଠାରେ ଚନ୍ଦନ ଗିରି ନାମରେ ଗୋଟିଏ ପର୍ବତ ଅଛି । ଏହାର ଉଚ୍ଚତା୧୦୦୦ଫୁଟ । ଏହି ପର୍ବତର ବକ୍ଷ ଦେଶରେ ପାଟହରା ନାମକ ଗୋଟିଏ ଗୁମ୍ଫା ଅଛି । ଗୁମ୍ଫା ଭିତରକୁ ପ୍ରବେଶପାଇଁ ଗୋଟିଏ ସୁଡ଼ଙ୍ଗ ଦ୍ୱାର ଅଛି । ଗୁମ୍ଫା ଦ୍ୱାର ଦେଶରୁ ଅଳ୍ପ କିଛି ଦୂର ଗୋଟେଇ କରି ଯିବାପରେ ଠିଆହୋଇ ଯିବାର ବାଙ୍କ ବାଙ୍କ ରାସ୍ତା ଅଛି । ଏହି ବାଙ୍କ ବାଙ୍କ ରାସ୍ତାରେ ଗଲା ପରେ ଗୋଟିଏ ପ୍ରଶସ୍ତ ଗୁମ୍ଫା ଦେଖାଯାଏ । ଏହି ଗୁମ୍ଫାର ଶୀର୍ଷ ଦେଶରେ ଛତ୍ରାକାରରେ ଥିବା ଗୋଟିଏ ପଥର ବକ୍ଷରେ ବିଭିନ୍ନ ବର୍ଣ୍ଣର ମୂଲ୍ୟବାନ ପଥର ଖଚିତ ଥିବାର ଦେଖାଯାଏ । ପାହାଡ଼ ପର୍ବତ ପରିପୂର୍ଣ୍ଣ ପ୍ରସ୍ତର ରାଜ୍ୟ କେନ୍ଦୁଝରର ଏହାଯେ ଅମୂଲ୍ୟ ରତ୍ନ ଭଣ୍ଡାର ଏଥିରେ ସନ୍ଦେହ ନାହିଁ । ଏହି ଗୁପ୍ତ ତଥ୍ୟର ଉନ୍ମୋଚନ ଆଦ୍ଭୁତ ଅନୁସନ୍ଧାନ ସାପେକ୍ଷ ଅଟେ । ଏହି ଗୁମ୍ଫାର ଶୀର୍ଷ ଦେଶରେ ଦୃଷ୍ଟି ନିବଦ୍ଧ କଲେ ଦେଖଯାଏ ଯେ ଏହି ମୂଲ୍ୟବାନ ପ୍ରସ୍ତର ଖଣ୍ଡମାନ ଅତିସ୍ପର ସଜ୍ଜିତ ଖଚିତ ହୋଇ ରହିଅଛି । କୋଣାର୍କ ସୂର୍ଯ୍ୟମନ୍ଦିର ବକ୍ଷରେ ଖିଳଣ ସୂତ୍ରରେ ପଥର ଖଣ୍ଡମାନ ଖଚିତ ହୋଇଥିବା ଏହି ଗୁମ୍ଫାରେ ପଥର ଖଣ୍ଡମାନ ଖଚିତ ହୋଇ ରହିଅଛି । ଖଚିତ ପଥର ଖଣ୍ଡର ଜ୍ୟୋତି ଅଷ୍ଟ ରତ୍ନ ପରି ଘାପ୍ତମାନ । ଲୋକେ କହନ୍ତି ରତ୍ନାକର ଦସ୍ୟୁ ଏହି ସମସ୍ତ ଅମୂଲ୍ୟ ପଥର ଖଣ୍ଡମାନ ସଂଗ୍ରହ କରି ସେହିଠାରେ ସଂଗୋପନ ର ଲୁକାୟିତ କରି ରଖି ଯାଇଅଛି ।

ଏହି ଚନ୍ଦନଗିରି ପର୍ବତରୁ ମୁଷଲନଦୀ ପ୍ରବାହିତ ହୋଇ ବୈତରଣୀ ନଦୀ ସହିତ ମିଶି ଯାଇଅଛି ।

## ଚନ୍ଦନ ପେଡି

ସୀତାବିଂଜର ଉତ୍ତରରେ ଟିପିଳଅ ଗ୍ରାମ ଠାରେ ଠାକୁରାଣୀ ନାମରେ ଯେଉଁ ପର୍ବତ ଅବସ୍ଥିତ ତାହାର ଶୀର୍ଷଦେଶ ଗୋଟିଏ ବୃହତ ଗୋଲାକାର ଚନ୍ଦନ ପେଡି ସଦୃଶ ପଥର ଖଣ୍ଡ ହୋଇ ଥିବାରୁ ଲୋକେ ଏହାକୁ ଚନ୍ଦନ ପେଡି ବୋଲି ବର୍ଣ୍ଣନା କରିଥାନ୍ତି । ଏହି ପର୍ବତରୁ ବିଭିନ୍ନ ବର୍ଣ୍ଣର ବର୍ତ୍ତୁଳାକାର ପଥର ଖଣ୍ଡ ମାନ ସଂଗ୍ରହ କରି ଗ୍ରାମବାସୀ ମାନେ ତହିଁରୁ ମୂଲ୍ୟବାନ ମାଳ ଗୁନ୍ଥି ବ୍ୟବହାର କରିଥାନ୍ତି । ଏହି ପର୍ବତରୁ ସ୍ୱର୍ଣ୍ଣରେଣୁ ଝରୁ ଥିବାର ପ୍ରବାଦ ଅଛି । ଏହି ପଥର ମାଳ ଗୁଡକ ସ୍ୱର୍ଣ୍ଣରେଣୁ ଆକୃଷ୍ଟ ହୋଇଥିବାରୁ ଏହି ପର୍ବତକୁ ସ୍ୱର୍ଣ୍ଣଝରା ବୋଲି କୁହାଯାଏ । ସୀତା ବିଂଜରେ ବ୍ୟବହୃତ ହୋଇଥିବା ପଥରମାଳ ଗୁଡକ ଏହିଠାରୁ ସଂଗୃହିତ ହୋଇଥିବା ଜଣାଯାଏ ।

## ବୁଢିପାଟ ପର୍ବତ

ସୀତା ବିଂଜର ଅଳ୍ପ ଦୂରରେ ଅବସ୍ଥିତ ବୁଢିପାଟ ପର୍ବତ ଗୁମ୍ଫାରୁ ଡାଙ୍ଗ ଆଗଣି ଗ୍ରାମର ଧନେଶ୍ୱର ନାମକ ଜଣେ ସାଧୁପ୍ରାଣ ଭଦ୍ରଲୋକ ଗୋଟିଏ ପ୍ରକାଣ୍ଡ ଲୁହା ଖଣ୍ଡା ପାଇଅଛି । ଏହି ଖଣ୍ଡାରେ ଏପର୍ଯ୍ୟନ୍ତ କଳଙ୍କି ଲାଗି ନାହିଁ । ଲୋକେ କହନ୍ତି ରତ୍ନାକର ଦସ୍ୟୁଦଳ ଏହି ପ୍ରକାର ତରବାରୀ ବ୍ୟବହାର କରୁଥିଲେ । ଏହି ଖଣ୍ଡାକୁ ଦେଖିଲେ ସେ ଯୁଗର ଲୋକ ମାନଙ୍କର ବଳବୀର୍ଯ୍ୟ-ବପୁ ସମ୍ବନ୍ଧରେ ସମ୍ୟକ ଧାରଣା କରାଯାଇ ପାରେ ।

## ଜାରାଷଣ୍ଡୁ ପାହାଡ

ଏହାର ଉଚ୍ଚତା୧୦୦୦ଫୁଟ । ଏହା ସୀତାବିଂଜ ପର୍ବତର ପୂର୍ବ ଭାଗରେ ଅବସ୍ଥିତ ଅଟେ । ଏଠାରେ ଗୋଟିଏ ଗୁମ୍ଫା ଭିତରେ ଖୋଦିତ ଜମ୍ବୁରୁ ଚିହ୍ନ ପଥର ବକ୍ଷରେ ରହି ଅଛି । ଏଠାରେ ପଥର ଦେହରେ କେତେକ ଅଭିଲେଖ ଥିବାର ଦେଖା ଯାଏ । ରାତ୍ର ସମୟରେ ଗୁମ୍ଫା ଦ୍ୱାର ଦେଶରେ ମା' ମା' ଧ୍ୱନ ଶୁଣାଯାଏ । ଗୁମ୍ଫା ଭିତରକୁ ଯିବାକୁ ଏକ ସୁଡଙ୍ଗ ଦ୍ୱାର ରହିଅଛି । ଏହାର ଚତୁଃପାର୍ଶ୍ୱରେ ଯୋଡା ଯୋଡା ହୋଇ ବାର ଯୋଡା ପୋଖରୀ ଥିବାର ଦେଖାଯାଏ, ମାତ୍ର ବର୍ତ୍ତମାନ ତାହା କୃଷକମିରେ ପରିଣତ ହୋଇ ଅଛି । ପୂର୍ବେ ଏହି ସ୍ଥାନଯେ ଶୈବ ଧର୍ମ ପ୍ରଚାର କ୍ଷେତ୍ର ଥିଲା ଏଥିରୁ ଅନୁମିତ ହୁଏ ।

## ଚନ୍ଦ୍ରକାନ୍ତ ମଣି

ସୀତାବିଞ୍ଜିର ପଶ୍ଚିମରେ ଗୋନାସିକା ପର୍ବତର ପାଦଦେଶରେ ଅବସ୍ଥିତ ବ୍ରହ୍ମେଶ୍ୱର ମହାଦେବଙ୍କ ବ୍ୟୋମକେଶ ମଧ୍ୟରୁ ଚନ୍ଦ୍ରକାନ୍ତମଣି ସଦୃଶ ଆଦ୍ୟ ବୈତରଣୀର ଜଳଧାରା ନିର୍ଗତ ହୋଇ ଥିବାରୁ ଏହି ପର୍ବତର ଅନ୍ୟ ନାମ ଚନ୍ଦ୍ର ମଣ୍ଡଳ ଗିରି ଅଟେ । ପ୍ରବାଦ ଅଛି ଏହି ପର୍ବତରେ ଚନ୍ଦ୍ରକାନ୍ତ ମଣି ପଥର ମିଳିଥାଏ । ଏହି ପଥର ଅଙ୍ଗରେ ଧାରଣ କଲେ ସର୍ବାଭିଷ୍ଟ ପୂର୍ଣ୍ଣ ହୋଇଥାଏ । ସଂଧ୍ୟା ସମୟରେ ଏହି ଚନ୍ଦ୍ରମଣ୍ଡଳ ଗିରିର ଶୀର୍ଷ ଦେଶ ଧବଳ ଚନ୍ଦ୍ର ଜ୍ୟୋସ୍ନାବୃତ୍ତ ହୋଇ ସୀତାବିଞ୍ଜି ପର୍ବତକୁ ଉଦ୍ଭାସିତ କରିଥାଏ ।

## ଫୁଲବାଡ଼ି

ସୀତାବିଞ୍ଜିର ଯୋଡ଼ାଗଡ଼ ଠାରେ ଫୁଲବାଡ଼ି ନାମରେ ଗୋଟିଏ ସ୍ଥାନ ଅଛି । ପୂର୍ବେ ଏହା ବାଲ୍ମିକ ମହର୍ଷିଙ୍କ ତପୋବନର ପୁଷ୍ପ ଉଦ୍ୟାନ ଥିଲା । ଏଠାରେ ଷଣ୍ଢବଳଦ ନାମରେ ଗୋଟିଏ ପଥର ଅଛି । ଏହି ପଥରରୁ କାଲିଞ୍ଜର ନଦୀ ପ୍ରବାହିତ ହେଉ ଅଛି । ପ୍ରବାଦ ଅଛି ଋଷିଙ୍କର ଫୁଲବାଡିରେ ପଶି ଗୋଟିଏ ଷଣ୍ଢ ତାହା ନଷ୍ଟ କରିବାରୁ ଋଷିଙ୍କର କ୍ରୋଧାଗ୍ନିରେ ଷଣ୍ଢର ମୁଣ୍ଡ ଛିଡିଯାଇ ଗୋନାସିକାରେ ପଡ଼ିଲା ଓ ତହିଁରୁ ବୈତରଣୀ ନଦୀର ଉତ୍ପତ୍ତି ହେଲା ଏବଂ ପର୍ବତର ନାମ ଗୋନାସିକା ହେଲା । ଏହି ଷଣ୍ଢର ବକ୍ଷଦେଶ ଫୁଲବାଡି ଠାରେ ପଡ଼ି ରହି ତହିଁରୁ କାଲିଞ୍ଜର ନଦୀ ଉତ୍ପନ୍ନ ହୋଇ ବୈତରଣୀ ନଦୀ ସହ ମିଶି ଅଛି ।

## ଢେଙ୍କିକୋଟ

କେନ୍ଦୁଝର-ଜାଜପୁର ପ୍ରଧାନ ରାସ୍ତାରେ କେନ୍ଦୁଝର ଗଡ଼ ଠାରୁ ୨୩ ମାଇଲ ଦୂରରେ ଅବସ୍ଥିତ ଢେଙ୍କିକୋଟ ଏକ ଘାଟି ଯାଗା ଅଟେ । ଏହା ଗୋଟିଏ ପଞ୍ଚାୟତ ହେଡ୍ କ୍ୱାଟର ଓ ବ୍ୟବସାୟ କେନ୍ଦ୍ର ଅଟେ । ସେଠାରୁ ସୀତାବିଞ୍ଜି ୭ କି: ମି ଦୂର ଅଟେ । ଢେଙ୍କିକୋଟର ଚତୁପାର୍ଶ୍ୱରେ ବିକ୍ଷିପ୍ତ ଭାବରେ ରହିଥିବା ପାହାଡ଼, ପଥର ଖଣ୍ଡରେ ଅଦ୍ଭୁତ ସଂଖ୍ୟାନର ଚିଙ୍କି ଗାତର ଚିହ୍ନରୁ ଓଡ଼ିଆ ଭାଗବତରେ ଲିଖିତ ଅବଧୂତଙ୍କ ଗୁରୁ ଦୀକ୍ଷା ପ୍ରଣାଳୀର ସତ୍ୟତା ଜଣାପଡ଼େ ।

ଲୋକେ କହନ୍ତି ଏକଦା ଅବଧୂତ ବୈତରଣୀ ସ୍ନାନ କରି ବାଲ୍ମିକ ଋଷିଙ୍କ ଆଶ୍ରମ ପରିଦର୍ଶନରେ ଆସି ଢେଙ୍କିକୋଟ ଠାରେ ପହଞ୍ଚି ମହାମୂଲ୍ୟ କ୍ଷେତ୍ର ସୀତାବିଞ୍ଜି ଅରଣ୍ୟାଞ୍ଚଳରେ ବାସ କରୁଥିବା ଗୋଟିଏ ବ୍ରାହ୍ମଣୀ ଘରେ ଆତିଥ୍ୟ ଭିକ୍ଷା କଲେ ।

ଋଷିଙ୍କର ଆଗମନରେ ବ୍ରାହ୍ମଣୀ ଅନ୍ନ ଭୋଜନର ବ୍ୟବସ୍ଥା କରିବା ନିମନ୍ତେ ତାହାର କନ୍ୟାକୁ ଡାକ କହିଲା –

ବର୍ଣ୍ଣର କଣ କନ୍ୟା ମାତା
ନିକଟେ ବସାଇ ଦୁହିତା ।
ବୋଲଇ କନ୍ୟା ମୁଖ ଚୁମ୍ବି
ତଣ୍ଡୁଳ ଆନସ ଧାନ ଦେଇ ।
ବେଗେକୁ କୁଟ ଢେଙ୍କି ଭରି
ତା ଶୁଣି ବ୍ରାହ୍ମଣ କୁମାରୀ ।
ଢେଙ୍କି ମୂଷଳ ଏକ କରି
କୁଟଇ ବେନି କରେ ଧରି ।
ଭୁଜେ ତା ବଳୟ କଙ୍କଣ
କୁଟନ୍ତେ ଶୁଭେ ରୁଣ ଝୁଣ ।
ଶୁଣି କୁମାରୀ ଲଜ୍ଜା ପାଇ
ଅଧେ କଙ୍କଣ ହସ୍ତୁ ଫେଇ ।
ପୁଣି କୁଟନ୍ତେ ଧୀରେ ଧୀରେ
ହସ୍ତ କଙ୍କଣ ନାଦ କରେ ।

କୁମାରୀ ମନେ ବିଚାରଇ
ସଂଗ ଗହଳେ ଗୋଳ ହୋଇ ।
ଏମନ୍ତ ବିଚାରିଣ ଥୋକେ
ପୁଣି ଫେଇଲା ଏକେ ଏକେ ।
ବେନି କଙ୍କଣ ବେନି କରେ
କୁଟନ୍ତେ ଶବଦ ନକରେ ।
ଯହିଁ ଅନେକ ସଙ୍ଗ ମିଳି
ଅବଶ୍ୟ ଉପୁଜଇ କଳି ।
ଏଣୁ କୁମାରୀ ଅନୁରାଗେ
ଗୁରୁ ବଚନ ଶିକ୍ଷା ଲାଗେ ।
ଏକାନ୍ତେ ଭ୍ରମୁଥାଇ ମୁହିଁ
କେବେହେଁ ସଙ୍ଗ ନକରଇ ।

ଏହି ପ୍ରକାର ଢେଙ୍କି ମୂଷଳ ଢିଙ୍କିକୁ ବଧାତା ଢିଙ୍କି କୋଲଯାଏ । ନାରଦ ମହର୍ଷୀ ଯେଉଁ ଢିଙ୍କି ବାହାନ ବ୍ୟବହାର କରନ୍ତି ତାହା ପକ୍ଷୀରାଜ ଢିଙ୍କି ଅଟେ । ଏହି ପ୍ରକାର ବଧାତା ଢିଙ୍କି କୁଟା ଚିହ୍ନ ଢେଙ୍କିକୋଟର ପଥର ବକ୍ଷରେ ଦେଖିବାକୁ ମିଳେ ।

## ଯୋଡ଼ାଗଡ଼

ସୀତା ଠାକୁରାଣୀଙ୍କ ଶାଳର ଦକ୍ଷିଣ ପୂର୍ବରେ ଅବସ୍ଥିତ ଭଣ୍ଡାରେଶ୍ୱର ଏପର୍ଯ୍ୟନ୍ତ ପ୍ରାପ୍ତ ଛନ କ. ମି ବ୍ୟାପୀ ଯେଉଁ ଭଗ୍ନ ପ୍ରାଚୀର ରହି ଅଛି ତାହାକୁ ଯୋଡା ପ୍ରାଚୀର ବୋଲଯାଏ । ଏହି ଯୋଡା ପ୍ରାଚୀର କାନ୍ଥ ହସ୍ତ ମଧ୍ୟରେ ଏକଥ ଦୁଇଜଣ ଲୋକ ଧରା-ଧରି ହୋଇ ଯାତାୟାତ କରିପାରିବାର ସୁଡ଼ଙ୍ଗ ପଥ ରହି ଅଛି । ଏହାକୁ ଯୋଡ଼ାଗଡ଼ ବୋଲାଯାଏ ।

ଏଥିରୁ ଜଣାଯାଏ ଯେ ଏକଦା ଏଠାରେ ଏକ ସୁ ବୃହତ ଦୁର୍ଗ ନିର୍ମିତ ହୋଇଥିଲା । ଏହି ଯୋଡା ଦୁର୍ଗର ଦକ୍ଷିଣରେ ସୀତାବଞ୍ଜି ଗଡର ସିଂହଦ୍ୱାର ଅବସ୍ଥିତ । ପ୍ରତ୍ନତତ୍ତ୍ୱ କର୍ତ୍ତୃପକ୍ଷ ଏହି ସ୍ଥାନର ୧୦ ଫୁଟ ପର୍ଯ୍ୟନ୍ତ ଖୋଳାଇ ଦେଖିଥିଲେ ଯେ ମାଟି ଭିତରେ

୩।୪ ଫୁଟ ଆକୃତ ବିଶିଷ୍ଟ ଅକର୍ମ ଶିଳା ଖଣ୍ଡ ମାନଙ୍କ ଦ୍ୱାରା କାନ୍ଥ ନିର୍ମିତ ହୋଇଛି । ଏହି ଯୋଡ଼ା ଗଡ ଠାରୁ ବିଭିନ୍ନ ବର୍ଣ୍ଣର ପଥର ମାଳ ସଂଗ୍ରହ କରାଯାଇଥାଏ ।

ସୀତାବିଞ୍ଜିର ଗିରି ପୃଷ୍ଠରେ ଓ ସୁବିସ୍ତୀର୍ଣ୍ଣ ପାଦ ଦେଶରୁ ବହୁ ପ୍ରାଚୀନ କାଳର ବୃହଦାକାର ଇଷ୍ଟକ ସ୍ତୂପ, ପ୍ରାଚୀନ ପ୍ରସ୍ତର ଯୁଗର ଅସ୍ତ୍ର ଶସ୍ତ୍ରର ଭଗ୍ନାବଶେଷ, ବୌଦ୍ଧ ଓ ତାମ୍ର ସଭ୍ୟତାର ସଙ୍କେତ ବହୁଳ ଭାବରେ ମିଳି ଅଛି ।

ବର୍ତ୍ତମାନ ସୀତାବିଞ୍ଜି ବୋଲି ଯେଉଁ ସ୍ଥାନକୁ ନିର୍ଣ୍ଣୟ କରାଯାଉଅଛି ଓ ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷ ଯେଉଁଠି ସ୍ଥାନ ମାଡି ବସିଛି ତାହାର ପରିମାଣ ୨୦୦ ଏକର ଜମିରୁ କମ୍ ନୁହେଁ । ଏତେ ପରିମାଣ ଜମି ଉପରେ ଏହି ବିଶାଳ ଧ୍ୱଂସସ୍ତୂପ ଦେଖିଲେ ଧାରଣା ଜନ୍ମେ ଯେ ପୂର୍ବେ ଏହା ଏକ ରାଜଧାନୀ କିମ୍ବା ପ୍ରସିଦ୍ଧ ଧର୍ମ ବିହାର ଥିଲା । ଏଠାରେ ବ୍ୟବହୃତ ହୋଇଥିବା ବିରାଟକାୟ ପଥର ଖଣ୍ଡ ଦେଖିଲେ ସେ ଯୁଗର ମସ୍ତିଷ୍କର ଶକ୍ତି ସମ୍ବନ୍ଧରେ ଧାରଣା ଜନ୍ମେ । ଉତ୍ତରକୁ ପ୍ରତ୍ୟାବର୍ତ୍ତନ ସମୟରେ ଯେଉଁ ଯେଉଁ ସ୍ଥାନରେ ବାନର ଭଲ୍ଲୁକ ପରିବୃତ ରାମ ବାହିନୀ ଅବସ୍ଥାନ କରୁଥିଲେ ସେହି ସେହି ସ୍ଥାନ ମାନଙ୍କରେ ଏହିପରି ପଥର ଘର ନିର୍ମିତ ହୋଇଥିବା ଅନୁମାନ କରାଯାଏ ।

## ଭଣ୍ଡାର ଘର

ସୀତାବିଞ୍ଜି ଠାରେ ଥିବା ଛଅ ଗୋଟି ଠାଣୀ ବା ପାହାଡ଼ର ବୈଶିଷ୍ଟ୍ୟ ଏହିଯେ ଏହା ବିନ୍ଧ୍ୟାଚଳ ଅଟେ । ପ୍ରବାଦ ଅଛି ବାଲ୍ମୀକି ଆଶ୍ରମରେ ସମସ୍ତ ଧନ ନେଇ ଏହି ଭଣ୍ଡାର ମଧ୍ୟରେ ସଂଚିତ ରହିଅଛି । ପଥରରେ ନିର୍ମିତ ଏହି ପଥର ଭଣ୍ଡାର ଘର ଦୂରରୁ ଗୋଟିଏ ହାତ ଗଢା ମନ୍ଦିର ପରି ଦେଖାଯାଏ । ଭଣ୍ଡାର ଘରର ଦୁଇ ପାଖରେ ଦୁଇ ଖଣ୍ଡ ବୃହଦାକାର ପଥର ଅଲଗା ଅଲଗା ଲଗାଲଗି ହୋଇ ରହିଅଛି । ଲୋକେ ଏହାକୁ ଭଣ୍ଡାର ଘରର ଯାଉଁଳି କବାଟ ବୋଲି କହନ୍ତି । ଏହି କବାଟର ଉଚ୍ଚତା ୬୫ ଫୁଟ ହେବ ।

## ରାନ୍ଧୁଣୀ ଖଡା

ଭଣ୍ଡାର ଘର ନିକଟରେ ଅବସ୍ଥିତ ଭଗ୍ନସ୍ତୂପକୁ ଆଶ୍ରମର ରନ୍ଧାଘର ବୋଲି କୁହାଯାଏ । ଏଠାରେ ବହୁ ପରିମାଣରେ ମୃତ୍ତିକା ପାତ୍ରର ଭଗ୍ନାବଶେଷ ଦେଖିବାକୁ ମିଳେ । ଅନୁମାନ ଏହି ମୃତ୍ତିକା ପାତ୍ର ଗୁଡ଼ିକ ରନ୍ଧନ, ଭୋଜନ ଓ ପାନୀୟ ପାତ୍ର ରୂପେ ବ୍ୟବହୃତ ହେଉଥିଲା । ଏହି ସ୍ଥାନର ବୃତ୍ତ କୋଣରେ ଯେଉଁ ଭଗ୍ନ ଘରର ଅବଶିଷ୍ଟାଂଶ ରହି ଅଛି ତାହା ଶେଷ ଘରର ସଙ୍କେତ ଅଟେ । ଏଠାରେ ମାଟି ଭିତରୁ ମିଳୁଥିବା ଅସ୍ଥି ଭଗ୍ନ କଲେ ତହିଁରେ ବହଳ ରକ୍ତ ଧାରର ରେଖା ଦେଖାଯାଏ ।

## ଋଷି ଗୁଂଫା

ସୀତାବିଞ୍ଜି ଠାରେ ଋଷି ଗୁଂଫା ନାମରେ ଗୋଟିଏ ବୃହତ ପ୍ରସ୍ତର ସ୍ତୂପ ରହିଅଛି । ଏହା ଚାରି ପାଞ୍ଚ ଖଣ୍ଡ ବିଶାଳକାୟ ପଥର ଉପରେ ଥୁଆ ହେଲାପରି ରହି ଅଛି । ସେହି ପଥର ଫାଙ୍କ ଯାଗାକୁ ଗୁଂଫା ବୋଲାଯାଏ । ଖରା ବର୍ଷାରେ ଏହି ଗୁଂଫାରେ ବିଶ୍ରାମ କଲେ କୌଣସି କଷ୍ଟ ହୁଏ ନାହିଁ । ଏହି ଗୁଂଫାର ଚତୁଃପାର୍ଶ୍ୱରେ ଖୁବ୍ ବଡ଼ ବଡ଼ ଓସାରିଆ ଇଟା ଖଣ୍ଡ ସ୍ଥାନେ ସ୍ଥାନେ ୮।୧୦ ଫୁଟ ଉଚ୍ଚରେ ଜମା ହୋଇ ପଡ଼ି ରହିଛି । ଗୋଟିଏ ଗୋଟିଏ ଇଟାର ଆକୃତି ୧୮” × ୭” × ୩” ହେବ । ଏହି ଇଟାକୁ ଭାଙ୍ଗି ଦେଲେ ତା ଭିତରୁ ଚଷ୍ ଆକାରରେ ଛିଦ୍ର ମାନ ଥିବାର ଦେଖା ଯାଏ । ଏହି ଇଷ୍ଟକ ସ୍ତୂପ ନିକଟରେ କଙ୍କରିତ ଅକର୍ମ ଶିଳା ଉପରେ ଅନେକ ଲିପି ଖୋଦିତ ହୋଇ ଅଛି । ଏହା ଏତେ ପ୍ରାଚୀନଯେ ତାହାର ପାଠୋଦ୍ଧାର ଏପର୍ଯ୍ୟନ୍ତ ହୋଇ ପାରି ନାହିଁ ।

## ସୂର୍ପଣଖା

ସୀତାବିଞ୍ଜିରେ ଗୋଟିଏ ବିଶାଳ ଶୈଳ ନିକଟରେ ୯ ଇଞ୍ଚ ବ୍ୟାସ ବିଶିଷ୍ଟ ଖଣ୍ଡିଏ ଗୋଲାକାର ମସୃଣ ପଥର ପୋତା ହୋଇ ରହି ଅଛି । ଭୂମି ଠାରୁ ଏକ ଫୁଟ ଉଚ୍ଚରେ ଏହି ପଥରର ଶୀର୍ଷାଂଶରେ ଚାରି ଦିଗକୁ ଚାରି ଗୋଟି ମୁଖର ଆକୃତି ଦେଖା ଯାଏ । ଅତ୍ରହିକ ମୁଖମଣ୍ଡଳ ଈଷତ୍ ଲମ୍ବାକାର ହେଲେ ମଧ୍ୟ ମୁଖର କୌଣସି ଚିହ୍ନ ବର୍ତ୍ତି ନାହିଁ । ବରଂ ମସୃଣ ହୋଇ ଅଛି । ମୁଖର ଶେଷ ଅଂଶରେ (ଚିବୁକର ପ୍ରାନ୍ତ ଭାଗରେ) ଗୋଟିଏ ବେଷ୍ଟନୀ ରେଖା ଅଛି । ଏହି ପଥରଟି କେତେ ତଳକୁ ଯାଇ ଅଛି ତାହା କେହି କହି ହେବ ନାହିଁ । ହଲାଇଲେ ମଧ୍ୟ ଏହା ହଲେ ନାହିଁ । ଏହା ଋଷୀ ଗୁଂଫାର ଶିଳା-ଲିପିର ନିକଟରେ ଅବସ୍ଥିତ । କାଳକ୍ରମେ ଏହି ମୁଖ ଚାରି ଗୋଟିର ନାସା ଓ କର୍ଣ୍ଣ କେତେକାଂଶରେ କ୍ଷୟ ପ୍ରାପ୍ତ ହୋଇ ଯାଇ ଥିବାରୁ ଲୋକେ ଏହି ବିକୃତ ମୂର୍ତ୍ତିକୁ ସୂର୍ପଣଖା ବୋଲି କହି ଥାନ୍ତି । ପ୍ରାଚୀନ ପ୍ରଥା ଅନୁଯାୟୀ କେହି ସ୍ତ୍ରୀ ଲୋକ ଏହି ବାଟ ଦେଇ ଜଙ୍ଗଲକୁ ଗଲାବେଳେ ସେ ସୂର୍ପଣଖାଙ୍କ ପାଇଁ ସୁଆଁଳି ଲଇରେ ଗୋଟିଏ ମୃତ୍ତିକା ତିଆରି କରି ଉପହାର ଦେଇ ଥାଏ । ଅନୁମାନ କରାଯାଏ ଏହି ସୂର୍ପଣଖା ଅପ୍ରସ୍ଥ ମୂର୍ତ୍ତିଟି ସୀତାବିଞ୍ଜିର ଅପୂଜିତା ଅଧିଷ୍ଠାତ୍ରୀ ଦେବୀ ଅଟନ୍ତି ।

ମାତ୍ର ସ୍ଥାନୀୟ ଲୋକ ପ୍ରବାଦରେ ଏହି ଅପ୍ରସ୍ଥ ପଥର ମୂର୍ତ୍ତିଟି ସୂର୍ପଣଖାର ମୂର୍ତ୍ତି ବୋଲି କହିବା ପକ୍ଷରେ କୌଣସି ଯୌକ୍ତିକତା ଥିବା ଜଣା ଯାଏ ନାହିଁ । କାରଣ ସୀତାବିଞ୍ଜିର ଦ୍ରଷ୍ଟବ୍ୟ ସହିତ ସୂର୍ପଣଖାର କୌଣସି ସଂପର୍କ ଥିବାର ଜଣାଯାଏ ନାହିଁ । ପରନ୍ତୁ ଲୋକେ କହନ୍ତି ଏହି ଅପ୍ରସ୍ଥ ମୂର୍ତ୍ତିଟି ହେଉଛି ଚତୁର୍ମୁଖ ବ୍ରହ୍ମାଙ୍କର ।

ସେମାନଙ୍କର ମତରେ ସୀତାବଞ୍ଜି ପୂର୍ବ ରତ୍ନାକର ଦସ୍ୟୁର ଆଡ୍ଡା ସ୍ଥଳ ଥିଲା ଏବଂ ଏହାର ପାପର ପ୍ରାୟଶ୍ଚିତ ପାଇଁ ବ୍ରହ୍ମା ଏହିଠାରେ ରତ୍ନାକରଙ୍କୁ ରାମ ନାମ ମହା ମନ୍ତ୍ର ଦୀକ୍ଷା ଦେଇ ଯୋଗ ସାଧନ ନିମନ୍ତେ ପରାମର୍ଶ ଦେଇ ଥିଲେ । ରତ୍ନାକର ଦସ୍ୟୁ ବ୍ରହ୍ମାଙ୍କ-ଠାରୁ ମନ୍ତ୍ର ଦୀକ୍ଷା ନେଇ ରୁଷି ଗୁଂଫା ଠାରେ ତପସ୍ୟା କରି ପରବର୍ତ୍ତୀ କାଳରେ ବାଲ୍ମୀକି ମହର୍ଷୀ ନାମରେ ଖ୍ୟାତି ଅର୍ଜନ କରି ରାମାୟଣ ରଚନା କରି ଥିଲେ ।ଏହିଠାରେ ବାଲ୍ମୀକି ଯେଉଁ ପ୍ରସିଦ୍ଧ ଧର୍ମ ବିହାର ଗଠନ କରି ଥିଲେ ।ତାହାହିଁ ବାଲ୍ମୀକି ତପୋବନ ନାମରେ ଖ୍ୟାତ ଥିଲା ।

## ରାବଣ ଛାୟା

ସୀତାବଞ୍ଜି ଠାରେ ଥିବା ରାବଣ ଛାୟା ଆଶ୍ରୟ ସ୍ଥଳୀରେ ଯେଉଁ ଉନ୍ନତ ଚିତ୍ରାଙ୍କନ ଦେଖିବାକୁ ମିଳେ ତାହା ୪ର୍ଥ ପଞ୍ଚମ ଶତାବ୍ଦୀର ବୋଲି ନିରୂପଣ କରାଯାଇ ଅଛି। ସୀତାବଞ୍ଜି ପର୍ବତରେ ରାବଣ ଛାୟା ହେଉଛି ଏକ ପ୍ରାକୃତିକ ଆଶ୍ରୟ ସ୍ଥଳୀ। ଗୋଟିଏ ବିଶାଳକାୟ ପ୍ରସ୍ତର ଉପରେ ୨୨ଫୁଟ ଉର୍ଦ୍ଧ୍ୱରେ ଅନ୍ୟ ଏକ ପଥର ଉଚ୍ଚ ଆଗକୁ ପ୍ରାୟ ୧୫ ଫୁଟ ଯାଏ ମଡ଼ି ଆସି ଏହି ପ୍ରାକୃତିକ ଶୈଳ ଆଶ୍ରୟସ୍ଥଳୀ ସୃଷ୍ଟି କରି ଅଛି । ଛତାକାରରେ ବାହାରକୁ ମାଡ଼ି ଆସିଥିବା ଏହି ପଥରର ନିମ୍ନ ପଟରେ ଏକ ରାଜକୀୟ ବିଜୟ ଯାତ୍ରାର ଚିତ୍ର ଅଙ୍କିତ ହୋଇଥିବା ଦେଖାଯାଏ। ସେହି ଚିତ୍ରରେ ମୂଳତଃ ମାଟିଆ, ଧଳା, ଗେରୁଆ, ନୀଳ ଓ ହଳଦିଆ ରଙ୍ଗ ସ୍ପଷ୍ଟ ଭାବରେ ପ୍ରକାଶିତ ହୁଏ । ଚିତ୍ରଟିରେ ଜଣେ ରାଜପୁରୁଷ ହସ୍ତୀ ଉପରେ ବସି ଦକ୍ଷିଣ ହସ୍ତରେ ଅଙ୍କୁଶ ଓ ବାମ ହସ୍ତରେ ନୀଳ କମଳ ଧରି ଯାତ୍ରା କରୁଥିବାର ଦେଖାଯାନ୍ତି । ତାଙ୍କର ପଶ୍ଚାତ ଦେଶରେ ଜଣେ ଅନୁଚର-ଡାହାଣ ହସ୍ତରେ ଚାମର ଓ ବାମ ହସ୍ତରେ ତାହାଙ୍କ ଉପରକୁ ଛତ୍ର ଉତ୍ତୋଳନ କରି ବସିଛନ୍ତି । ତାଙ୍କ ସମ୍ମୁଖରେ ଜଣେ ଅଶ୍ୱାରୋହୀ ଦ୍ରୁତ ବେଗରେ ଅଶ୍ୱ ଚାଳନା କରି ଧାବମାନ । ।ତାହାଙ୍କ ଆଗରେ ଦଳେ ଲୋକ ଦ୍ରୁତ ଗତିରେ ଯାଉଛନ୍ତି । ସେହି ପଦାତିକଙ୍କ ମଧ୍ୟରେ ଜଣେ ନାରୀ ଓ ଗୃହକର୍ତ୍ତା ପୁରୁଷଙ୍କୁ ଚିହ୍ନା ଯାଇ ପାରେ । ହସ୍ତୀର ପଶ୍ଚାତ ଭାଗରେ ଆଉଜଣେ ନାରୀ ଅନ୍ଧରୁ ଅଣ୍ଟା ପର୍ଯ୍ୟନ୍ତ ପରିଧାନ କରି ଓ ଦେହ ଉପରେ ଧଳାଲୁଗା ଘୋଡାଇ ଦ୍ରୁତ ବେଗରେ ଚାଲିଛନ୍ତି ଶୋଭା ଯାଉଛନ୍ତି । ଆକାଶରେ ବିଦ୍ୟାଧର ମାନେ ବିଚରଣ କରୁଥିବା ଦୃଶ୍ୟ ମଧ୍ୟ ପ୍ରଦର୍ଶିତ ହୋଇ ଅଛି। ହସ୍ତୀ ଚିତ୍ରର ଠିକ୍ ତଳେ ଏକ ଛୋଟ ଅଭିଲେଖ ଦେଖା ଯାଏ ଓ ତାହା " ରାଜକ ଦଶାଭଞ୍ଜ " ବୋଲି ପାଠ କରାଯାଇ ଅଛି ।

ସୀତାବଞ୍ଜି ଚିତ୍ରରେ ଅଜନ୍ତାର ୧୮ ନମ୍ବର ଗୁମ୍ଫାରେ ଥିବା ଗୁପ୍ତ କାଳୀନ ଚିତ୍ର କଳାର ସୌଷ୍ଠବ ପରିଲକ୍ଷିତ ହୁଏ ଏବଂ ତାହାକୁ ସେହି ଚିତ୍ରାବଳୀର ସମସାମୟିକ ବୋଲି କୁହା ଯାଇ ପାରେ । ଶୋଭାଯାତ୍ରା ଦୃଶ୍ୟଟି ଅତି ଆକର୍ଷଣୀୟ ରୂପେ ପ୍ରଦର୍ଶିତ ହୋଇ ଅଛି । ଚିତ୍ରଟିର ଅଳଙ୍କାରର ଆଧିକ୍ୟ କମ୍ବା ବର୍ଣ୍ଣାଢ୍ୟତା ପ୍ରଚେଷ୍ଟା ନାହିଁ । ଏତାଦୃଶ୍ୟ ଉନ୍ନତ ରୁଚି କଳା ସେ କାଳର ପୂର୍ବ ଭାରତୀୟ ଅଞ୍ଚଳରେ ଅନୁପମ ଓ ଅତୁଳନୀୟ ଅଟେ ।

ଏହି ଅଭିଲେଖର ରଣାଭଞ୍ଜଙ୍କର ନାମୋଲ୍ଲେଖ ରହିଥିବାରୁ ମନେହୁଏ ଭଞ୍ଜବଂଶର ଏହି କଳା ପ୍ରିୟ ରଣ କୁଶଳୀ ରାଜା ରଣା ଭଞ୍ଜ ଏହି ଶୈଳ ଚିତ୍ରାଙ୍କନ କରାଇ ଥିଲେ । ଏହି ପ୍ରକାର ଶୈଳ ଚିତ୍ରାଙ୍କନରେ ରାଜକୀୟ ପୃଷ୍ଠପୋଷକତା ନଥିଲେ ୨୦।୨୨ ଫୁଟ ଉଚ୍ଚର ଏକ ପଥର ଛାତର ନିମ୍ନ ଭାଗରେ ଚିତ୍ର ଅଙ୍କନ ଭଳି ଦୁରୂହ କାର୍ଯ୍ୟ କେହି କଳାକାର ସ୍ୱେଚ୍ଛାକୃତ ଭାବରେ କରି ନଥିବେ । ଏହି ଚିତ୍ରକଳା ଅଙ୍କନ କରିବା ପାଇଁ ନିଶ୍ଚୟ ୨୦।୨୨ ଫୁଟ ଏକ ମଞ୍ଚ ତିଆରି ହୋଇ ଥିବ ଏବଂ ଏହି ମଞ୍ଚ ଉପରେ ଚିତ୍-ହୋଇ ଶୋଇ ରହି ଚିତ୍ରକର ଛବି ଅଙ୍କନ କରି ଥିବେ । ଚିତ୍ରାଙ୍କନରେ ଲାଲ, ବାଇଗଣି ଧୂସର ଓ ସ୍ଥାନେ ସ୍ଥାନେ ଅସ୍ପଷ୍ଟ ହଳଦିଆ ରଙ୍ଗର ରେଖା ମାନ ଦେଖା ଯାଏ । ଲାଲ ରଙ୍ଗ ବିଶେଷ ଭାବରେ ସୁସ୍ପଷ୍ଟ ଅଟେ । ରାବଣ ଗୁମ୍ଫା ନିକଟରେ ଅନ୍ୟ ଏକ ବୃହତ ପଥର ଖଣ୍ଡକୁ ମୁଖ ଲିଙ୍ଗ ବୋଲିଯାଏ । ଏହାର ଚାରି ପାର୍ଶ୍ୱରେ ଚାରିଗୋଟି ଶିବ ମୂର୍ତ୍ତିର ଖୋଦନ କାର୍ଯ୍ୟ ଦେଖାଯାଏ । ଏହା ଛଡ଼ା ପୁରାତନ ଭଗ୍ନ ଦୁର୍ଗ ଓ ଏକ ଅନୁଚ୍ଚ ବେଢା ଦୃଷ୍ଟି ଗୋଚର ହୁଏ । ଏହି ବେଢା ମଧ୍ୟରେ କ୍ଷୁଦ୍ର କ୍ଷୁଦ୍ର ପ୍ରସ୍ତର ସ୍ତୁପରେ ଅନେକ ଶିଳାଭିଲେଖ ମୁଣ୍ଡ ଟେକ ରହି ଅଛି ।

ଲୋକ ପ୍ରବାଦ ଅଛି ରାବଣ ଗୁମ୍ଫା ଶୈଳ ଚିତ୍ରରେ ଯେଉଁ ସବୁ ଚିତ୍ରାଙ୍କନ ରହି ଅଛି ତାହା ବାଲ୍ମୀକି ତପୋବନର ରକ୍ଷକ ଲବକୁଶଙ୍କର ଅଶ୍ୱମେଧ ଯଜ୍ଞର ଯଜ୍ଞ ଅଶ୍ୱର ବନ୍ଧନ ଚିତ୍ର ଅଟେ । ଧାବମାନ ଅଶ୍ୱ ବନ୍ଧନକାରୀ ଅଟନ୍ତି ଲବକୁଶ ଓ ହସ୍ତୀ ପୃଷ୍ଠରେ ବସିଥିବା ବୀର ପୁରୁଷର ଚିତ୍ର ଯଜ୍ଞ ଘୋଟକ ରକ୍ଷକ ଶତ୍ରୁଘ୍ନଙ୍କର ଯୋଦ୍ଧ୍ୱେଶ । ସୈନ୍ୟ ସାମନ୍ତ ଚିତ୍ର ଗୁଡିକ ରାମ ସେନାମାନ ଅଟନ୍ତି ।

ଶ୍ରୀରାମଚନ୍ଦ୍ରଙ୍କ ଯଜ୍ଞ ଅଶ୍ୱ ବାଲ୍ମୀକି ତପୋବନରେ ପ୍ରବେଶ କରିବାରୁ ସେ ବନର ରକ୍ଷକ ଲବ କୁଶ ଦୁଇ ଭାଇ ଯଜ୍ଞ ଅଶ୍ୱ ବନ୍ଧନ କରି ଥିଲେ । ତେଣୁ ଏହି ଚିତ୍ରରେ ଯଜ୍ଞ ଅଶ୍ୱର ଧାବମାନ ଚିତ୍ର ଅଙ୍କିତ ହୋଇ ଅଛି ।

ସୀତାବଞ୍ଜିର ଅନତି ଦୂରରେ ଅବସ୍ଥିତ ଗୋଟିଏ ସ୍ଥାନକୁ ଘୋଡ଼ାବନ୍ଧା ବୋଲି କହନ୍ତି । ଏଠାରେ ଲବ କୁଶ ଯଜ୍ଞ ଅଶ୍ୱ ବନ୍ଧନ କରିଥିବା ଅନୁମାନ । ସେମାନେ ଯେଉଁ ପାରେ ଘୋଡାର ଗୁଣ୍ଡି ଖୋଲି ଦେଇଥିଲେ ସେହି ସ୍ଥାନର ନାମ ଗୁଣ୍ଡି ବେଢ଼ା ବା ଚଣ୍ଡୀ ବେଢ଼ା ନାମରେ ପରିଚିତ ।

ଏହି ଚଣ୍ଡି ବେଡ଼ା ଗ୍ରାମରେ ସୀତା ନଦୀ କୂଳରେ "ହରଗଧର" ନାମକ ଗୋଟିଏ ସ୍ଥାନ ଅଛି । ପ୍ରବାଦ ଅଛି ଯଜ୍ଞ ଅଶ୍ୱ ରକ୍ଷକ ରାମ ଭ୍ରାତା ଶତ୍ରୁଘ୍ନ ଯଜ୍ଞ ଅଶ୍ୱ ଅନ୍ୱେଷଣ କରି ଏହିଠାରୁ ଘୋଡ଼ା ଗୁଣ୍ଡିର ସନ୍ଧାନ ପାଇ ବାଲ୍ମିକ ଆଶ୍ରମରେ ଉପନୀତ ଲବ କୁଶଙ୍କ ସହିତ ଯୁଦ୍ଧ କରି ପରାସ୍ତ ହୋଇ ଥିଲେ ।

ସୀତା ଠାକୁରାଣୀ ଶାଳର ପୂର୍ବରେ କିଛି ଦୂରରେ ପଥର ନିର୍ମିତ ଗୋଟିଏ ହସ୍ତୀର ଅକ୍ଷତ ମୂର୍ତ୍ତି ଏବେ ମଧ୍ୟ ରହି ଅଛି । ଏହା ଗୋଟିଏ ପଥରରେ ନିର୍ମିତ । ଅନୁମାନ ଯଜ୍ଞ ଅଶ୍ୱ ରକ୍ଷକ ଶତ୍ରୁଘ୍ନ ଲବ କୁଶଙ୍କ ଠାରୁ ଯୁଦ୍ଧରେ ହାରିଯାଇ ହସ୍ତୀ ବାହାନ ଛାଡ଼ି ପଳାଇ ଯାଇ ଥିବାର ସଙ୍କେତ ଅଟେ । ଏପରିକି ଶ୍ରୀରାମଚନ୍ଦ୍ର ଯୁଦ୍ଧରେ ଲବ କୁଶଙ୍କ ଠାରୁ ହାରି ଯାଇ ଏହିଠାରେ ସୀତା ଦେବୀଙ୍କର ମାନ ଭଞ୍ଜନ କରି ଥିବାରୁ ଏହି ସ୍ଥାନର ନାମ ସୀତାଭଞ୍ଜି ହୋଇଥିବା ମନେ ହୁଏ ।

ଏହି ସ୍ଥାନକୁ ରାବଣ ଗୁମ୍ଫା କହିବାର ତାତ୍ପର୍ଯ୍ୟ ଏହିଯେ ଯେଉଁ ଶ୍ରୀରାମ ଲଙ୍କାର ମହାପରାକ୍ରମଶାଳୀ ରାବଣକୁ ନିହତ କରି ଥିଲେ ସେହି ଅଜେୟ ଧନୁର୍ଦ୍ଧର ବୀର ଶ୍ରୀରାମ ଅନାୟାସରେ ଦୁଇ ଜଣ ବାଳକଙ୍କ ହାତରେ ପରାସ୍ତ ହୋଇ ଥିଲେ । ତେଣୁ ଲୋକ ପ୍ରବାଦରୁ ଜଣା ଯାଏ ଯେ ସୀତାଭଞ୍ଜି ଠାରେ ଅଙ୍କିତ ହୋଇ ଥିବା ଯୁଦ୍ଧଯାତ୍ରାର ଚିତ୍ର ଯଜ୍ଞ ଅଶ୍ୱ ହରଣର ଚିତ୍ର ଅଟେ ।

## ସୀତା ଦେବୀ ଶାଳ

ଏହା ଏକ ବିଶାଳ ପଥର ଉପରେ ଆଉ ଦୁଇ ଖଣ୍ଡ ପଥରର ଅବସ୍ଥିତ ହୋଇ ଗଠିତ ହୋଇ ଅଛି । ତଳୁ ୨୦।୨୨ ଫୁଟ ଉଚ୍ଚକୁ ଉଠି ଗଲା ପରେ ଆଉ ଦୁଇ ଗୋଟି ପଥର ପରସ୍ପର ଠେସ ହୋଇ ରହି ଥିବାର ଦେଖା ଯାଏ । ତଳ ପଥରଟି ମସୃଣ । ସେହି ପଥର କୋରଡ଼ ମଧ୍ୟରେ ସୀତା ଦେବୀଙ୍କର ବିଜେ ସ୍ଥଳୀ । ମୁଗୁନି ପଥରରେ ଗୋଟିଏ ବଡ଼ ଶିବ ଲିଙ୍ଗାକାର ପଥରଟି ସୀତା ଦେବୀ ନାମରେ କଥିତ ଅଟେ । ଅଳ୍ପ ବଡ଼ ସାନ ଦୁଇ ଗୋଟି ଗୋଲାକାର ମୁଗୁନି ପଥର ଲବ ଓ କୁଶ ରୂପେ ପୂଜିତ ହେଉ ଅଛନ୍ତି । ଏହାର ପୂଜକ ଜଣେ ଗଣ୍ଡ ଜାତିର ଲୋକ । ଏଠାରେ ଖଣ୍ଡେ ଧଳା ପଥରକୁ ଘସି ଚନ୍ଦନ ରୂପେ ବ୍ୟବହାର କରା ଯାଇ ଥାଏ । ଏଠାକାର ପୂଜକ କହନ୍ତି ଯେ ଉକ୍ତ ପଥର ଚନ୍ଦନ ଖଣ୍ଡିକ ଘୋରି ହୋଇ ଶେଷ ହୋଇ ଗଲେ ଆଉ ଖଣ୍ଡେ ପଥର ଚନ୍ଦନ ଆପେ ଆପେ ଆସି ଠାକୁରାଣୀଙ୍କ ଅଧିଷ୍ଠାନ ପାଖରେ ଥୁଆ ହୋଇ ଥାଏ । ଏହି ପ୍ରକାର ଐନ୍ଦ୍ରଜାଲିକ ବ୍ୟବସ୍ଥା ଆବହମାନ କାଳରୁ ଯୋଏ ପ୍ରଚଳିତ ରହି ଅଛି । ଏହି ପ୍ରକାର ଚନ୍ଦନ ମଧ୍ୟରେ ବିଭିନ୍ନ ବର୍ଣ୍ଣର ରେଖାଙ୍କିତ ସଙ୍କେତ ଥିବାର ଦେଖା ଯାଏ ।

ସ୍ୱର୍ଗୀୟ ଅନିରୁଦ୍ଧ ଦାସ ଏହି ଅଞ୍ଚଳରୁ ୧୭ ଗୋଟି ତାମ୍ର ମୁଦ୍ରା ସଂଗ୍ରହ କରି ଅଛନ୍ତି ଏବଂ ଏଠାରେ ଥିବା ଶିଳାଲେଖର ସନ୍ଧାନ କରି ଜାଣି ପାରିଛନ୍ତି ଯେ ଭାରତରେ ଆର୍ଯ୍ୟ ସଭ୍ୟତା ଗାଙ୍ଗେୟ ପ୍ରଦେଶରେ ବିକାଶଲାଭ କରି ମଧ୍ୟପ୍ରଦେଶ ବାଟେ ପୂର୍ବାଭିମୁଖୀ ହୋଇ ଥିଲା ଏବଂ ଉତ୍ତର-ଭାରତ ସହିତ ଦକ୍ଷିଣ ଭାରତର ଯୋଗାଯୋଗ କେନ୍ଦୁଝର ରାଜ୍ୟ ଦେଇ ସଂପ୍ରସାରିତ ହୋଇ ଥିଲା । ଅନ୍ୟ କେତେକ ଐତିହାସିକଙ୍କ ମତରେ କଳିଙ୍ଗ କୋଶଳ ରାଜ୍ୟ ସହିତ ଉତ୍ତର ଭାରତର ବାଣିଜ୍ୟ ବ୍ୟବସାୟ କେନ୍ଦୁଝର ରାଜ୍ୟ ଦେଇ ଚାଲୁ ଥିଲା । ସୀତାବିଞ୍ଜି ଠାରୁ ମିଳି ଥିବା ମୁଦ୍ରା ଗୁଡ଼ିକ ତୃତୀୟ ଓ ଚତୁର୍ଥ ଶତାବ୍ଦୀର ଏବଂ ପ୍ରସ୍ତର ନିର୍ମିତ ଅସ୍ତ୍ର ଶସ୍ତ୍ର ଗୁଡ଼ିକ ପ୍ରାଚୀନ ତଥା ନୂତନ ପ୍ରସ୍ତର ଯୁଗର ଅଟେ ବୋଲି ସ୍ୱର୍ଗୀୟ ଦାସ କହିଛନ୍ତି ।

## ସୀତାବିଞ୍ଜିର ଚିତ୍ରାଙ୍କନ

ସୀତାବିଞ୍ଜିର ଚିତ୍ରାଙ୍କନ କେଉଁ କାଳର ଏବଂ କି ପ୍ରକାର ଶୈଳୀର, ସେ ସଂପର୍କରେ ଦୁଇ ପ୍ରକାର ମତ ପ୍ରକାଶ ପାଇ ଅଛି । ଶ୍ରୀ ଟି. ଏନ୍. ରାମ ଚନ୍ଦ୍ରନ ତାଙ୍କ ଲିଖିତ "Tempera Painting in Sitabinjhi, District Keonjhar, Orissa" ଶିରୋନାମା ପ୍ରବନ୍ଧ ବରୋଦା ବିଶ୍ୱବିଦ୍ୟାଳୟର "Institute of Fine Arts"ର ଏକ ପତ୍ରିକାରେ ପ୍ରକାଶ କରି ସୀତାବିଞ୍ଜିର ଚିତ୍ର କଳାକୁ "ଟେମ୍ପରା ପେଣ୍ଟିଂ" ବୋଲି ଅଭିହିତ କରାଇ ଅଛନ୍ତି । ଶ୍ରୀଯୁକ୍ତ ଅର୍ଜୁନ ଯୋଶୀ ମଧ୍ୟ ଏହି ଚିତ୍ରାଙ୍କନକୁ ଟେମ୍ପରା ପେଣ୍ଟିଂ ବୋଲି ବର୍ଣ୍ଣନା କରି ଅଛନ୍ତି । ମାତ୍ର ଅଧ୍ୟାପକ କୃଷ୍ଣ ଚନ୍ଦ୍ର ପାଣିଗ୍ରାହୀ ଏହାକୁ "FRESCO PAINTING" ବା ପାଣି ରଙ୍ଗ ଚିତ୍ର ବୋଲି ବର୍ଣ୍ଣନା କରି ଅଛନ୍ତି ।

କାନ୍ଥ ବା ଗୁମ୍ଫା ଦେହରେ ଜିଂକ ଅକ୍ସାଇଡ଼ ଏକସ୍ତର ମଡ଼ାଇ ତା ଉପରେ ଅଣ୍ଡା ଯୋକରେ ଗୋଳା ହୋଇଥିବା ରଙ୍ଗ ଦ୍ୱାରା ଚିତ୍ରାଙ୍କନକୁ ଟେମ୍ପରା ପେଣ୍ଟିଂ କୁହାଯାଏ । ଏହି ଚିତ୍ରାଙ୍କନ ଷଷ୍ଠ ନବମ ଶତାବ୍ଦୀରେ ଇଉରୋପର କଳାକାର ମାନଙ୍କ ଦ୍ୱାରା ଅନୁସୃତ ହୋଇ ଥିଲା । କିନ୍ତୁ ଫ୍ରେସ୍କୋ ପେଣ୍ଟିଂ ବା ପାଣି ରଙ୍ଗ ଚିତ୍ରାଙ୍କନ ଶୈଳୀ ଭିନ୍ନ ଅଟେ । ଚୂନ ଲିପା କାନ୍ଥ ବା ଗୁମ୍ଫା ଦେହରେ ପାଣିରେ ରଙ୍ଗ ଗୋଳାଇ ତୁଳୀରେ ଏହି ଚିତ୍ରାଙ୍କନ କରାଯାଏ । ଚୂନ ପାଣିକୁ ଶୀଘ୍ର ଶୋଷଣ କରି ନେଇ ଚିତ୍ରକୁ ଶୁଖାଇ ଦିଏ । ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ କେତେକ ଇଟାଲୀୟ ଚିତ୍ରାଙ୍କନକୁ ପାଣି ରଙ୍ଗ ଚିତ୍ର କୁହା ଯାଇଅଛି । କିନ୍ତୁ ଅଧ୍ୟାପକ ଇନାମ୍ ଅନସାରି ସୀତାବିଞ୍ଜି ଉପରେ ଏକ ପ୍ରବନ୍ଧ ପ୍ରକାଶ କରି ଲେଖି ଅଛନ୍ତି ଯେ-

ଉପର ବର୍ଣ୍ଣିତ ଉଭୟ ଶୈଳୀ - କାନ୍ଥ ଚିତ୍ର ବା ପାଣି ରଙ୍ଗ ଚିତ୍ରାଙ୍କନ ସୀତାବିଞ୍ଜିର ଶୈଳୀ ନୁହେଁ । ସେ ଏହି ଚିତ୍ରାଙ୍କନକୁ " MURAL PAINTING "ବା କାନ୍ଥ ଚିତ୍ର ବୋଲି ଆଖ୍ୟା ଦେଇ ଅଛନ୍ତି । ସେ ଲେଖିଛନ୍ତି ପ୍ରକୃତରେ ଏହା ଶ୍ରୀଯୁକ୍ତ ରାମଚନ୍ଦ୍ର ଓ ଶ୍ରୀଯୁକ୍ତ ଯୋଶୀଙ୍କ ବର୍ଣ୍ଣିତ ଟେମ୍ପରା ପେଣ୍ଟିଂ ବା ଡକ୍ଟର ପାଣିଗ୍ରାହୀଙ୍କ ବର୍ଣ୍ଣିତ ଫ୍ରେସ୍କୋ ପେଣ୍ଟିଂ ନୁହେଁ । ଏପରି କହିବା ଭ୍ରମାତ୍ମକ ହେବ ଏବଂ ଅମୂଳକ ବାଦ ଭିତରକୁ ଟାଣି ନେବ । ତେଣୁ ଏହା କେବଳ ମୁରାଲ ପେଣ୍ଟିଂ ବା କାନ୍ଥ ଚିତ୍ର ଅଟେ ।

ସୀତାବିଞ୍ଜି ଆଖପାଖରେ ଯେଉଁ ବୃହଦାକାର ଇଟା ଖଣ୍ଡ ଦୃଷ୍ଟି ଗୋଚର ହୁଏ ତାହା ଧାନ ତଷୁ ଓ କାଦୁଅ ମଣ୍ଡ ମିଶ୍ରଣରେ ନିର୍ମିତ ହୋଇ ଥିବା ଅନୁମିତ ହୁଏ । ତେଣୁ ରାବଣ ଛାୟା ପ୍ରସ୍ତର ଗାତରେ ଧାନତଷୁ ଓ କାଦୁଅର ମଣ୍ଡ ଗ୍ରନ୍ଥି ତା ଉପରେ ଏକ ପତଳା ଚୂନର ଆସ୍ତରଣ ଦେଇ ଚିତ୍ରାଙ୍କନ କରାଯାଇ ଥିବା ବିଶ୍ୱାସ ହୁଏ । ଏହା ଯଦି ସତ୍ୟ ହୋଇଥାଏ, ତେବେ ଅଧ୍ୟାପକ ଆନନ୍ଦଶଙ୍କ ଅନୁମାନ ଯୁକ୍ତି ଯୁକ୍ତ ମନେ ହୁଏ । କାରଣ ଯେଉଁଠାରେ ମୁରାଲ ପେଣ୍ଟିଂ ଦେଖାଯାଏ ସେଠାରେ ଏହିପରି ଆସ୍ତରଣ ଦେଖା ଯାଏ । ଏପରିକି ଅଜନ୍ତା ଚିତ୍ରକଳା ମଧ୍ୟ ମୁରାଲ ପେଣ୍ଟିଂ ବୋଲି ଅନେକ ମତ ପୋଷଣ କରନ୍ତି ।

ସୀତାବିଞ୍ଜିର ଶୈଳ ଚିତ୍ରାଙ୍କନକୁ ଦେଖିଲେ ଦର୍ଶକ ମନରେ ସ୍ୱତଃ ପ୍ରଶ୍ନ ଉଠେଯେ ସୀତାବିଞ୍ଜି ତପସ୍ୱୀ ବାଲ୍ମିକଙ୍କ ରଚିତ କଥା ବସ୍ତୁକୁ ନେଇ ସେହି ଚିତ୍ରାଙ୍କନ ସମ୍ପନ୍ନ ହୋଇଅଛି । ସେହି ଭଳି ଚିତ୍ର ଓ ଘଟଣାକୁ ନେଇ ଉପାଖ୍ୟାନ କଳ୍ପିତ ଚିତ୍ରାଙ୍କନ ନହୋଇ ରାଜକୀୟ ଶୋଭା ଯାତ୍ରାର ଚିତ୍ର ଅଙ୍କିତ ହୋଇଛି କାହିଁକି ? ତେଣୁ ସୀତାବିଞ୍ଜି ଠାରେ ଅଙ୍କିତ ଚିତ୍ରରେ ଶ୍ରୀରାମ ଭ୍ରାତା ଅଶ୍ୱମେଧ ଯଜ୍ଞ ଘୋଟକ ରକ୍ଷକ ମହାବୀର ଶତ୍ରୁଘ୍ନ-ଙ୍କର ଦିଗ୍‌ବିଜୟ ଯାତ୍ରାର ବର୍ଣ୍ଣନା ଅଟେ । ପୁନଶ୍ଚ ଆଶ୍ଚର୍ଯ୍ୟ ହେବାକୁ ପଡ଼େଯେ ସୀତା-ବିଞ୍ଜିର ମୁଖଳିଙ୍ଗ ପ୍ରସ୍ତରରେ ଖୋଦିତ ଶିବମୂର୍ତ୍ତି ରାବଣଚ୍ଛାୟାର ଚିତ୍ରାଙ୍କନ ସହିତ ଅପ୍ରାସଙ୍ଗିକ ମନେହୁଏ । ଏଥିରୁ ଅନୁମିତ ହୁଏଯେ ଏକଦା ସୀତାବିଞ୍ଜି ଶୈବ ପୀଠରେ କେନ୍ଦ୍ର ସ୍ଥଳୀ ଥିଲା । ଅଣନ ପାଟଣାର ଉଦ୍ଧାର କରା ଯାଇଥିବା ଦଶାଳ ଶିବ ଲିଙ୍ଗ ଓ ବାରାହପଟ ଠାରେ ପୂଜିତ ହେଉ ଥିବା ଶିବ ଲିଙ୍ଗ ଏହି ମତକୁ ଅଧିକ ସୁଦୃଢ଼ କରୁଛି । କେବଳ ଉକ୍ତ ସ୍ଥାନ କାହିଁକି ସମଗ୍ର ଜିଲ୍ଲାଟି ମଧ୍ୟ ଶୈବ ଧର୍ମ କ୍ଷେତ୍ର ଅଟେ । ଏଣୁ ପ୍ରସିଦ୍ଧ ଶୈବ କ୍ଷେତ୍ର ସୀତାବିଞ୍ଜି ଶୈବ ନୃପତି ଦଶା ଭଞ୍ଜଙ୍କର ଅକ୍ଷୟ କୀର୍ତ୍ତି ବୋଲି । ସୀତାବିଞ୍ଜିର କଳା ଓ ଐତିହ୍ୟ କେନ୍ଦୁଝର ଜିଲ୍ଲାର ଏକ ଗୌରବୋଜ୍ଜ୍ୱଳ ଇତିହାସର ପରିଚୟ ଦିଏ ।

ଏହି ଚିତ୍ରାଙ୍କନ ସହସ୍ରାଧିକ ବର୍ଷର ହେଲେ ମଧ୍ୟ ଏହାର ଶୈଳିକ ଅଭିବ୍ୟକ୍ତି ଅନୁସନ୍ଧିତ୍ସୁର ଦୃଷ୍ଟି ଆକର୍ଷଣ କରି ଥାଏ । ଏହି ଚିତ୍ରାଙ୍କନରେ କଳା ନୈପୁଣ୍ୟର ଆଙ୍ଗିକ ସୌଷ୍ଠବ ଯେପରି ପରିପୁଷ୍ଟ ଲାଭ କରିଛି ସେହିପରି ମଧ୍ୟ ଏକ ଗଭୀର ଆତ୍ମିକ ଅଭିବ୍ୟକ୍ତି ସୁସ୍ପଷ୍ଟ ହୋଇ ଉଠିଛି । ଏହି ଚିତ୍ରାଙ୍କନର ବର୍ଣ୍ଣ ସଂଯୋଜନା ତଥା ହସ୍ତୀ,ଅଶ୍ୱାଦିର ପ୍ରାକୃତିକ ପରିପ୍ରକାଶ ନିକ ଲେଖନ ସମୟରେ ଯେପରି ଭାବରେ ପ୍ରକଟିତ ହୋଇ ଥିଲା ଏବେବି ମଧ୍ୟ ଦର୍ଶକର ବୋଧ ଶକ୍ତି, କଳାକୁଶଳତା ଓ ଚିତ୍ର ଶିଳ୍ପ ନିପୁଣତାର ସମ୍ୟକ ପରିଚୟ ଦେଇ ଥାଏ । ବର୍ତ୍ତମାନ ବିବର୍ଣ୍ଣ ହୋଇଥିବା ବର୍ଣ୍ଣ ଗୁଡ଼ିକର ଔଜ୍ଜଲ୍ୟ ନାହିଁ ସତ୍ୟ ମାତ୍ର ଦର୍ଶନ ମାତ୍ରକେ ଦର୍ଶକ ପ୍ରାଣରେ ନବ ପୁଲକ ସଂଚାର କରିବାରେ ସକ୍ଷମ ଅଟେ । ଏକଥା ସତ୍ୟଯେ ସୀତାବିଞ୍ଜି ଶିଳାଲେଖ ଓ ଶୈଳାଙ୍କନର କଳା କୁଶଳତା କୀର୍ତ୍ତି ମାଳିନୀ କେନ୍ଦୁଝରର ସମୃଦ୍ଧ ଗୌରବାବହ ସ୍ମୃତି ସ୍ତମ୍ଭ ଅଟେ ।

# ସୀତାବିଞ୍ଜିର ଲିପି

ରୁଷି ଗୁଂଫା ଠାରେ କୃଷ୍ଣ ବର୍ଣ୍ଣ ଅକର୍ମଣୀକା ଦେହରେ ଲିଖିତ ହୋଇଥିବା ଲିପି ଗୁଡ଼ିକର ଆକାର ପ୍ରକାର ଦକ୍ଷିଣ ଭାରତୀୟ ଲିପିର ଆକାର ପରି ଅଟେ ବୋଲି କେତେକ ପରିଦର୍ଶକ ମତ ପ୍ରକାଶ କରି ଅଛନ୍ତି । ସେମାନଙ୍କର ଯୁକ୍ତି ହେଉଛି ଯେ ଶତ୍ରୁଘ୍ନଙ୍କର ଅନୁଶାସନର ନାୟକ ଉକ୍ତ ଦେଶ ମଧ୍ୟ ଦେଇ କୋଶଳ ରାଜାଂକୁ ଗଲାବେଳେ ସୀତାବିଞ୍ଜି ଠାରେ ତାଙ୍କର ଅଭିଯାନର ବିଜୟ ସ୍ମୃତି ରକ୍ଷା ପାଇଁ ଏ ପ୍ରକାର କଷ୍ଟମ ପଥର ଖଣ୍ଡ ଦେହରେ ଲିପି ଓ ଚିତ୍ରାଙ୍କନ କରି ଯାଇ ଅଛନ୍ତି । କାରଣ ଆତ୍ମୋକ ବ୍ୟତୀତ ଅପର କେହି ଏପରି ତିମା ମଥର କ୍ଷେତ୍ରରେ ଲିପି ଲେଖିବା ସମ୍ଭବ ପର ନୁହେଁ । ଯଦି ଏହି ପଥର ଖଣ୍ଡ ଗୁଡ଼ିକ କୌଣସି ଭଗ୍ନ ଗୃହ ବା ପ୍ରାଚୀରର ଅଂଶ ବିଶେଷ ହୋଇ ଥାନ୍ତା ତେବେ ତାହା ମସୃଣ ଓ ଚତୁରସ୍ର ହୋଇ ଥାନ୍ତା, ତାହା ହୋଇ ନଥିବାରୁ ଓ ଲିପିର ଆକାର ଦକ୍ଷିଣ ଭାରତୀୟ ଲିପି ସଦୃଶ ହୋଇ ଥିବାରୁ ଏବଂ କଳିଙ୍ଗରୁ କୋଶଳକୁ ଯିବା ରାସ୍ତାରେ ଏହା ଅବସ୍ଥିତ ଥିବାରୁ ଉପର୍ଯ୍ୟୁକ୍ତ ଅନୁମାନ କରା ଯାଇ ଅଛି । ଯେ ପର୍ଯ୍ୟନ୍ତ ପ୍ରକୃତ ତଥ୍ୟ ଅନୁସଂଧାନ ପାଇଁ ଏଠାରେ ଯଥୋଚିତ ଖନନ କାର୍ଯ୍ୟ ନହୋଇଛି ସେ ପର୍ଯ୍ୟନ୍ତ ପ୍ରକୃତ ତଥ୍ୟ ଉନ୍ମୋଚିତ ହୋଇ ପାରିବ ନାହିଁ । ହୁଏତ ଏହାମଧ୍ୟ ଧାରଣା କରାଯାଇ ପାରେଯେ ସୀତାବିଞ୍ଜି ଠାରେ ଥିବା ଲିପି ଗୁଡ଼ିକ ଦେବନାଗରୀ, ବ୍ରାହ୍ମୀ ବା ଦକ୍ଷିଣ ଭାରତୀୟ ଲିପି ନ ହୋଇ ଏଠାରେ ଆବହମାନ କାଳରୁ ବାସ କରି ଆସିଥିବା ଆଦିମ ଅଧିବାସୀ ଗଣ୍ଡ ଜାତିର ନିଜସ୍ୱ ପ୍ରାକୃତ ଓଡ଼ିଆ ଭାଷା ଅଟେ । କାରଣ ପରିସ୍ଥାର

ଭାବରେ ପଠିତ ହୋଇ ପାରୁ ନଥିବା କୌଣସି ଲିପିକୁ ଅନ୍ୟ ଭାଷାର ଲିପି ବୋଲି ଯୁକ୍ତି ବାଢିବା ଦ୍ୱାରା ନିଜ ମାତୃଭାଷାର ପ୍ରାଚୀନତାକୁ ଅସ୍ୱୀକାର କରଯାଇ ଅଣ ଶ୍ରେଣୀ ଭାଷାର ପ୍ରାଚୀନତା ପ୍ରସାରକୁ ସ୍ୱୀକାର କରଯାଇ ନିଜର ମୌଳିକତାକୁ ଉପେକ୍ଷା କରାଯାଇଥାଏ । ଉଦାହରଣ ସ୍ୱରୂପ ଆର୍ଯ୍ୟାବର୍ତ୍ତ ଭାରତ ଭୂମିକୁ ଆର୍ଯ୍ୟ ମାନେ ପ୍ରଥମେ କାସ୍ପିୟାନ ହ୍ରଦ ଠାରୁ ଆସି ଥିବା ଭ୍ରମାତ୍ମକ ତଥ୍ୟ ଗ୍ରହଣ କରିଯିବା ଦ୍ୱାରା ବେଦ ଭୂମି ଭାରତର ପ୍ରାଚୀନତାକୁ ଅସ୍ୱୀକାର କରାଗଲା ପରି ସୀତାବିଞ୍ଜିର ଲିପି ଓ ଚିତ୍ରାଙ୍କନ ଅଣଶ୍ରେଣୀ ବୋଲି କହିବା ସଙ୍ଗତ ସମାନ ହେବ ନାହିଁ କି? ଖ୍ରୀଷ୍ଟ ପୂର୍ବର ଆଦିମ କାଳରୁ ଏଠାରେ ବସବାସ କରି ଆସୁଥିବା ଆଦିମ ଅଧିବାସୀ ମାନଙ୍କ ମଧ୍ୟରେ ପ୍ରାକୃତ ଓଡ଼ିଆ ଲିପି ନ ହୋଇ ଥିବ ଏକଥା କିଏ କହିବ ? କାରଣ ପ୍ରାଚୀନ କାଳରେ କଳିଙ୍ଗରେ ଭାଷା ପାଲି ଭାଷା ଥିଲା ଓ ସେହି ପାଲି ଭାଷାରେ ବୌଦ୍ଧ ଧର୍ମ ପୁସ୍ତକମାନ ରଚିତ ହୋଇ ପୃଥିବୀର ବହୁ ଦେଶରେ ପ୍ରସାର ଲାଭ କରି ଥିଲା ।

ମଗଧ ସମ୍ରାଟ ଅଶୋକଙ୍କ ଶାସନ କାଳର ବହୁ ଆଗରୁ ଉତ୍କଳର ଦୁଇ ଜଣ ଭୂସ୍ୱାମୀ ଭ୍ରାତ ପୂର୍ବ ଭାରତରେ ବ୍ୟବସାୟ କରିବାକୁ ଯାଉଥିବା ସମୟରେ ଉରୁବେଲ ବନ ମଧ୍ୟରେ ଗୌତମ ବୁଦ୍ଧଙ୍କର ଦର୍ଶନ ଲାଭ କରି ତାଙ୍କର ସର୍ବପ୍ରଥମ ଶିଷ୍ୟତ୍ୱ ଗ୍ରହଣ କରି ଉତ୍କଳ ଓ କଳିଙ୍ଗରେ ବୌଦ୍ଧ ଧର୍ମ ନିଜର କଥିତ ପାଲି ଭାଷାରେ ପ୍ରଚାର କରି ସାରି ସେମାନେ ସିଂହଳକୁ ଯାଇ ସେଠାରେ ସର୍ବ ପ୍ରଥମେ ବୌଦ୍ଧ ଚୈତ୍ୟ ନିର୍ମାଣ କରିବା ସଙ୍ଗେ ସଙ୍ଗେ ପାଲି ଭାଷାରେ ଧର୍ମ ପ୍ରଚାର କରି ଥିଲେ । ଆସାମର ପଣ୍ଡିତ ବରୁଆଙ୍କ ମତରେ ସେତେବେଳେ ଏହି ଭୂସ୍ୱାମୀ ମାନଙ୍କର ଭାଷା ରାଷ୍ଟ୍ରଭାଷା ରୂପେ ଗୃହୀତ ଥିଲା । ତେଣୁ ଅଶୋକଙ୍କ କଳିଙ୍ଗ ଶାସନ କାଳରେ ପାଲି ଭାଷାରେ ବୌଦ୍ଧ ଧର୍ମର ପ୍ରଚାର କରା ଯାଇଥିଲା । ଏତେଣିକ ହୀନଯାନ ମାନଙ୍କର ଧର୍ମ ପୁସ୍ତକ ଗୁଡିକ ପାଲି ଭାଷାରେ ରଚିତ ହୋଇ ଥିଲା ।

ସେହି ସମୟରେ ବ୍ରାହ୍ମଣ୍ୟ ଧର୍ମର ପଣ୍ଡିତ ମାନେ କଳିଙ୍ଗର ଭାଷାକୁ ପାଲି ଭାଷା ନକହି " ଉଡ୍ର ବିଭାଷା " ବୋଲି କହୁ ଥିଲେ । ନାଟ୍ୟକାର ଭରତଙ୍କ ଭାଷାରେ ପୂର୍ବ ଭାରତୀୟ ସଂସ୍କୃତି ହେଉଛି "ଉଡ୍ର ସଂସ୍କୃତି" । ସେତେବେଳେ ଯେ ଉଡ୍ର ପ୍ରାକୃତ ପାଲି ଭାଷା ଯେ ଅତି ଉନ୍ନତ ଥିଲା ଏଥିରେ ସନ୍ଦେହ ନାହିଁ । ଖ୍ରୀଷ୍ଟୀୟ ଏକମ ଶତାବ୍ଦୀ ଠାରୁ ସପ୍ତମ ଶତାବ୍ଦୀ ଯାଏ କଳିଙ୍ଗର ଅଭିଲେଖ ଗୁଡିକ ପ୍ରାକୃତ ଭାଷା ଥିଲା ବୋଲି ଧାରଣା କରଯାଏ । ତେଣୁ ଚତୁର୍ଥ ଶତାବ୍ଦୀରେ ରଚିତ ସୀତାବିଞ୍ଜି ଶିଳାଲେଖର

କେତେକ କ୍ଷୁଦ୍ର ଅଭିଲେଖ ପ୍ରାକୃତ ଭାଷାରେ ରଚିତ ହୋଇ ଅଛି । ଯଥା -
" ପୁଅ ନସ ଛୁଛ ମହୁଚ " ।

ଏଥିରୁ ଅନୁମିତ ହୁଏଯେ ୭ମ ଶତାବ୍ଦୀ ଯାଏ କଳିଙ୍ଗର ଭାଷା ପ୍ରାକୃତ ଥିଲା । ସେହି ବିକାଶମୁଖୀ ଉକ୍ତ ପ୍ରାକୃତ ଭାଷାର କ୍ରମୋନ୍ନତ ହୋଇ ଆଧୁନିକ ଓଡ଼ିଆ ଭାଷା ଜନ୍ମ ଲାଭ କରିଥିବା ସ୍ୱାଭାବିକ ଅଟେ ।

ଖ୍ରୀଷ୍ଟପୂର୍ବ ୬୦୦ ବର୍ଷରୁ ଖ୍ରୀଷ୍ଟାବ୍ଦ ୫୦୦ ବର୍ଷ ଯାଏ କଳିଙ୍ଗର ଭାଷା ପାଲି ଭାଷା ଥିବାରୁ ଏହି ଉକ୍ତ ପ୍ରାକୃତ ଭାଷାରୁ ପାଲି ଭାଷାର ଜନ୍ମ ହୋଇଥିବା ସତ୍ୟ ମନେ ହୁଏ । ଖ୍ରୀଷ୍ଟପୂର୍ବ ୬୦୦ ବର୍ଷ ପୂର୍ବରୁ ଓଡ଼ିଆ ଲିପି ସୃଷ୍ଟି ହୋଇ ଥିବାରୁ ଓଡ଼ିଆ ଭାଷାର ପ୍ରାକୃତ ଭାଷାରୁ ଯେ ପାଲି ଭାଷାର ଉତ୍ପତ୍ତି ହୋଇଅଛି ଏଥିରେ ସନ୍ଦେହ ନାହିଁ । ତେଣୁ ସୀତାବିଞ୍ଜିର ଭାଷା ଉକ୍ତ ପ୍ରାକୃତ ବା ଉକ୍ତ ବିଭାଷା ଥିଲା ବୋଲି ଅବଧାରଣା କରାଯାଇ ପାରେ । ପ୍ରାଚୀନ କାଳରେ ଅନାର୍ଯ୍ୟ ଅଧ୍ୟୁଷିତ ଅଞ୍ଚଳର ଭାଷାକୁ ବିଭାଷା ବୋଲି ବର୍ଣ୍ଣନା କରାଯାଇଛି । ବୁଦ୍ଧଙ୍କ ଜନ୍ମର ୬୦୦ ବର୍ଷ ପୂର୍ବରୁ ପ୍ରାକୃତ ଭାଷାର ଉଦ୍ଭବ ହୋଇ ୫୦୦ ଖ୍ରୀଷ୍ଟାବ୍ଦ ଯାଏ ବ୍ୟାପୃତ ରହିଥିଲା । ଏତଦ୍ଭିନ୍ନ ନବମ ଶତାବ୍ଦୀ ଠାରୁ ଦ୍ୱାଦଶ ଶତାବ୍ଦୀର ଶେଷ ଭାଗ ଯାଏ ଅପଭ୍ରଂଶ ଓ ପ୍ରାକୃତ ଭାଷାର ଧାରା ଭାରତୀୟ ଆର୍ଯ୍ୟ ଭାଷା ଥିଲା ।

୧୧ ଶତ ଶତାବ୍ଦୀରେ ଜାହୋରର ଶିଦ୍ଧାଚାର୍ଯ୍ୟ ଭୁସୁକପାଦ ଶାନ୍ତି ଦେବଙ୍କ ରଚିତ ବୌଦ୍ଧ ଦୁହା ଯଥା-

ଅମ୍ଭ ପରେ ସେନ୍ତୁ ଚନ୍ଦନ ବାରହ ଅବନ୍ନ<br>
ହେଉଠ କମଲ କର ଶପୁନ ଥାକବ ।<br>
ସୁଜ ଧୃପି ଶସ୍ତ୍ରୀ ସମର ସଂଜାଗ<br>
ରାଉଲୁ ବୋଲେ ଜର ମରଣ ଭସ୍ମା ।

× × ×

" ଭୁସୁକୁ ଫୁକିଲୋ ଅନୁପମ ପୁଲ୍ଲା<br>
କେହୁରେ କୁସୁମ ଅପାରାଜ ବମୁଲ୍ଲା । "

ଏହି ସବୁ ବୌଦ୍ଧ ଦୁହା ଗୁଡ଼ିକରୁ ଉକ୍ତ ପ୍ରାକୃତ ଭାଷାର ଅବସ୍ଥା ଓ ଓଡ଼ିଆ ଭାଷାର ପୂର୍ବ ରୂପର ପ୍ରମାଣ ମିଳେ ।

ସୁତରାଂ ଉକ୍ତ ମାଗଧୀ ପ୍ରକୃତର ବିସ୍ତୃତ ଉତ୍ତରରେ ନେପାଳରୁ ଦକ୍ଷିଣରେ କଳିଙ୍ଗ ପର୍ଯ୍ୟନ୍ତ ଏବଂ ପୂର୍ବରେ ବ୍ରହ୍ମ ଦେଶ, ଶ୍ୟାମ ଦେଶ ଠାରୁ ପଶ୍ଚିମରେ ବଜ୍ରରାଜ୍ୟ ପର୍ଯ୍ୟନ୍ତ ନିରୂପଣ କରାଯାଇ ଅଛି । ଦକ୍ଷିଣ କୋଶଳ, ତୋଷାଳୀ, (ଉତ୍କଳ) ଉକ୍ତ ପୁଳିନ୍ଦ, କଳିଙ୍ଗ କାମରୂପ ବ୍ରହ୍ମଦେଶ ଓ ଶ୍ୟାମଦେଶାଦିରେ ଉକ୍ତ ପ୍ରବୃତ୍ତି ପ୍ରବର୍ତ୍ତିତ ହୋଇଥିବା ପ୍ରାୟ ନିଶ୍ଚିତ ଅଟେ । ଏହି ସବୁ ଅଞ୍ଚଳରେ ପ୍ରଚଳିତ ଉକ୍ତ ପ୍ରାକୃତ (ଉକ୍ତ ବିଭାଷା) ରୁ ପାଲି ଭାଷାର ଉତ୍ପତ୍ତି ହୋଇ ଥିଲା । ଯେଉଁ ଅଞ୍ଚଳ ଆର୍ଯ୍ୟ ଅଧ୍ୟୁଷିତ ନୁହେଁ ସେହି ସବୁ ଅଞ୍ଚଳର ଭାଷା ନାଟ୍ୟ ସାହିତ୍ୟରେ ବିଭାଷା ରୂପେ ବର୍ଣ୍ଣିତ ହୋଇ ଅଛି । ଏଣୁ ଉକ୍ତ ପ୍ରାକୃତ ଭାଷା ପ୍ରାଚୀନ କାଳରୁ ଅତି ଉନ୍ନତ ଭାଷା ଭାବରେ ବିଭିନ୍ନ ଶତାବ୍ଦୀରେ ବିକାଶ ଲାଭ କରିଥିବା ସତ୍ୟ ମନେ ହୁଏ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀ ଠାରୁ ସପ୍ତମ ଶତାବ୍ଦୀ ଯାଏ କଳିଙ୍ଗର ପ୍ରାକୃତ ଅଭିଲେଖ ଗୁଡିକରୁ ଉଦ୍ଧୃତରୁ ଏହା ଜଣା ଯାଏ । ତେଣୁ ପଞ୍ଚମ ଶତାବ୍ଦୀରେ ରଚିତ ସୀତାବିଞ୍ଜି ଠାରେ ଉକ୍ତ ପ୍ରାକୃତ ଭାଷାର ଅଭିଲେଖ ରଚନା କରା ଯାଇ ଥିଲା । ମାତ୍ର ତୃତୀୟ ଶତାବ୍ଦୀରେ ରଚିତ ଅସନପାଟ ଶିଳାଭିଲେଖରେ ପ୍ରାକୃତ ଭାଷା ତ୍ୟାଗ କରି ପ୍ରଥମେ ସଂସ୍କୃତ ଭାଷାରେ ଅଭିଲେଖ ଉତ୍କୀର୍ଣ୍ଣ କରା ଯାଇ ଥିବା ଜଣା ପଡ଼େ । ତାହା କଳିଙ୍ଗର ଭାଷା କ୍ଷେତ୍ରରେ ଏକ ନୂତନ ପଦକ୍ଷେପ ପରି ମନେ ହୁଏ । ଏହା ଦ୍ୱାରା କଳିଙ୍ଗରେ ସଂସ୍କୃତ ଭାଷାର ପ୍ରଚଳନ ଗୁପ୍ତ ଯୁଗୀୟ ସଂସ୍କୃତିର ପ୍ରଭାବ ପରିଣତ ବୋଲି ଯାହା କୁହା ଯାଉଥିଲା ଶତ୍ରୁଭଞ୍ଜଙ୍କର ଅସନପାଟ ଶିଳାଭିଲେଖ ତାହା ଅପ୍ରମାଣିତ କରି ଦେଉଛି ।

୭ମ ଶତାବ୍ଦୀରେ ଚୀନ ପରିବ୍ରାଜକ ହୁଏନସାଂ ଓଡ୍ର, କଙ୍ଗୋଦ ଓ କଳିଙ୍ଗରେ ପ୍ରାକୃତ ଭାଷା କଥିତ ଭାଷା ଥିଲା ବୋଲି ବର୍ଣ୍ଣନା କରି ଅଛନ୍ତି । କାଳକ୍ରମେ ସେହି ବିକାଶ ମୁଖୀ ଉକ୍ତ ପ୍ରାକୃତ ଅବସ୍ଥାରୁ ବିବର୍ତ୍ତିତ ହୋଇ ନୂତନ ରୂପରେଖ ଗ୍ରହଣ କଲା ଏବଂ ଅପଭ୍ରଂଶ ଓଡ଼ିଆ ଭାଷା ରୂପେ ପ୍ରକାଶ ପାଇଲା ।

ଖାରବେଳଙ୍କ ଶାସନ କାଳରେ ରଚିତ ହାତୀ ଗୁମ୍ଫା ଶିଳାଭିଲେଖରୁ ଜଣା ଯାଏ ଯେ ପାଲି କଳିଙ୍ଗର ଜନଗଣଙ୍କ ଭାଷା ଓ ସେହି ଭାଷାରେ ବୌଦ୍ଧଧର୍ମ ଗ୍ରନ୍ଥ ତ୍ରିପିଟକ ରଚିତ ହୋଇ ଅଛି । ଏପରି କ୍ଷେତ୍ରରେ ଆମର ଦେବକାନ୍ତ ବଡୁଆ ଉତ୍କଳ କଳିଙ୍ଗରେ ପାଲି ଭାଷା ନଥିବା ଦର୍ଶାଇ ତାହାକୁ ବିଭାଷା ବୋଲି କହିବା ଭ୍ରମାତ୍ମକ ମନେହୁଏ ।

ଏବେ ମଧ୍ୟ ଏହି ଆଦିମ ଅଧିବାସୀ ମାନେ ବଣ ଜଙ୍ଗଲରୁ ବିଭିନ୍ନ ବର୍ଣ୍ଣର ରଙ୍ଗ ମାଟି ସଂଗ୍ରହ କରି ଆଣି ଚିତ୍ରରେ ନିଜର ବାସ ଘର କାନ୍ଥରେ ବିଭିନ୍ନ ପ୍ରକାର ଚିତ୍ରାଙ୍କନ କରି ଥାନ୍ତି । ସେହି ଦୃଷ୍ଟିରୁ ବିଚାର କଲେ ଜଣାଯାଏ ଯେ ସୀତାବିଞ୍ଜିର ଶୈଳ ଚିତ୍ରାଙ୍କନ ହେଉଛି ଆଦିମ ଅଧିବାସୀ ମାନଙ୍କର ନିଜସ୍ୱ କଳା କୃତି । ମାତ୍ର ଏହି ଦୁରୂହ କାର୍ଯ୍ୟ ସଂପାଦନରେ ଯେ ରାଜ ପୃଷ୍ଠ ପୋଷକତା ଅପରିହାର୍ଯ୍ୟ ଏକଥା ସର୍ବ ସମ୍ମତ ଅଟେ । ଯେହେତୁ ସୀତାବିଞ୍ଜିର ଚିତ୍ରାଙ୍କନ ଚତୁର୍ଥ-ପଞ୍ଚମ ଶତାବ୍ଦୀର ବୋଲି ଧରାଯାଇଛି ସେହେତୁ ଏହା ନବମ ଶତାବ୍ଦୀରେ ଇଉରୋପରେ ଜନ୍ମଲାଭ କରିଥିବା ଟେମେରା ପେଣ୍ଟିଂ କିମ୍ବା ପଞ୍ଚଦଶ ଶତାବ୍ଦୀରେ ଇଟାଲି ଦେଶରେ ଜନ୍ମଲାଭ କରିଥିବା ଫ୍ରେସ୍କୋ ପେଣ୍ଟିଂ ନୁହେଁ । ଏହା ହେଉଛି ଆଦିବାସୀ ମାନଙ୍କର ଅନବଦ୍ୟ କାନ୍ଥ ଚିତ୍ରାଙ୍କନ କୌଶଳର ଅଭିନବ ପରି ପ୍ରକାଶ ।

କେନ୍ଦୁଝର ଜିଲ୍ଲାର ଅସନପାଟ ଶିଳାଲିପି ଓ ଶୈଳ ଚିତ୍ରାଙ୍କନ ଏଯାବତ ଐତିହାସିକ ମାନଙ୍କର ଦୃଷ୍ଟିଗୋଚର ହୋଇ ଥିବାରୁ କେନ୍ଦୁଝର ରାଜ୍ୟ ଯେ ଭଞ୍ଜ ରାଜବଂଶର ଉପଯୁକ୍ତ କ୍ଷେତ୍ର " ଭଞ୍ଜାଦ୍ୟଭୂମି " ଅଟେ ଏଥିରେ ସନ୍ଦେହ ନାହିଁ ।

# ତପସ୍ୱିନୀ କେନ୍ଦୁଝରୀ

## ମାତକଣ୍ଡ ଆଶ୍ରମ

ପର୍ବତ ମାଳିନୀ, ଉପବନ ପରିଶୋଭିତ ପ୍ରକୃତିର ଚନ୍ଦ୍ରାଘର କେନ୍ଦୁଝରର ଗନ୍ଧମାର୍ଦ୍ଦନ ପର୍ବତ ରାମାୟଣ ତଥା ପୁରାଣ ପ୍ରସିଦ୍ଧି ଲାଭ କରି ଆସିଅଛି । ପୌରାଣିକ ବ୍ୟାଖ୍ୟାରୁ ଜଣା ଯାଏ ଯେ ତ୍ରେତା ଯୁଗରେ ଶ୍ରୀରାମ-ରାବଣ ଯୁଦ୍ଧରେ ଅନୁଜ ଲକ୍ଷ୍ମଣଙ୍କର ଶକ୍ତି ଭେଦ କାଳରେ ଏହି ପର୍ବତରୁ ମୃତ ସଞ୍ଜୀବନୀ ଓ ବିଶଲ୍ୟ କରଣୀ ମହୌଷଧି ମହାବୀର ହନୁମାନ ସଂଗ୍ରହ କରି ନେଇ ଥିଲେ ।

ବିଭିନ୍ନ ପ୍ରକାର ସୁଗନ୍ଧ ବନସ୍ପତିରେ ଏହି ପର୍ବତ ପରିପୂର୍ଣ୍ଣ ଥିବାରୁ ଏହାର ନାମ ଗନ୍ଧମାର୍ଦ୍ଦନ ହୋଇଥିବା ମନେ ହୁଏ । ବିଶଲ୍ୟକରଣୀ, ମୃତସଞ୍ଜୀବନୀ, ଭ୍ରମରମାରୀ, ଅନନ୍ତକେଦାର, ପାତାଳଗରୁଡ଼ ପ୍ରଭୃତି ବିଭିନ୍ନ ପ୍ରକାର ମହୌଷଧି ଗୁଡ଼ିକୁ ଜଗି ରହିଛନ୍ତି ବାଘ, ଭାଲୁ, ବାରହା, ସର୍ପ, ମଶା, ମାଛି ଡାଆଁସ ପ୍ରଭୃତି ଗଢବ ମାନେ । ଏହି ପର୍ବତର

ଶୀର୍ଷ ଦେଶରେ ଏକ ସୁବିସ୍ତୃତ ସମତଳ ପଥର ଚଟାଣ ଉପରେ ସୃଷ୍ଟି ହୋଇଥିବା ଅନାଦିକାଳରୁ ସାତଗୋଟି ପୁଷ୍କରଣୀ ରହିଅଛି । ଏହାର ଜଳ ସୁମିଷ୍ଟ ଓ ସୁଶୀତଳ ଅଟେ । ଏହି ସପ୍ତ ପୁଷ୍କରଣୀରେ ସାତଗୋଟି ପଦ୍ମ ଫୁଲ ଫୁଟି ଥିବାର ଶୁଣା ଯାଏ । ମାର୍କଣ୍ଡ ଋଷଙ୍କର ଆଶ୍ରମ ଅଟେ ବୋଲି ଜନଶ୍ରୁତି ରହିଅଛି । ଏହିଠାରେ ପୁରାଣ ଯୁଗରୁ ସାଧୁସନ୍ଥ ମାନେ ଅବସ୍ଥାନ କରି ଆସିଥିବା ଶୁଣାଯାଏ ।

ଏହି ଉପବନରେ ଗୋଟିଏ ପ୍ରକାର ଗଛର ରସକୁ ସାଧୁମାନେ ସୁମିଷ୍ଟ ଦୁଗ୍ଧ ରୂପେ ଓ ଅନ୍ୟ ଏକ ଗଛର ପତ୍ର ଓ ଫୁଲକୁ ସ୍ୱ ପତ୍ର ରୂପେ ବ୍ୟବହାର କରିଥାନ୍ତି ।

ଗନ୍ଧମାର୍ଦ୍ଦନ ପର୍ବତର ବକ୍ଷ ଦେଶରେ ବହୁତ ଗୁମ୍ଫା ରହିଅଛି । ସେ ଗୁଡ଼ିକ ମଧ୍ୟରେ ବ୍ୟାଘ୍ର ଗୁମ୍ଫା ସର୍ବ ପ୍ରଧାନ ଅଟେ । ଏହି ବ୍ୟାଘ୍ର ଗୁମ୍ଫା ଭିତରେ ଗୋଟିଏ ଚତୁର୍ଭୁଜ ନାରାୟଣ ମୂର୍ତ୍ତି ଭଗ୍ନାବସ୍ଥାରେ ପଡ଼ି ରହିଛି । ଲୋକେ ଏହି ମୂର୍ତ୍ତିକୁ ମାରଣ ମୂର୍ତ୍ତି ବୋଲି କହନ୍ତି । ପ୍ରବାଦ ଅଛି ଯେ ଦର୍ଶନ ସମୟରେ ଯଦି ଦର୍ଶକର, ଛାୟା ଏହି ମୂର୍ତ୍ତି ଉପରେ ପଡ଼େ ତେବେ ତାହାର ମୃତ୍ୟୁ ହୋଇଥାଏ । ତେଣୁ ଲୋକେ ସେ ସ୍ଥାନକୁ ଯିବାକୁ ଭୟ କରନ୍ତି । ଏହି ଗୁମ୍ଫାର ନାମ ବ୍ୟାଘ୍ର ଗୁମ୍ଫା ଅଟେ ।

ଗନ୍ଧମାର୍ଦ୍ଦନ ପର୍ବତର ପାଦ ଦେଶରେ ପ୍ରବାହିତ ହେଉଥିବା ପୁଣ୍ୟତୋୟା ବୈତରଣୀ ନଦୀର ସୁଶୀତଳ ଉପତ୍ୟକା ମଧୁବନ ନାମରେ ଖ୍ୟାତ ଅଟେ । ଏଠାରେ ନାଗମଣ୍ଡ ନାମକ ସ୍ଥାନରେ ମୁନି ଋଷି ମାନେ ଜପ ଯଜ୍ଞ କରୁଥିବା ପ୍ରବାଦ ରହିଅଛି ।

ବ୍ରହ୍ମବୈବର୍ତ୍ତ ପୁରାଣର ପ୍ରକୃତି ଖଣ୍ଡ ପଠନରୁ ଜଣା ଯାଏ ଯେ ଏହି ଗନ୍ଧମାର୍ଦ୍ଦନ ପର୍ବତର ଶୀର୍ଷ ଦେଶରେ ଅବସ୍ଥିତ ମାର୍କଣ୍ଡେୟ ଋଷିଙ୍କ ଆଶ୍ରମରେ ଜଗତ ପିତା ବ୍ରହ୍ମା ଧର୍ମଦେବଙ୍କ ଠାରୁ ଜଗତ ମାତା ମହା ସରସ୍ୱତୀଙ୍କର କବଚ ଶ୍ରବଣ କରିଥିଲେ । ଯଥା-

"ଯେଉଁ କବଚକୁ ବ୍ରହ୍ମା ଗନ୍ଧମାର୍ଦ୍ଦନରେ
ଭୃଗୁଙ୍କୁ କହାଇ ଥିଲେ ହରଷ ମନରେ ।
ସେହି ବିଶ୍ୱ ଶ୍ରେଷ୍ଠ ବିଶ୍ୱ ଜୟ କବଚକୁ
ଶୁଣ ମନ ଦେଇ କରି କହୁଛି ତୁମ୍ଭକୁ ।
ଧର୍ମ ମୁଖୁଁ ପୂର୍ବକାଳେ ଗନ୍ଧମାର୍ଦ୍ଦନରେ
ଶୁଣିଥିଲି ମାହି ମୁହିଁ ଏକ ସମୟରେ"

ଧନ୍ୟ ଗନ୍ଧମାର୍ଦ୍ଦନ ଧନ୍ୟ ତୁମର ମହିମା । ତୁମେ ଜଗତକୁ ଆହୁରି ସୁଗନ୍ଧମୟ କର

- ଏହା ପ୍ରାର୍ଥନା ଅଟେ ।

ଯେପରି ତୁମର ପବିତ୍ର ଗର୍ଭରୁ ଜଗତଜନନୀ ମହାସରସ୍ୱତୀଙ୍କର ବ୍ରହ୍ମଜ୍ଞାନମୟ କବଚ ଜନ୍ମଲାଭ କରନ୍ତି, ତୋର ଗର୍ଭ ଗହ୍ୱରରୁ ବନପ୍ରାନ୍ତ ଓ ଲୁହାପଥର ବସ୍ତୁକୁ ଅନାମୂଲ୍ୟରେ ପ୍ରଦାନ କରୁଅଛ୍ । ସେହିପରି ତୋର ଏହି ଦରିଦ୍ର ଅଶିକ୍ଷିତ ଅନୁନ୍ନତ ସନ୍ତାନ ମାନଙ୍କୁ ଚିନ୍ମୟ ଜ୍ଞାନ ସହିତ ତୁଷ୍ଟି ପୁଷ୍ଟି ପ୍ରଦ ଖାଦ୍ୟ ପ୍ରଦାନ କରି ଏତିକି ପ୍ରାର୍ଥନା ।

## ଆଶ୍ରମ ବର୍ଣ୍ଣନା

ସୀତାବିଞ୍ଜି ଯେପରି ବାଲ୍ମୀକି ଋଷିଙ୍କ ଆଶ୍ରମ ସେହିପରି ଶୀର୍ଷ ବୈତରଣୀ ତୀର୍ଥ ଗୋନାସିକା ହେଉଛନ୍ତି ଜହ୍ନୁ ଓ ଭାର୍ଗବ ଋଷିଙ୍କର ଆଶ୍ରମ ସ୍ଥଳୀ ଅଟେ । ଗଙ୍ଗା ଓ ବୈତରଣୀ ନଦୀ ଦୁଇଟି ସପତ୍ନୀ ଅଟନ୍ତି । ଗଙ୍ଗାଙ୍କର ଜନ୍ମ ହେବାର ବାର ବର୍ଷ ଆଗରୁ ବୈତରଣୀଙ୍କର ଜନ୍ମ ହୋଇଛି । ଭଗବାନଙ୍କର ବାମନ ଅବତାରରେ ବଳୀକୁ ପାତାଳରେ ଚାପିବା ପରେ ବ୍ରହ୍ମା ନିଜ କମଣ୍ଡଳୁ ମଧ୍ୟରୁ ଗଙ୍ଗାକୁ ବାହାର କରି ବାମନ ବିଷ୍ଣୁଙ୍କର ବ୍ରହ୍ମାପାଦ ଧୋଇ ଥିଲେ । ମାତ୍ର ଗଙ୍ଗା ପ୍ରଭୁଙ୍କର ବାମ କନିଷ୍ଠ ଅଙ୍ଗୁଳି ମଧ୍ୟରେ ଲୁପ୍ତ ହୋଇ ଗଲେ । ବ୍ରହ୍ମା କମଣ୍ଡଳରୁ ପାଦରେ ଗଙ୍ଗାଜଳ ଢାଳିବା ସମୟରେ ଯେଉଁ ଜଳ ପୃଥିବୀରେ ଖସି ପଡିଲା ତାହା ଗୋନାସିକା ପର୍ବତର ଶୀର୍ଷ ଦେଶରେ ପଡି ଗିରି କକ୍ଷରେ ଗୁପ୍ତ ହୋଇଗଲା । ଆହୁରି କିମ୍ବଦନ୍ତୀ କଥାଯେ ଯେଉଁ ସମୟରେ ପର୍ବତ କକ୍ଷରେ ପଡିଥିବା ଗଙ୍ଗା ଜଳରୁ ଯେଉଁ କେତେକ ଜଳ ପର୍ବତ ଖୋଲରେ ରହିଲା ତାହା ସେଠାରେ ଚରୁଥିବା ଷଣ୍ଢ ପାନ କରି ଦେଲା । ସେହି ଷଣ୍ଢଟି ଦେବ ପୂତ ଗଙ୍ଗା ଜଳ ପାନ କରି ଉନ୍ମତ୍ତ ହୋଇ ବୁଲି ବୁଲି ଏକଦା ବାଲ୍ମିକି ଋଷିଙ୍କର ସୀତାବିଞ୍ଜି ଆଶ୍ରମର ପୁଷ୍ପ ଉଦ୍ୟାନ ନଷ୍ଟ କରି ଦେବାରୁ ଋଷିଙ୍କ କ୍ରୋଧରେ ତାହାର ଶିର ଖଣ୍ଡିତ ହୋଇ ଗୋନାସିକାରେ ମୁଣ୍ଡ ପଡିଲା । ସେହି ଗୋ ମୁଣ୍ଡର ଦୁଇଗୋଟି ନାସା ଧୂଆଁର ଗୋଟିଏ ରନ୍ଧ୍ରରୁ ଜଳ ଓ ଅନ୍ୟଟିରୁ ରକ୍ତ ଝରିବାକୁ ଲାଗିଲା ।

ଯେଉଁ ସମୟରେ ଏ ଘଟଣା ଗୁଡିକ ଘଟିଥିଲା ସେତେବେଳେ ସେହି ସ୍ଥାନରେ ଗୋଟିଏ ଜୁଆଙ୍ଗ ପରିବାର କେତେଗୋଟି ପଶୁ ପକ୍ଷୀ ମାରି ତାହାକୁ ନିଆଁ ଜାଳି ପୋଡୁଥିଲେ ।

ହଠାତ୍ ଗୋଟିଏ ଗୋରୁ ମୁଣ୍ଡରୁ ଅଜସ୍ର ପରିମାଣରେ ଜଳ ଓ ରକ୍ତ ପ୍ରସ୍ରବିତ ହୋଇ ସେମାନଙ୍କ ନିଆଁ ଲିଭାଇ ଦେଇ ମୁସଳ ଗଣ୍ଡରେ କିଛି ବାଟ ଧାଇଁ ଯାଇ ପର୍ବତ ବକ୍ଷରେ ଗୁପ୍ତ ହୋଇ ଗଲା । ସେହି ସ୍ଥାନର ନାମ ହେଉଛି ଗୁପ୍ତ ଗଙ୍ଗା ଗିରି ଓ ଗ୍ରାମର ନାମ ଗୁପ୍ତ ଗଙ୍ଗା ଜୁଆଙ୍ଗ ପଲ୍ଲୀ ।

ଏହି ଜୁଆଙ୍ଗ ମାନେ ଜହ୍ନୁ ଋଷିଙ୍କର ଅଙ୍ଗଜ ବୋଲି ଦାବୀ କରନ୍ତି । କାରଣ ସମସ୍ତେ ଋଷିପୁତ୍ରାଃ । ଏଣୁ ଗୋନାସିକା ଜହ୍ନୁ ଋଷିଙ୍କର ଆଶ୍ରମ ଥିବା ମନେହୁଏ । ସେହି ପରି ଗନ୍ଧମାଦନ ପର୍ବତ ସାତକର୍ଣ୍ଣି ଋଷିଙ୍କର ଆଶ୍ରମ ଅଟେ । ବୈତରଣୀଙ୍କର ଅନ୍ୟ ନାମ " ଜହ୍ନୁକନ୍ୟା " ଅଟେ ।

ସପ୍ତପର୍ଣ୍ଣି ବା ସାତ ଗୋଟି ବନୌଷଧିରେ ପରିପୂର୍ଣ୍ଣ ଗନ୍ଧମାଦନ ହୋଇ ଥିବାରୁ ତାହାର ନାମ ସାତକର୍ଣ୍ଣି ଆଶ୍ରମ ବା ଉପବନ ରୂପେ ପୁରାଣ ପ୍ରସିଦ୍ଧ ରହି ଆସିଛି । ଏକ ସୁରମ୍ୟ ତାପସିକ ଉପବନରେ ସୀତାବିଞ୍ଜି ଯେ ସୀତାଦେବୀଙ୍କର ନିର୍ବାସନ ବିଳାସ ସ୍ଥଳ ହୋଇ ନଥିବ ଏକଥା କିଏ କହିବ ? ସେହି ବିଳାପିତ ସଶ୍ରୁ ତନ୍ୱୀ ସୀତାଦେବୀଙ୍କର ଚକ୍ଷୁ ନୀରରୁ ସୀତା ନଦୀର କଣ ଉତ୍ପତ୍ତି ହୋଇ ନଥିବ !!

ଇତିହାସର ମାପ କାଠିରେ ମପାଯାଇ ସୀତାବିଞ୍ଜି ହୁଏତ ପ୍ରାଚୀନ ପ୍ରସ୍ତର ଯୁଗ ବା ଆଦିମ ମାନବ ଯୁଗର ବୋଲି ହିସାବ କରାଯାଉ ଥିଲେହେଁ ଏହାଠାରୁ ଆହୁରି ବହୁ ପ୍ରାଚୀନ ବା ପୁରାଣ ଯୁଗର ସେହି ସୀତା ନିର୍ବାସନ ଉପାଖ୍ୟାନ ହୋଇନଥିବ ଏକଥା କେବଳ ଆଈମା ଛଡ଼ା ଆଉ କେହି ସଠିକକରି ପାରିବେ ନାହିଁ । ଏହା କାହାଠାରୁ ଆରମ୍ଭ ହୋଇଛି ତାହା ଠିକ୍ କରି କହିବା ହୁଏତ ସମ୍ଭବ ନୁହେଁ । ତଥାପି ବୁଢି ଆଈ-ମା କହେ ନାତି ନାତୁଣୀ ତାଙ୍କୁ ଶୁଣନ୍ତି ଓ ବିଶ୍ୱାସର ସହିତ ମନେ ରଖନ୍ତି । ପୁଣି ସେମା-ନଙ୍କର ନାତି ଅଣନାତୁଣୀଙ୍କୁ ଶୁଣାନ୍ତି । " ଭଞ୍ଜଭୂମି କେନ୍ଦୁଝର " କାହାଣି ଠିକ୍ ସେହିପରି ।

କେନ୍ଦୁଝରର ନିଜସ୍ୱ ସାହିତ୍ୟ ଭଞ୍ଜଭୂମି ନାଟକରେ ବର୍ଣ୍ଣିତ ଅଛି ଯେ -

ଭାରତ ବର୍ଷର ଅନ୍ୟତମ ପ୍ରସିଦ୍ଧ ତୀର୍ଥ କ୍ଷେତ୍ର ହେଉଛି ନଦ ନଦୀ ନଗର ଶୋଭିତ କେନ୍ଦୁଝରର ଗୋନାସିକା ତୀର୍ଥ କ୍ଷେତ୍ର । ଏଠାରେ ଶ୍ରୀ ବୈତରଣୀ ସୁର ତରଙ୍ଗିଣୀର ଜନ୍ମ ଭୂମି ଗୋନାସିକା ଦୃଷ୍ଟି ଗୋଚର ହୁଏ । ଜମ୍ବୁ ଦ୍ୱୀପ ଭୂଷଣ ଭାରତ ବର୍ଷ ମଧ୍ୟରେ ଏପରି ଚିତ୍ତାକର୍ଷକ ତୀର୍ଥ କ୍ଷେତ୍ର ଅନ୍ୟତ୍ର କେଉଁଠି ଦେଖାଯାଏ ନାହିଁ । ଏଠାରେ ସକଳ ଦୁରିତ ହାରିଣୀ ସୁରତରଙ୍ଗିଣୀ ଶ୍ରୀ ବୈତରଣୀ ଦେବୀ ବିରାଜମାନ କରି ଅଛନ୍ତି । ଏହାର ନାମ ତ୍ରିପଥ ଗାମିନୀ ଅଟେ । ସେହି ଦେବୀ ବୈତରଣୀ ଦୁର୍ଗମ ଗିରି ଗହ୍ୱର ପୂର୍ଣ୍ଣ ଗୋନାସିକା ପର୍ବତ କନ୍ଦରରେ କିପରି ଆବିର୍ଭୂତ ହେଲେ ତାହାର ଇତିକଥା ଶ୍ରବଣ କର ।

ପୂର୍ବ କାଳରେ ବ୍ରହ୍ମା ବରୋଜା ଯଜ୍ଞର ପୁରୋଧା ହୋଇ ମର୍ତ୍ତ୍ୟମଣ୍ଡଳରେ ପଡ଼ନ୍ତି ଗୁପ୍ତଗଙ୍ଗା ଗିରି କୋଷ୍ଠରେ ଗୁପ୍ତ ରହିଥିବା ଗଙ୍ଗାଦେବୀଙ୍କୁ ଯଜ୍ଞ ପୀଠକୁ ଆଗମନ କରିବାକୁ ପ୍ରାର୍ଥନା କଲେ ।

ଦେବୀ ପଚାରିଲେ ହେ ପିତାମହ ଆପଣଙ୍କର ଯଜ୍ଞ କ୍ରିୟା କେବେ ଆରମ୍ଭ ହେଉ ଅଛି ?

ବ୍ରହ୍ମା କହିଲେ ହେ ଦେବୀ ଯେଉଁ ସମୟରେ ବାଦ୍ୟ ଧ୍ୱନି ଆପଣଙ୍କର କର୍ଣ୍ଣ ଗୋଚର ହେବ ସେତେବେଳେ ଯଜ୍ଞ ଆରମ୍ଭ ହେଲା ବୋଲି ମନେକରି ଆପଣ ଯାଗକୁ ଶୁଭାଗମନ କରିବା ହେବେ ।

କିଛି ଦିନ ଗତ ହୋଇ ଗଲା, ଦିନେ ଗୁପ୍ତ ଗଙ୍ଗା ଗିରିର ପାଦ ଦେଶରେ ବାସ କରୁଥିବା ଗୁପ୍ତ ଗଙ୍ଗା ଜୁଆଙ୍ଗ ପଲ୍ଲୀର ଜୁଆଙ୍ଗ ମାନଙ୍କର ପର୍ବ ପଡ଼ିଲା । ସେମାନେ ହାଣ୍ଡିଆ ପାନ କରି ଆନନ୍ଦରେ ବାଦ୍ୟ ବଜାଇ ନାଚିବାକୁ ଆରମ୍ଭ କଲେ । ଜୁଆଙ୍ଗ ମାନଙ୍କର ଗୁଙ୍ଗୁ ବାଦ୍ୟ ନାଦ ଶୁଣି ଗଙ୍ଗାଦେବୀ ବ୍ରହ୍ମାଙ୍କର ବରୋଜା ଯଜ୍ଞ ଆରମ୍ଭ ହେଲା ବୋଲି ଭ୍ରମରେ ପଡ଼ି ବ୍ୟଗ୍ର ଗତିରେ ଗିରି କୋଷ୍ଠରୁ ନିସୃତ ହେଲେ । ମର୍ତ୍ତ୍ୟ ପୁରରେ ସର୍ବ ପ୍ରଥମେ ପ୍ରବାହିତ ହୋଇଥିବା ଏହି ଗଙ୍ଗା ଜଳ ଧାରା ଶ୍ରୀ ବୈତରଣୀ ଧାର ରୂପେ ପ୍ରଖ୍ୟାତ ହେଲା । କାରଣ ଗଙ୍ଗାଙ୍କର ନବ ବିଧ ଜଗରୁ ଆଦ୍ୟ ଭାଗ ହେଉଛି ବୈତରଣୀ ଜଳ ଧାର । ଏହି ବୈତରଣୀ ସାକ୍ଷାତ ସୁରତରଙ୍ଗିଣୀ ଅଟେ । ଆଦ୍ୟ ବୈତରଣୀ ଧାର ଶିବଙ୍କର ଜଟା ଜୁଟ ମସ୍ତକରେ ଧାରଣ କରୁ ଅଛନ୍ତି । ଦେବୀ ବୈତରଣୀ ଶଙ୍କର-ଙ୍କର ଚିତ୍ତ ଶାନ୍ତ ପ୍ରଦାୟିନୀ ତଥା କଳ୍ପସ୍ତ ବା ସୂର୍ଯ୍ୟ ବଂଶରୁ ଉତ୍ପତ୍ତି ହୋଇଥିବା ଭଞ୍ଜ ଭଞ୍ଜ ବଂଶର ପାବନ କାରିଣୀ ରୂପେ ପ୍ରବାହିତ ହେଉ ଅଛନ୍ତି ।

ନମୋଽସ୍ତୁତେ ବିଷ୍ଣୁପଦପ୍ରଭୂତେ
ନମଃ ପବିତ୍ରୀକୃତସର୍ବଭୂତେ
ଗୋନାସିକାବାସିନୀ ନିତ୍ୟପୂତେ
ନମୋଽସ୍ତୁତେ ଭକ୍ତି ଯାମଦୂତେ ।

ହେ ବିଷ୍ଣୁ ପଦ ପ୍ରଦାୟିନୀ ଦେବୀ ବୈତରଣୀ ତୁମଙ୍କୁ କୃତାଞ୍ଜଳୀପୂର୍ବ ନମସ୍କାରକରୁ ଅଛୁ ।

ହେ ସର୍ବଭୂତ ପବିତ୍ର କାରିଣୀ ଗୋନାସିକା ବାସିନୀ ନିତ୍ୟପୂତ ତୁମଙ୍କୁ ନମସ୍କାର ।

ଯେଉଁ ଦେବୀଙ୍କର ନାମ ସ୍ମରଣରେ ଓ ପବିତ୍ର ଉଦକ ପାନରେ ଯମ ଦୂତ ଭୟଭୀତ ହୋଇ ପଳାୟନ କରେ । ମୁଁ ସେହି ଦେବୀ ବୈତରଣୀଙ୍କୁ ନମସ୍କାର କରୁ ଅଛୁ ।

ହେ ପତିତ ପାବନୀ !

ଯତ୍ପୁଣ୍ୟଃ - ସ୍ପର୍ଶମାତ୍ରେଣ ବହୁଜନ୍ମସୁ ସଞ୍ଚିତଂ
ଦୂରିତଂ କ୍ଷୀୟତେ ତଂ ତ୍ୱାଂବନ୍ଦେ ବୈତରଣୀଂ ମୁହୁଃ ।

ଯାହାର ଜଳ ସ୍ପର୍ଶ ମାତ୍ରେକେ ବହୁ ଜନ୍ମରୁ ସଞ୍ଚିତ ଦୁରିତ ମାନ ଖଣ୍ଡନ ହୋଇ ଥାଏ, ସେହି ଦେବୀ ବୈତରଣୀଙ୍କୁ ନମସ୍କାର ।

ଶ୍ଳୋକ:— ବୟସ୍ୟ ! ତଦୁଦନ୍ତଃ ଶ୍ରୂୟତାଂ ।
ଶୁଭସ୍ଯ ତାଂ ସର୍ବବସୁନ୍ଧରାୟାଃ
ଗୋନାସିକା ପର୍ବତ କନ୍ଦରାୟାଃ
ଜ୍ଞାତ୍ୱାଽବତୀର୍ଣ୍ଣାଂ କରୁଣୌଘପୂର୍ଣ୍ଣାଂ
ତୂର୍ଣ୍ଣଂ ବଧିର୍ନୈର୍ଭୁମିହାଜଗାମ ।

ଗୋନାସିକା ଗିରି ଗୋଷ୍ଠରେ ପରମ ପାବନୀ ଦେବୀ ବୈତରଣୀଙ୍କର ଶୁଭ ଆବିର୍ଭାବ ବାର୍ତ୍ତା ପାଇ ବ୍ରହ୍ମା ଇନ୍ଦ୍ରାଦି ଦେବଗଣ ତଥା ବ୍ରହ୍ମର୍ଷୀ ଯୋଗୀ ମୁନି ଗଣ ହର୍ଷ ପ୍ରଫୁଲ୍ଲିତ ହୋଇ ଗୋନାସିକା ଗିରି ଶିଖରରେ ପହଞ୍ଚି ସ୍ୱୟଂ ହଂସାରୂଢ଼ ଚତୁର୍ମୁଖ ବ୍ରହ୍ମା ବେଦ ପୁରାଣ ବାକ୍ୟରେ ଦେବୀଙ୍କର ଯେଉଁ ସ୍ତୁତି ଗୋଟି ସ୍ତବ ଗାନ କଲେ ତାହା ଶ୍ରବଣ କର ।

ଯଥା — ଧନ୍ୟେୟମସ୍ୟାଂ ଭୁବି ଜନ୍ତୁ ଧନ୍ୟେ
ଧନ୍ୟେଷ୍ଟ ବାସେନ ତବାଦ୍ୟ ମନ୍ୟେ
ଏଣାଦି ବନ୍ୟା ଅପି ସର୍ବପୁଣ୍ୟାଃ
ପାପାପହେ ବୈତରଣୀ ପ୍ରସୀଦ ।
ଅମୀଦ୍ରୁମା ଧନ୍ୟତମା ଜଗତ୍ୟା—
ମମୁକ୍ତକୂଳା ଜଳସିକ୍ତମୂଳାଃ ।
ମୀନା ଅପି ଉଜ୍ଜ୍ୱଳପୁଚ୍ଛଲୀଳାଃ
ପାପାପହେ ବୈତରଣୀ ପ୍ରସୀଦ ।
ଅଂହଃସମୁଦ୍ରେ କୃତଭଦ୍ରମୁଦ୍ରେ
ନଦୀତ୍ୱତାଂ ବୈତରଣିସ୍ତ୍ୱମେବ ।
ତବାସ୍ତୁ ତଦ୍‌ବୈତରଣୀତି ସଂଜ୍ଞା
ପାପାପହେ ବୈତରଣି ପ୍ରସୀଦ ।
ଆଗତ୍ୟ ମାତଃ କରୁଣାଂ ବିଧତ୍ସ୍ୱ
ପ୍ରପୂରୟ ମେ ବାଞ୍ଛିତମଦ୍ୟ ତୋୟେ !
ସତ୍ତ୍ୱଂ ମଦୀୟଂ କୁରୁ ତତ୍ ପବିତ୍ରଂ
ପାପାପହେ ବୈତରଣି ପ୍ରସୀଦ । ଇତି ।

ବ୍ରହ୍ମାଦି ଦେବ ଋଷି ଗଣଙ୍କର ସ୍ତବ ଓ ପ୍ରାର୍ଥନାରେ ଦେବୀ ସନାତନୀ ବୈତରଣୀ ସୁପ୍ରସନ୍ନା ହୋଇ ବ୍ରହ୍ମାଙ୍କ ସହିତ ବନସ୍ଥଳୀରୁ ଯଜ୍ଞ ପୀଠକୁ ଯିବାକୁ ଅଗ୍ରସର ହେଲେ । ତାପରେ ଭଗବାନ ବ୍ରହ୍ମା ଦେବୀଙ୍କର ପ୍ରୀତ୍ୟର୍ଥରେ ତାଙ୍କର ଆବର୍ଭାବ ସ୍ଥଳୀରେ ବ୍ରହ୍ମେଶ୍ୱର ନାମକ ଶିଳାମୟୀ ଲିଙ୍ଗ ସ୍ଥାପନ, ପୂଜନ ଓ ଅର୍ଚ୍ଚନ କରି ଯଜ୍ଞ କୁଣ୍ଡଖୋଳାଇ ଯାଗ କଲେ ।

ତତଃ — କ୍ରୋଶଂ କ୍ରୋଶଂ ସପଥି ସକଳସ୍ଥାନପର୍ଯ୍ୟନ୍ତମସ୍ମାତ୍
ତତ୍ପ୍ରୀତ୍ୟର୍ଥଂ ବିଷମଗହନେ ଶୈବଲିଙ୍ଗାନ ବେଧାଃ
ଭକ୍ତିଶ୍ରଦ୍ଧାଭରଭୃତମନାଃ ସଂପ୍ରତିଷ୍ଠାପ୍ୟ ତେଷାଂ
ପୂଜାଂ କୁର୍ବନ୍ ତଟନିକଟଭୂଦେଶତସ୍ତାଂ ନନାମ ।

ତାପରେ ବ୍ରହ୍ମା ଦେବୀଙ୍କର ପ୍ରତି ନମସ୍କାର ବ୍ରହ୍ମେଶ୍ୱରଙ୍କର ପୀଠ ଠାରୁ ଯଜ୍ଞ କ୍ଷେତ୍ର ଯାଏଁ ସମଗ୍ର ଗହନ ବନ ପ୍ରଦେଶରେ ପ୍ରତ୍ୟେକ କ୍ରୋଶ ଦୂରତ୍ୱରେ ଗୋଟିଏ ଗୋଟିଏ କ୍ରୋଶ ଲିଙ୍ଗ ସ୍ଥାପନ କରି ଭକ୍ତି ଓ ଶ୍ରଦ୍ଧାର ସହିତ ପୂଜାର୍ଚ୍ଚନ କରି ଥିଲେ ।

ସଖେ ! ପିତାମହାଭ୍ୟର୍ଚ୍ଚନ କାଲତୋଽସ୍ମିଂ
ସ୍ତଦାଙ୍କସ୍ଥାଽଽସ୍ତେଽମରଚମ୍ପକଦ୍ରୁଃ ।
ବ୍ରହ୍ମେଶ୍ୱରୋଽଦ୍ୟାପି ଚ ଯତ୍ପ୍ରସୂନୈଃ
ପ୍ରପୂଜ୍ୟତେ ବୈତରଣୀ ଚ ନିତ୍ୟଂ ।
ତଦାଗଚ୍ଛ ବ୍ରହ୍ମେଶ୍ୱରଂ ଦ୍ରକ୍ଷ୍ୟାବଃ ।

ବ୍ରହ୍ମା ଯେଉଁ କାଳରୁ ସେଠାରେ ବ୍ରହ୍ମେଶ୍ୱରଙ୍କର ପୂଜା କରିଥିଲେ ସେହି କାଳରୁ ଏଠାରେ ଏହି ଚଂପକ ବୃକ୍ଷଟି ପୁଣ୍ୟତୋୟା ବୈତରଣୀ ତଟ ଦେଶରେ ଦଣ୍ଡାୟମାନ ରହି ପ୍ରତ୍ୟହ ଯେଉଁ ସଦ୍ୟ ପୁଷ୍ପ ବୈତରଣୀ ଜଳ ଧାରରେ ମୁଞ୍ଚନ କରେ ସେହି ମୁଷ୍ପରେ ଦେବୀ ବୈତରଣୀ ଶ୍ରୀବ୍ରହ୍ମେଶ୍ୱରଙ୍କର ସେବା ପୂଜା ଅଦ୍ୟାବଧି କରି ଆସୁ ଅଛନ୍ତି । ଏହି ସ୍ଥାନର ଦୃଶ୍ୟ ଅତି ମନୋରମ ତଥା ସୁଶୀତଳ ଅଟେ । ହେ ବନ୍ଧୁ, ଏବେ ଆସ ଶ୍ରୀ ବ୍ରହ୍ମେଶ୍ୱରଙ୍କ ଦର୍ଶନ କରିବା । ଏହାପରେ ସେମାନେ କଳିତ ଅଞ୍ଜଳୀ ହୋଇ ଶ୍ରୀ ବ୍ରହ୍ମେଶ୍ୱରଙ୍କ ଲିଙ୍ଗ ସନ୍ନିକଟରେ ପହଞ୍ଚିଲେ ।

ମଙ୍ଗଳ ମଣିବେଷ୍ଟିତ ଗୋନାସିକା ପର୍ବତର ପାଦ ଦେଶରେ ଶ୍ରୀ ବୈତରଣୀ ନଦୀର ତଟ ଦେଶରେ ଅବସ୍ଥିତ ବ୍ରହ୍ମକୁଣ୍ଡ ସନ୍ନିକଟରେ ଯଜ୍ଞ ସମୟରେ ବ୍ରହ୍ମା ରୋପଣ କରିଥିବା ଚମ୍ପକ ବୃକ୍ଷ ସମେତ ଚନ୍ଦନ ପ୍ରଭୃତି ବନସ୍ପତି ଗଣ ଏବଂ ସୁରମ୍ୟ ଉପବନର ଶୋଭା ନିଳୟ ନିର୍ମାଣ କରି ନବକିଷଲୟ ବେଶରେ ଦୋଳାୟିତ ହୋଇ ଅତ୍ର କ୍ଷେତ୍ରାଧିପତି ବ୍ରହ୍ମେଶ୍ୱର ମହେଶଙ୍କର ପାଦରେ ପୁଷ୍ପ ଉପହାର ପ୍ରଦାନ କରୁଅଛନ୍ତି । ଯକ୍ଷ ଭ୍ରାତୃଦ୍ୱୟ ବଦ୍ଧାଞ୍ଜଳୀପୁଟ ହୋଇ ପ୍ରାର୍ଥନା କଲେ ।

ନିର୍ଦ୍ଦଗ୍ଧସ୍ତ୍ରିପୁରାସୁରସ୍ତୃଣମିବାନଙ୍ଗୀକୃତୋ ଦର୍ପକଃ
ଜ୍ଞାନାଣ୍ଡୋଽପିବିନଷ୍ଟଗର୍ବମହିମା ପୀତଂ ବିଷଂ ଭୀଷଣଂ ।
ଦୀର୍ଘାୟୁଷ୍ଟ କୃତୋ ମୃକଣ୍ଡୁତନୟୋ ଯେନ ଭ୍ରୂଟେବା ଲୀଳୟା
ଗୋନାସାଦ୍ରିନିବାସିନଂ ଶିବମିମଂ ବ୍ରହ୍ମେଶ୍ୱରାଖ୍ୟଂ ଭଜେ ।

ହେ ତ୍ରିପୁରାସୁର ନିଧନକାରୀ; ହେ ଅନଙ୍ଗ ଦର୍ପ ଦହନକାରୀ; ହେ ଅସୁର ସଂହାରକାରୀ; ହେ ଭୀଷଣ ବିଷପାୟୀ; ହେ ମୃକଣ୍ଡନେୟ ଦୀର୍ଘାୟୁବର ପ୍ରଦାୟକ ଗୋନାସିକା ନିବାସୀ ଶ୍ରୀ ବ୍ରହ୍ମେଶ୍ୱର ଆପଣଙ୍କୁ ନମସ୍କାର କରୁଅଛୁ । ତତ୍ପରେ ସେମାନେ ଶ୍ରୀ ବ୍ରହ୍ମେଶ୍ୱର ମହାଦେବଙ୍କ ସମ୍ମୁଖରେ ବିରାଜିତ

ପ୍ରଚଣ୍ଡତାଣ୍ଡବାଡମ୍ବରପ୍ରଚଳିତାଖଣ୍ଡନୃମୁଣ୍ଡପ୍ରଭୃତାକାଣ୍ଡଭବନ୍ୟଞ୍ଚିତନିଜଫଣା-
କାଣ୍ଡବ୍ୟଥିତକୁଣ୍ଡଳକୁଳାଖଣ୍ଡଳସ୍ତୁତାଂ ଦଶଦୋର୍ଦ୍ଦଣ୍ଡମଣ୍ଡିତାଂ ଚଣ୍ଡିକାଂ" ।

ଦର୍ଶନ କରି ପ୍ରାର୍ଥନା କଲେ ।

ହେ ଦେବୀ ! ନମସ୍ତେ ନମସ୍ତେ —
ଚରାଚରଶୁଭପ୍ରକୃତିରସୁରଭିମର୍ଦ୍ଦନ —
ନୃସିଂହମ ଏବ ହୃଚ୍ଛିତସ୍ୱପବର୍ଗଦେ
ଧାରାଧରାଧିରାଜଜାତେ ବିଷମସ୍ମିତ
ମୁରଭିସମ୍ଭୂଜାବଳୀପରାଗରଞ୍ଜିତକରେ ।

ଏଠାରେ ଦେବୀ ବୈତରଣୀ ପତିତପାବନୀ ଜଗତ ତାରଣୀ "ତାରିଣୀ" ନାମରେ ନିତ୍ୟ ପୂଜା ପାଉଅଛନ୍ତି । ସେ ପରମ ବୈଷ୍ଣବୀ ହୋଇ ଥିଲେହେଁ ଶାକ୍ତ ଓ ଶୈବ ମତରେ ପୂଜିତ ହୋଇଥାନ୍ତି । ବୈତରଣୀ ନଦୀର ଅବବାହିକା ମହାଶାବସ୍ତ ସଂସ୍କୃତିର ଉତ୍ପତ୍ତି କ୍ଷେତ୍ରର ପ୍ରମାଣ ସ୍ୱରୂପ ଭଞ୍ଜଭୂମିରେ ଦେବୀ ତାରିଣୀ ହେଉଛନ୍ତି ସର୍ବମୟୀ କର୍ତ୍ତ୍ରୀ । ଦେବୀ ବୈତରଣୀ ତାରିଣୀ ନାମରେ ବିଖ୍ୟାତ ହୋଇଥିବା ବୈଦାନ୍ତିକ ସମୀକ୍ଷାରୁ ପ୍ରତୀୟମାନ ହୁଏ । କାରଣ ମହାଶାବସ୍ତ କ୍ଷେତ୍ର ହେଉଛି "ତାରିଣୀ ପୀଠ" । ସେଠାରେ ଦେବୀ ତାରିଣୀ ମହାଶାବସ୍ତ ମତରେ ପୂଜିତ ହେଉ ଅଛନ୍ତି । ଘଟ ଗ୍ରାମଠାରେ ବିରାଜିତ ଦେବୀ ତାରିଣୀଙ୍କ ପୀଠର ପୂଜକ କନ୍ଧ ଜାତିର ଲୋକ ହୋଇଥିବା ସମୟରେ ବ୍ରହ୍ମେଶ୍ୱରଠାରେ ତଥା ଗୁପ୍ତଗଙ୍ଗା ଗ୍ରାମ ଭିତରେ ଅବସ୍ଥିତ ଜୁଆଙ୍ଗମାନେ ବୈତରଣୀଙ୍କର ପୂଜକ ହେଉଅଛନ୍ତି ଜୁଆଙ୍ଗ ଜାତି । ବ୍ରାହ୍ମଣୀ ଓ ବୈତରଣୀ ନଦୀର ସୁରମ୍ୟାଦ୍ରି ଉପତ୍ୟକାରେ ବିରାଜିତ ଶ୍ରୀ ବାଣେଶ୍ୱର ଓ ଶ୍ରୀ ମୃଗମହାଦେବ ଭୂୟାଁ ଜାତିମାନଙ୍କ ଦ୍ୱାରା ପୂଜିତ ହେଉଥିବା ସମୟରେ ବ୍ରହ୍ମେଶ୍ୱର ତଥା ତାରିଣୀ ପୀଠର ପୂଜକ ହେଉଛନ୍ତି ଯଥା କ୍ରମେ

ଜୁଆଙ୍ଗ ଓ କନ୍ଧ ଜାତର ଲୋକ । ଏମାନେ ଶବରର ଅଟନ୍ତି । ଏଣୁ ବ୍ରାହ୍ମଣୀ ଓ ବୈତରଣୀ ନଦୀର ସମଗ୍ର ପାର୍ବତ୍ୟ ଉପତ୍ୟକା ଶୈବଶାକ୍ତ ପୀଠ ରୂପେ ଖ୍ୟାତି ଅର୍ଜନ କରି ମହାଶାବରୀ ସଂସ୍କୃତିର ପ୍ରାଣକେନ୍ଦ୍ର ଥିବା କଥା ଜଣାଯାଏ ।

ନିଷ୍କାମାଃ ଫଳମୂଳଜାତରୁଚୟଃ ଶୂନ୍ୟାରଣ୍ୟେଽକ୍ରୋଧନା
ଯେଽଲବ୍ଧାଃ କନକାଦିବୋଧରହିତା ମୁକ୍ତାସ୍ତୁ ମୋହେନ ଯେ
ଗୁଞ୍ଜାର୍ଥୀ ରମଣୀ ଜନାର୍ଦ୍ଦନପରା ମାଧୁର୍ଯ୍ୟହୀନାସ୍ତୁ ଯେ
ଦୃଶ୍ୟନ୍ତେ ଶବରାଖ୍ୟସିଦ୍ଧଚରଣାଂ ତେଷାମମୀ ପକ୍ୱଣାଃ ।

ଏହି ଜୁଆଙ୍ଗମାନେ ନିଷ୍କାମୀ ଅଟନ୍ତି । ସେମାନେ ଗଛର ଫଳମୂଳ ଖାଇ ସବୁଜ ବୃକ୍ଷ ତଳରେ ବାସ କରନ୍ତି । ସେମାନେ ଅକ୍ରୋଧ ସ୍ୱଭାବ ବିଶିଷ୍ଟ ଓ ସୁନା, ରୂପା, ମଣି ମାଣିକ୍ୟ ବୋଧ ରହିତ ଅଟନ୍ତି । ସ୍ତ୍ରୀ ଲୋକମାନେ ସେମାନଙ୍କର ବୃକ୍ଷ ଦେଶକୁ ଗୁଞ୍ଜ ମାଳ ଦ୍ୱାରା ଆବୃତ୍ତ କରି ରଖିବାକୁ ଭଲ ପାଆନ୍ତି । ସେମାନେ ମାଧୁର୍ଯ୍ୟ ବେଶଧାରୀ ହୀନ ଲୋକ ହେଲେହେଁ ସର୍ବଦା ସରଳ ପ୍ରାଣ ଓ ସତ୍ୟନିଷ୍ଠ ଅଟନ୍ତି । ସେମାନେ ଶ୍ରୀ ବୈତରଣୀ ଓ ଶ୍ରୀ ବୃଦ୍ଧେଶ୍ୱରଙ୍କର ଭକ୍ତ ଅଟନ୍ତି ।

ଏତାଃ ପଶ୍ୟ ସମାନପାଦଚଳନାସ୍ତୁଲ୍ୟାବନମ୍ରାନନା—
ସ୍ତୁଲ୍ୟାବସ୍ଥିତିରୂପବେଶବୟସଃ ସ୍ତୁଲ୍ୟଂ ଚ ସଂକ୍ରନ୍ଦିତା ॥
ଯାତାୟାତବିଧାନିରୂପନଟନଂ ବାଦ୍ୟସ୍ୱଗୀତୋଦ୍ଧତେ—
ର୍ଯୁକ୍ତଃ ସ୍ୱୈରମଟନ୍ତିସ୍ୱପାବରହିତାଃ କୁର୍ବନ୍ତି ବନ୍ୟାଙ୍ଗନାଃ ॥

ସେମାନେ ପୁଣି ଦେଖିଲେ ସମାନ ବୟସ୍କା ବନାଙ୍ଗନାମାନେ ସମତାଳରେ ପାଦ ମିଳାଇ ଗମନ କରିବା ସଙ୍ଗେ ସଙ୍ଗେ ସମାନ ସ୍ୱରରେ ସଙ୍ଗୀତ ଗାନ କରି ଆନନ୍ଦରେ ବନବନ ଭ୍ରମଣ କରୁଛନ୍ତି ।

ଭ୍ରମନ୍ତି ପର୍ଣ୍ଣକସନା ଗୁଞ୍ଜାପୁଞ୍ଜୈକମଣ୍ଡନାଃ
ଅନାବୃତସ୍ତନାଃ ପୀନା ବଦାନ୍ତଃ ଶବରାଙ୍ଗନାଃ ।

ସେମାନେ ପୁଣି ଦେଖିଲେ ଗଛର ପତ୍ର ପରିଧାନ କରିଥିବା ଓ ସର୍ବାଙ୍ଗ ଗୁଞ୍ଜ ମାଳରେ ମଣ୍ଡିତ ହୋଇଥିବା ଅନାବୃତ୍ତ ପୀନ ସ୍ତନା ତରୁଣୀ ଶବରୁଣୀମାନେ ବନ ପ୍ରଦେଶରେ ନିର୍ଭୟରେ ଭ୍ରମଣ କରୁଛନ୍ତି ।

ପାଷଙ୍ଗାସକ୍ତପୃଷ୍ଠାଃ ଶିତପରଶୁଲସନ୍ମଧ୍ୟମଧ୍ୟପ୍ରଦେଶା —
ଗାଢୋଦ୍ୟକ୍ରପଟ୍ଟୀକାଃ ପ୍ରକଟିତଜଠରାଃ କାଣ୍ଡକୋଦଣ୍ଡହସ୍ତାଃ
ଘୋରାଃ ପଶ୍ଚାନ୍ନିଲଗ୍ନୈଶ୍ଚରଗଣ୍ଡୈଃ ପୁକ୍କସାକୁକ୍କୁରୌଘୈଃ
ବ୍ୟଗ୍ରା ଗୃଦ୍ଧାନ୍ମୃଗାଦୀନପିଘନଗହନାନ୍ୟନ୍ତରାଽନ୍ୱେଷୟନ୍ତି ।

ପୃଷ୍ଠ ଦେଶରେ ଧନୁ, ତୂଣୀର ପରଶୁ, କୁଠାର ଧାରଣ କରି କଟି ଦେଶରେ କାଛୁଆ ପରିଧାନ କରିଥିବା ଭୂୟାଁ ଯୁବକମାନେ କୁକୁର ଦଳଧରି ଜଠର ଉଦରରେ ଘୋରବନ ମଧ୍ୟରେ ଘୁରିଘୁରି ଗୁଣ କୁକୁଡା ପ୍ରଭୃତି ପକ୍ଷୀ ଶିକାର କରିବା ସଙ୍ଗେ ସଙ୍ଗେ ମୃଗାଦି ଶିକାର ଅନ୍ୱେଷଣ କରୁଛନ୍ତି ।

ଘୋରବେଶାଡମ୍ବରଭୟଙ୍କରେ ଭ୍ୟୋଽପିନାସ୍ତି ଭୀତିରେତେଭ୍ୟଃ,ଯତଃ

ଏତେ ଯଦ୍ୟପି ସର୍ବଗାବକବଳାଃ ପଞ୍ଚାସ୍ୟଶଙ୍କାକୁଳା—
ସ୍ତ୍ରୀକ୍ଷେଣୈକୈଷୁ-ସମାଦୃତିପ୍ରମଥିତପ୍ରୋନ୍ମତ୍ତଦନ୍ତାବଳାଃ ।
ଶବ୍ଦ ସ୍ବାସଦକାଣ୍ଡମଣ୍ଡିତ ମହେଷ୍ବାସୋଲ୍ଲସତ୍ପାଣୟୋ
ଭୀମାଙ୍ଗାସ୍ତଦପି ସ୍ୱଭର୍ତ୍ତ୍ରିଭୟତୋ ନ ଘ୍ନନ୍ତି ପାନ୍ଥାନହ

ଭୟଙ୍କର ବେଶ ଧାରଣ କରିଥିବା ଏହି ବନ୍ୟ ପ୍ରଦେଶ ବ୍ୟାଘ୍ର, ଭଲ୍ଲୁକ ପ୍ରଭୃତି ପ୍ରାଣୀମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥାଇ ପାନ୍ଥ ମନରେ ଭୟ ସଂଚ୍ଚର କରେ ।

ଅହୋ ଗ୍ରାମସ୍ୟାନ୍ତମେତତ୍ ସ୍ଥଲଂ ।
ଯଦୈଶ୍ୟତନ୍ନେ କସତ୍ପାଜରତରପତିତାନ୍ତର୍ଗତାସ୍ରାନ ସ୍ୱବସ୍ରାନ୍
ନାନାସତ୍ତ୍ୱାସ୍ଥି ଖଣ୍ଡ ସ୍ଥିତପିଶିତଲବାନ୍ ମକ୍ଷିକାଲକ୍ଷଯୁକ୍ତାନ୍ ।
ଉଦ୍ୟତ୍କାଟୌଘବ୍ୟାପ୍ତାନପି ବଳକଟରଦାଃ ସାରଭ୍ରାତୃମେଧ୍ୟାଃ
କୀଟାନୁସ୍ରାର୍ଯ୍ୟ ଦନ୍ତୈର୍ମୁକୁଳିତନୟନା ଧୂତପୁଚ୍ଛାଲିହନ୍ତି ।

ତତ୍ପରେ ଯକ୍ଷ ବନ୍ଧୁଦ୍ୱୟ ଶବର ପଲ୍ଲୀ ଭିତରେ ପ୍ରବେଶ କରି ଦେଖିଲେ ଯେ ବନବାସୀମାନେ କୁକୁର ବେଷ୍ଟିତ ହୋଇ ଶୁଖିଲା ଶାଳ ଫଳ ଶରଙ୍ଗୀ କଳେଇ ପୋକ ଭକ୍ଷଣ କରୁଥିଲେ । ସେମାନଙ୍କର ମନେହେଲା ଭାରତର ଅନ୍ୟତ୍ର କେଉଁଠି ଏପରି ପ୍ରାକୃତିକ ତଥା ଆଦିମ ମଣିଷର ଜୀବନ ଯାପନର ଚିତ୍ରଆଖାନା ଦେଖା ଯାଏ ନାହିଁ ।

କିଂଚ ସ୍ଥଳଂ ସ୍ୱଚରଣୋଲ୍ଲିଖିତଂ ଜନନ୍ୟାଃ
ହଂପୂର୍ବିକାଦ୍ଭୁତଗତାଗତଧୂତପକ୍ଷାଃ
ଲକ୍ଷ୍ୟଂ ଶର ଇବ ଜବା (୧) ଲ୍ଲୁବରଂ ଲ୍ଲୁବନ୍ତୋ
ବେଲ୍ଲନ୍ତି ମିଳନ୍ତି ଶିଶବସ୍ତୁରଣ ଯୂଥାନାଂ ।

ଏତେ ରାମଗିରେଃ ପୁଳିନ୍ଦକଳଭୈଃ ସାନ୍ଦ୍ରୀକୃତୈଃ ପୁଷ୍ପିତୈଃ
ଶୋଭନ୍ତ୍ୟା ଗିରୟୋ ହରନ୍ତି ପରିତଃ କାନ୍ତିଂ ସୁମେରୋଃ ପରାଂ
ଏତେଷାଂ ପରିତଃ ପୁଳିନ୍ଦବନିତା ଯୂଥୋଦ୍ଧୁରାଃ କୋଟିଶଃ
ପ୍ରୋନ୍ମତ୍ତାଃ ପରିପକ୍ଷକକ୍ଷଦହନେ ଦାବାଗ୍ନିକଲ୍ପାଃ ସ୍ଥିତାଃ ।

ଏହା ଦେଖି ଅନଙ୍ଗ ନାମକ ଯକ୍ଷ ଭୟ ବିହ୍ୱଳିତ କଣ୍ଠରେ ପଚାରିଲା ହେ ବନ୍ଧୁ ! ବରାହ, ଗଜ, ଶାର୍ଦ୍ଦୁଳ ପ୍ରଭୃତି ଦୁଷ୍ଟ ପ୍ରାଣୀମାନେ ସର୍ବଦା ବିଚରଣ କରୁଥିବା ଏହି ଘନବନ ମଧ୍ୟରେ ମନୁଷ୍ୟ କିପରି ବାସ କରନ୍ତି ? ପ୍ରିୟ ନାମକ ଯକ୍ଷ କହିଲେ ହେ ବନ୍ଧୁ ! ସାରା ସଂସାର ମଧ୍ୟରେ ବାଘ ଓ ମଣିଷ ମଧ୍ୟରେ ଭକ୍ଷ ଭକ୍ଷକ ସମ୍ପର୍କ ଦେଖା ଯାଉଥିଲେ ହେଁ ଏଠାରେ ତାହାର ବ୍ୟତିକ୍ରମ ପରି ଲକ୍ଷିତ ହୁଏ । କାରଣ ଏହା ହେଉଛି ଏହି ରାଜ୍ୟର ରାଜ ଧର୍ମ । ଅନଙ୍ଗ ବିସ୍ମୟ ହୋଇ ପଚାରିଲେ ହେ ବନ୍ଧୁ ! ଅଖର୍ବ ସଂଖ୍ୟାରେ ପର୍ବତ ପରିବେଷ୍ଟିତ ସର୍ବ ଶତ୍ରୁ ପ୍ରବେଶର ସୁଦୁର୍ଗମ ବନ୍ୟ ପ୍ରଦେଶର ରାଜା କିଏ ? ସେ କେଉଁଠି ରହନ୍ତି ? ରାଜ୍ୟର ନାମ କଣ ? ପ୍ରିୟ ନାମକ ଯକ୍ଷ କହିଲେ ହେ ବନ୍ଧୁ ! ଶୁଣ ।

ରମ୍ୟା ସାଗର କନ୍ୟକୈକବସନା ଦୁର୍ଗୈଃ ପରୈର୍ଦୁର୍ଗ୍ରହା
ଶଶ୍ୱତ୍କୁରଙ୍ଗକୁଞ୍ଜରବରୈଃ କାଣ୍ଡୀର କାଣ୍ଡୈର୍ବୃତା
ଏଷା ଭୁବନପ୍ରସିଦ୍ଧଯଶସାଂ ଶ୍ରୀଭଞ୍ଜଭୂମୀଭୁଜାଂ
ବିଂଶଦୋପଜନପ୍ରସୂତା ବସୁମତୀ ସଜନତ୍ତା ଭାଜତେ ।

ସୁରମ୍ୟ ପୂର୍ବ ସାଗର ତୀର ଯାଏଁ ବ୍ୟାପୃତ ଥିବା ଏହି ଦୁର୍ଗମ୍ୟ ତରୁଙ୍ଗ ଭୃଙ୍ଗ ଗିରିଦୁର୍ଗ- କନକ ନଗରୀ- ସର୍ବଦା କୁରଙ୍ଗ କୁଞ୍ଜର ଓ କାଣ୍ଡୀର ପରିପୂର୍ଣ୍ଣ ହୋଇ ସୁବିଶାଳ ଯଶ ପ୍ରସିଦ୍ଧି ଧାରଣ କରି ଶ୍ରୀଭଞ୍ଜଭୂମି ନାମରେ ବିଶ୍ୱ ବିଖ୍ୟାତ ଅଟେ । ବିଂଶଯୋଜନ ବିସ୍ତୃତ ଏହି ରାଜ୍ୟ ପ୍ରଖ୍ୟାତ ଭଞ୍ଜ ରାଜ ବଂଶ ଦ୍ୱାରା ଶାସିତ ହେଉଅଛି ।

କିଂନାମଧେୟେୟଂ ନଗରୀ ?

ହେ ବନ୍ଧୁ ! ଏହି ନଗରୀର ନାମ କଣ ?

ନିତ୍ୟଂ ଶ୍ରୀରେବତୀକାନ୍ତଂ ସେବନ୍ତେ ଦୈବତୈର୍ବୃତଃ
ଯାମସ୍ଥିତ୍ ପ୍ରଭୃତୟସ୍ତ ସୈଷା କେନ୍ଦୁଝରୀ ସଖେ ।

ସୈଷା କେନ୍ଦୁଝରୀ ନାମ ? ଯତ୍ର ବନେ ଭ୍ରମରମାରୀନାମୌଷଧିର୍ବିଦ୍ୟତେ ?

ଏହି ମହାନ ନଗରୀର ନାମ ହେଉଛି କେନ୍ଦୁଝରୀ । ଏଠାରେ ଶ୍ରୀରେବତୀକାନ୍ତ ଦେବଗଣ ପରିବେଷ୍ଟିତ ହୋଇ ସୁବିଶାଳ ମନ୍ଦିର ମଧ୍ୟରେ ନିତ୍ୟ ପୂଜା ପାଉ ଅଛନ୍ତି । ସମଗ୍ର ବିଶ୍ୱ ଦୁର୍ଲ୍ଲଭ "ଭ୍ରମରମାରୀ" ନାମକ ମହୌଷଧି ଏଠାରେ ମିଳେ । ବିଶଲ୍ୟକରଣୀ ମଧ୍ୟ ଗନ୍ଧମାର୍ଦନରୁ ମିଳିଥାଏ ।

କେନ୍ଦୁଝରୀତି ନଗରୀ ନଗରୀଭ୍ୟୋ ଗରୀୟସୀ
ସଂସାରସିନ୍ଧୁତ୍ତରଣିର୍ଜାତା ବୈତରଣୀ ଯତଃ ।
ତଦାଗଚ୍ଛ ସକଳଦୁରିତପର୍ବତ ଦମ୍ଭୋଳକଳ୍ପମନ୍ତଦ୍ୟଂ ସାନୁଜଂ
ହଳଧରମବଲୋକୟିଷ୍ୟାବଃ ।

ହେ ବନ୍ଧୁ ଏବେ ଗୁଲ ସକଳ ନଗ୍ର ମଧ୍ୟରେ ଗରୟସୀ ତଥା ସଂସାର ସିନ୍ଧୁ ତ୍ରାଣକର୍ତ୍ତ୍ରୀ ଶ୍ରୀବୈତରଣୀର ଜନ୍ମଭୂମି କେନ୍ଦୁଝରୀ ନଗରୀ ତଥା ତାହାର ଇଷ୍ଟଦେବତା ସକଳ ଦୁରିତ ହରଣ କର୍ତ୍ତା ଭଗବାନ ଶ୍ରୀ ହଳଧରଙ୍କୁ ଦର୍ଶନ କରିବା । ତାହାପରେ ଯକ୍ଷ ବନ୍ଧୁଦ୍ୱୟ ପରମାନନ୍ଦ ବିଭୋର ହୋଇ ଦୁର୍ଗମ ଗିରିଗହ୍ୱର ଭେଦ କରି ଜନ ପ୍ରଦେଶରେ ତରୁଙ୍ଗ ଭୃଙ୍ଗ ଶିର ସ୍ପର୍ଶୀ ଶ୍ରୀ ବଳଦେବ ଜୀଉଙ୍କର ମନ୍ଦିର ଦର୍ଶନ କଲେ ।

ନାନାଶିଳ୍ପବିଚିତ୍ରଯନ୍ତ୍ରଘଟନାନାଟ୍ୟୋପପ୍ରଭୃତ୍ୟଦ୍ଭୁତୈଃ
ପାଷାଣପ୍ରତିମାଃ ପ୍ରତିମାନ୍ତରୁଚିରଶ୍ଚିତ୍ରୈଃ ପରଂ ଭାସ୍ୱରଃ
ପ୍ରୋତ୍ତୁଙ୍ଗଃ ପ୍ରଳୟାବନାଶିତବେସ୍ମୀନାମ୍ନାଧିଷ୍ଠିତଃ
ପ୍ରାସାଦଃ ସୁଧୟୋଜ୍ଜ୍ୱଳଃ ସୁବିପୁଳୋ ଦୂରାଦପି ଦ୍ୟୋତତେ ।

ନାନା ଶିଳ୍ପ ବିଚିତ୍ର ଯନ୍ତ୍ରଘଟ ନାଟ୍ୟଚିତ୍ର ପ୍ରଭୃତିଦ୍ୱାରା ପ୍ରସ୍ଫୁଟିତ ପାଷାଣ ପ୍ରତିମା ଗୁଡିକ ଅତିମାତ୍ରାରେ ରୁଚିକର ଓ ସ୍ୱତେଜରେ ଭାସ୍ୱର ହୋଇ ଉଠୁଛନ୍ତି । ପ୍ରଳୟ ଅବିନାଶୀ ପ୍ରଭୁ ପୀତାମ୍ବର ଏଠାରେ ବପୁ ଧାରଣ କରି ବସି ଅଛନ୍ତି । ଏହି ପ୍ରୋତ୍ତୁଙ୍ଗ ଭୃଙ୍ଗ ମନ୍ଦିର ପ୍ରାସାଦର କୀର୍ତ୍ତି ଜ୍ୟୋତି ସୁବିପୁଳ ଅନ୍ଧକାର ସୂଚନା ଦୂରରୁ ଦେଖାଇ ଦିଏ ।

ଏହି ସୁବିଶାଳ ପ୍ରାସାଦ ମଧ୍ୟରେ ଭଗବାନ ଶ୍ରୀ ରେବତୀକାନ୍ତ ପ୍ରଭୃତି ମହିମା ବିସ୍ତାର କରି ଅନୁକମ୍ପା ପୂର୍ବକ ବିରାଜମାନ କରି ଅଛନ୍ତି । ଯାହାଙ୍କର କୃପା ସାନ୍ନିଧ୍ୟ ଲାଭ କରି ଦର୍ଶକଙ୍କର ଗତ ଜନ୍ମର କଳୁଷ ବିନାଶ ହୋଇଥାଏ । ସେ ସଂସାର ରୂପକ ବାରିନିଧିକୁ ଗୋଷ୍ପଦ ପ୍ରାୟ ଅତିକ୍ରମ କରି ଯାଇଥାଏ । ଶ୍ରୀ ରେବତୀକାନ୍ତ ଏଠାରେ ବଡ଼ଠାକୁର ନାମରେ ବିଖ୍ୟାତ ଅଟନ୍ତି । ଏହି ବଡ଼ଦେଉଳର ବର୍ଣ୍ଣନା ଅବର୍ଣ୍ଣନୀୟ ଅଟେ । ଏହାର ସୁଗଠଣ ଓ ସୁକଳକ୍ଷ ଆକାଶ ଚୁମ୍ବୀ ଅଟେ । ଏହି ସୁରମ୍ୟ ପ୍ରାସାଦ କକୁସ୍ଥ କୁଳ ସମ୍ଭୂତ ଭଞ୍ଜ ରାଜ ବଂଶର ମହୋଜ୍ଜ୍ୱଳ କୀର୍ତ୍ତି ସୌଧ ଅଟେ । ମନେହୁଏ ସତେ ଯେପରିକି ପ୍ରଖ୍ୟାତ ଭଞ୍ଜଭୂମି କେନ୍ଦୁଝରର ସୁବିଖ୍ୟାତ ଇତିହାସର ସାକ୍ଷୀବହ ହୋଇଛି ଏହି ବଡ଼ଦେଉଳ । ଶ୍ରୀ ଭଞ୍ଜଭୂମି ରାଜ୍ୟର ରାଜଧାନୀ ଅତି ପ୍ରାଚୀନ ଅଟେ । ରାଜବାଟୀର ପଶ୍ଚିମ ପାର୍ଶ୍ୱ ଅତ୍ୟୁଚ୍ଚ ପର୍ବତ "ଗନ୍ଧମାର୍ଦ୍ଦନ" ଦ୍ୱାରା ଆବୃତ୍ତ ହୋଇ ସୁଦୁର୍ଗମ ଅଟେ । ସେହି ପର୍ବତରେ ମୂର୍ଚ୍ଛିମାରା ପଥରଖଣ୍ଡ ଥିବାରୁ ପର୍ବତ ମଧ୍ୟଦେଇ ଗମନ କଲେ ପଥିକ ମୂର୍ଚ୍ଛିତ ହୋଇଥାଏ ।

ଶ୍ରୀ ଭଞ୍ଜଭୂମି ରାଜ୍ୟର ଏହି ପ୍ରାଚୀନ ରାଜଧାନୀର ଜ୍ୟୋତି ଅରୁଣୋଦୟ ସମୟରେ ଗୈରିକ ରୂପ ସମ୍ଭାର ଶୋଭିତ ହୋଇଥିଲା ପରି ପ୍ରତୀୟମାନ ହୁଏ । ମନେହୁଏ ସତେ ଯେପରିକି ଏହି ରାଜଧାନୀର ଭଞ୍ଜ ରାଜାମାନେ ଶତ୍ରୁ ଦଳର ଦର୍ପ ଭଗ୍ନ କରି ସେମାନଙ୍କର ରକ୍ତରେ ରାଜବାଟୀକୁ ଆରକ୍ତ କରି ଅଛନ୍ତି । ଏହି ନଭସ୍ପର୍ଶୀ ସୁବିଶାଳ ସୌଧର ଶୋଭାଶ୍ରୀ ବୃଦ୍ଧି ନିମନ୍ତେ ଅରୁଣୋଦୟ ସମୟରେ ଊଷା ତରୁଣୀ ତାର ଆରକ୍ତ କରପଲ୍ଲବର ପଲପନ ଓ ବାଳସୂର୍ଯ୍ୟର ମଧୁ ଚୁମ୍ବନରେ ଆହୁରି ଅଧିକ ଆରକ୍ତ ହୋଇ ଉଠିଛି ।

ଭଞ୍ଜ ରାଜା ମାନଙ୍କର ଏହି ସୁବିଶାଳ ରାଜସଭା ଶରଣାଗତ ରକ୍ଷଣ, ଅଭୟ ବର ପ୍ରଦାୟନ, ଦୁଃଖୀ ଦୁଃଖ ହରଣ ଓ ସ୍ତ୍ରୀ ମାନଙ୍କ ପ୍ରତି ଦୟାଶୀଳ ଭାବ ପ୍ରଦର୍ଶନ କରିବା ସ୍ୱଭାବ ଲକ୍ଷଣ ଅଟେ ।

ବିବିଧ ବିଚିତ୍ର ବାତାୟନ ବ୍ୟୂହ ବିଭୂଷିତ, ଦୁର୍ଗମ ବନ ଶୋଭା ବିରାଜିତ ନଦ-ନଦୀ ପରିପୂର୍ଣ୍ଣ ଏହି ବିଶାଳ ନଗରୀ ହେଉଛି ଶ୍ରୀ ଭଞ୍ଜଭୂମୀ କେନ୍ଦୁଝରର ରାଜଧାନୀ । ବର୍ତ୍ତମାନ ମୋର ଏହି ମାନସୀ ଭଞ୍ଜଭୂମୀ କେନ୍ଦୁଝର ପ୍ରଖ୍ୟାତ ଭଞ୍ଜ ବଂଶର ଇତିବୃତ୍ତି ବିଷୟରେ ସମ୍ୟକ ଆଲୋଚନା କରିବା ।

ଭାରତର ରାଜବଂଶ ମାନଙ୍କ ମଧ୍ୟରେ ଭଞ୍ଜ ରାଜବଂଶ ପ୍ରାଚୀନତମ ରାଜବଂଶ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହି ପ୍ରଖ୍ୟାତ ରାଜବଂଶର ଧାରାବାହିକ ଶାସନକାଳ ଖ୍ରୀଷ୍ଟପୂର୍ବର ବହୁ ଆଗରୁ ଆରମ୍ଭ ହୋଇ ୧୯୪୮ ମସିହା ଜାନୁୟାରୀ ମାସ ୧ ତାରିଖ ଯାଏଁ ଅବ୍ୟାହତ ଥିଲା ।

ବୌଦ୍ଧ ଶାସ୍ତ୍ର ପଠନରୁ ଜଣାଯାଏ ଯେ ଖ୍ରୀଷ୍ଟପୂର୍ବ ଅଢ଼େଇ ହଜାର ବର୍ଷରେ

## ପଞ୍ଚମ ପରିଚ୍ଛେଦ

# ଭଞ୍ଜ ରାଜବଂଶ

ଉତ୍କଳ ରାଜ୍ୟର ବଚ୍ଛସ ଓ ଭଞ୍ଜମାନେ ସର୍ବପ୍ରଥମେ ଗୌତମ ବୁଦ୍ଧଙ୍କ ପ୍ରବର୍ତ୍ତିତ ବୌଦ୍ଧ ଧର୍ମର ଉପଦେଶ ଲାଭ ପରେ ସେହି ଧର୍ମକୁ ଗ୍ରହଣ କରିଥିଲେ । "ମଜ୍ଝିମ୍ ନିକାୟ" ନାମକ ଧର୍ମ ଗ୍ରନ୍ଥରେ ଉତ୍କଳର ବଚ୍ଛସ ଓ ଭଞ୍ଜ ଏହି ଦୁଇ ଜାତିର ଲୋକେ ଯଥାକ୍ରମେ ବ୍ରାହ୍ମଣ ଓ କ୍ଷତ୍ରିୟ ଥାଇ "ନତ୍ଥିକବାଦୀ ଓ ଅକିରିଆବାଦୀ" ଥିଲେ ବୋଲି ବର୍ଣ୍ଣନା କରାଯାଇଅଛି । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀରେ ଭାରତ ବିଖ୍ୟାତ ବୌଦ୍ଧ ପଣ୍ଡିତ ବୁଦ୍ଧ ଘୋଷ ବଚ୍ଛସ ଓ ଭଞ୍ଜ ନାମରେ ଉତ୍କଳରେ ଦୁଇଗୋଟି ଜାତିର ଲୋକେ ବାସ କରୁଥିଲେ ବୋଲି ବର୍ଣ୍ଣନା କରି ଅଛନ୍ତି । ସେହିପରି "ଅଙ୍ଗୁତ୍ତର ନିକାୟ" ନାମକ ଧର୍ମ ଗ୍ରନ୍ଥରେ ବଚ୍ଛସମାନେ ବ୍ରାହ୍ମଣ ଜାତି ରୂପେ ଓ ଭଞ୍ଜମାନେ କ୍ଷତ୍ରିୟ ଜାତି ରୂପେ କଳିଙ୍ଗର ପୂର୍ବତନ ଅଧିବାସୀ ଥିଲେ ବୋଲି ବର୍ଣ୍ଣିତ ହୋଇଅଛି । କଥିତ ଅଛିଯେ ଏକଦା ମୃତ୍ୟୁଞ୍ଜୟ ମନ୍ତ୍ର ଜପ କରି ଭୋଜ ବଂଶର ଏକ ମୁମୂର୍ଷ ବାଳକକୁ ବଚ୍ଛସ ବଞ୍ଚାଇ ଦେଇଥିଲେ । ପରବର୍ତ୍ତୀ ସମୟରେ ନବଜୀବନ ପ୍ରାପ୍ତ ସେହି ଭୋଜ ରାଜକୁମାର ଭଞ୍ଜ ରାଜବଂଶ ସ୍ଥାପନ କରିଥିବା ମନେ ହୁଏ ।

ବୌଦ୍ଧ ମଣ୍ଡଳର ଭଞ୍ଜରାଜା ମାନଙ୍କ ଦ୍ୱାରା ପ୍ରଦତ୍ତ ତାମ୍ର ଫଳକରେ ଉଲ୍ଲେଖ ଅଛି ଯେ :—

"ଦୁର୍ବାର ବାରଣ ପ୍ରକଟପକ୍ଷ ପକ୍ଷାତ୍ ଲକ୍ଷ୍ମୀ ସିଂହରଣ କଳାସୁ ।
ପ୍ରସୂତ ଭଞ୍ଜ ନରାଧିପୋ ତସ୍ୟୋ ବନ୍ଧବୋ ବଭୂବଃ ।"

ଅର୍ଥାତ୍ ଦୁର୍ଦ୍ଦାନ୍ତ ଗଜ ଯୁଦ୍ଧରେ ପ୍ରକଟପକ୍ଷ ହୋଇଥିବା ସିଂହ ପକ୍ଷର ନାରୀ ମାନଙ୍କୁ ଭୋଜ ବିଦ୍ୟା ବଳରେ ହରଣ କରିବାରୁ "ବନ୍ଧୁଭଞ୍ଜ" ନାମକ ରାଜାଙ୍କର ଜନ୍ମ ହୋଇଥିଲା ।

କନିକାର ଭଞ୍ଜ ରାଜବଂଶ ସମ୍ବନ୍ଧରେ ନିମ୍ନମତେ ଲିଖିତ ଅଛି .—

"ଭଞ୍ଜ ବନ୍ଧୁଦ ଭବଃ ସୂର୍ଯ୍ୟ ବଂଶୀୟ ରାଜାନାଃ ବହୁକାଳ ଦାରଭ୍ୟ ଦେଶ ମିମଂ ଶାସତ ଆସତେ । ତେଷାଂ ବଂଶାନୁଚରିତ ଦର୍ଣ୍ଣନା ବାସରେ କର୍ଣ୍ଣିକା (କନିକା) ରାଜବଂଶୋଦ୍ଭବ ହରିଚନ୍ଦନେନ ସୁପ୍ରଣୀତ "ସଙ୍ଗୀତ ରସ ମୁକ୍ତ୍ୟା ବଲ୍ୟାଂ ଲିଖିତଂ ।"

ବର୍ଣ୍ଣିସୁ ମୁନ ପାଳିତା ଶ୍ରୁତି ମୟୂଖିକା ନର୍ଗତା ।
ନୃପତିମନୁ ଲମ୍ବିତାଃ ସ୍ମୃତି ମୁଖେନ ସୀତଭୂତା
ଧାରେଣ ବର ଦର୍ପିତାଃ ସକଳ ଧର୍ମ କର୍ମାନ୍ୱିତା
ନୃପା ସମ ଭଜନ କ୍ଷିତା ବନୁଦନ ସୁବୀର ବ୍ରତାଃ,
ଭଞ୍ଜୋପାଧ୍ୟୁବିକ୍ଷଯ୍ୟେଂରଶ୍ୟସ୍ମିନ୍ ଗ୍ରନ୍ଥେ ଉକ୍ତଂ—
ଭଞ୍ଜନାତ୍ କ୍ଷୁଦ୍ର ସୈନ୍ୟାନାଂ କମ୍ପା ତମସ୍ୟ ଭଞ୍ଜନାତ ।।
ତେ ଭଞ୍ଜାଇତି ବିଖ୍ୟାତାଃ କ୍ଷତ୍ରିୟ ସୂର୍ଯ୍ୟବଂଶଯାଃ"

ଅର୍ଥାତ ଭଞ୍ଜନ କରାଯାଇଥିବା ମୟୂର ଡିମ୍ବରୁ ଜାତ ହୋଇଥିବା ବା ଶତ୍ରୁ ସୈନ୍ୟ ମାନଙ୍କର ଗର୍ବ ଗଂଜନ ବା ଭଞ୍ଜନ କରି ଭଂଜ ଉପାଧିର ଉତ୍ପତ୍ତି ହୋଇଥିବା କଥା ଏଥିରୁ ଜଣାଯାଏ । "ଭଞ୍ଜନାତ୍ ଛତ୍ରୁ ସୈନ୍ୟାନାଂ"ର ଅର୍ଥ ହେଉଛିଯେ ଭଞ୍ଜ ରଜାମାନେ ସେମାନଙ୍କର ଶତ୍ରୁମାନଙ୍କର ଗର୍ବଗଂଜନ କରିବାରେ ସିଦ୍ଧହସ୍ତ ଥିଲେ ।

"ଡିମ୍ବସ୍ୟ ଭଂଜନାତ୍ ବୋଲି ଯାହା ଲେଖା ଅଛି ତାହାର ବ୍ୟାଖ୍ୟା "ଭଂଜ ବଂଶାନୁ ଚରିତ" ପୁସ୍ତକରେ ନିମ୍ନମତେ ବର୍ଣ୍ଣିତ ହୋଇଅଛି ।

ତ୍ରେତୟା ଯୁଗ ଶେଷେ ବଶିଷ୍ଠ ମହାଋଷି
ତପ କରୁଥିଲେ ପୁଷ୍କର ତୀର୍ଥେ ବସି ।

× + + +

ତକ୍ଷଣେ ସେହି ତଟେ ଦୁଇଗୋଟି ଡିମ୍ବ
ଜାତ କରି ମୟୁର ଚଳିଲା ନକରି ବିଳମ୍ବ

+ + + +

ଏମନ୍ତ ବିଚାରି ଦୁଇଗୋଟି ଡିମ୍ବ ଘେନିଗଲେ ଆପଣା ଆଶ୍ରମେନେଇ ସେ ରଖିଲେ ।
ଚଣ୍ଡ ପ୍ରଚଣ୍ଡ ଭାନୁ କିରଣେତ ଦୁଇଖଣ୍ଡ ହେଲା ଏକ ଅଣ୍ଡା ଦୁଇ ଭାଗରେ
ଜନ୍ମିଲା ତହୁଁ ଏକ ବାଳକ ସୁନ୍ଦର ରୂପ ସମ ନାହିଁ ତାର ପଞ୍ଚସର
କିରଣ ଜାତ ସେ ହେବାର ଘେନି କରି 'ରଣା ବଂଶ ନାମକୁ ଉଚ୍ଚରି
ମଦନ ବୋଲି ତାକୁ ନିଜ ନାମ ଦେଲେ, ମନେ, ମହର୍ଷି ହରଷ ହୋଇଲେ ।
ଆଉ ଡିମ ଗୋଟି ନଫିଟିବାରୁ ଫାଟି ଆଉ ହାନ ଋଷି ଯଷ୍ଟିରେ ଦେଲେ ପିଟି ।
ଜାତ ହେଲା କୁମର କି ଅବା ଅମର ଦେଖି ଋଷି ନାମ ବାନ୍ଧିଲେ ତାଙ୍କର
"ଭଂଜନ" କରିବାରୁ ଜନମିଲା ଘେନି 'ଭଂଜ' ବଂଶ ନାମ କଲେ ମହାମୁନି ।
ମୋହକୁ ହେବାରୁ ମୋହକ ବୋଲି ତାରୁ ନିଜ ନାମ ଗୋଟି ଦେଲେ ଋଷିବର ।

× ×

ସୂର୍ଯ୍ୟ କିରଣରେ ଜାତ ହେବା ଘେନି 'ସୂର୍ଯ୍ୟ ବଂଶୀ' ଭୂମେ ବୋଲାଇବ ପୁଣି
ମୟୂର ଅଣ୍ଡାରୁ ତାହାର ହେବାରୁ ଖ୍ୟାତ ହେବ ମୟୂର ବଂଶ ବୋଲିବାରୁ
ଉଦୟପୁର ଦେଶ ନିଜ ବାହୁବଳେ କରି ମଦନରଣା ହେଲେ ତହିଁ ଦଣ୍ଡଧାରୀ
ସାନଭାଇ ମୋହକ ଭଂଜ ତହୁଁ ଚଳି ସୁବର୍ଣ୍ଣରେଖା ନଦୀ ତଟେ ଯାଇଁ ମିଳି
ଭଂଜଭୂମି ନାମରେ ହୋଇଲା ସେ ଖ୍ୟାତ, ହରିହରପୁର ନାମ ତା ବିଦିତ ।"

ଏହି ରଜ ପ୍ରଶସ୍ତିରୁ ମନେହୁଏଯେ ବଶିଷ୍ଠ ଋଷିଙ୍କ ଆଶ୍ରମରେ ରଖା ଯାଇଥିବା ପ୍ରଥମ ଡିମ୍ବଟି ସୂର୍ଯ୍ୟ କିରଣରେ ଫାଟି ଯାଇ ତହିଁରୁ ଯେଉଁ ପୁତ୍ର ଜାତ ହେଲେ ତାହାଙ୍କର ନାମ ମଦନ ରଣା ରଖାଗଲା ।

ସେହି ମଦନ ରଣା ରାଜସ୍ଥାନର ଉଦୟପୁରରେ ରଣା ବଂଶ ସ୍ଥାପନ କରିଥିଲେ । "ସୂର୍ଯ୍ୟ କିରଣ" ଏହି ପାଞ୍ଚ ଅକ୍ଷରର ଶେଷ ଦୁଇ ଅକ୍ଷର 'ରଣ' ହୋଇଥିବାରୁ

ମଦନ ରାଜା ହେବା ପରେ ନିଜ ବଂଶକୁ ରାଣା ବଂଶ ରୂପେ ପ୍ରତିଷ୍ଠା କରିଥିଲେ ।

ରାଣା ବଂଶ ଓ ଭଂଜ ବଂଶ ଗୋଟିଏ ବଂଶର ଦୁଇଗୋଷ୍ଠୀ ହୋଇଥିବାରୁ କେନ୍ଦୁଝରର ସୀତାବିଂଜ ଶିଳାଲେଖରେ "ରାଣକ ବଶା ଭଂଜ" ବୋଲି ଲେଖା ହୋଇଅଛି । ଏପରିକି ଓଡ଼ିଶାରେ ଇଂରେଜ ଶାସନ କାଳରେ ଭଂଜ ରାଜାମାନେ ନିଜର ବଂଶ ଉଦୟପୁର ରାଜ୍ୟର ରାଣା ବଂଶରୁ ଉତ୍ପତ୍ତି ହୋଇଥିବା ଦୃଷ୍ଟାନ୍ତ ସେମାନଙ୍କ ଦତ୍ତ ବଂଶାବଳୀ କୃତି ନାମାରେ ଦେଖିବାକୁ ମିଳେ ତାହା ପରେ ଆଲୋଚିତ ହେବ ।

ଉଷା କାବ୍ୟରେ ଭଂଜ ବଂଶର ବର୍ଣ୍ଣନା

ଶାଲ୍ମଳୀ ଶୈଳେ ହେମପୁର ନାମେ ଥିଲା ବସତି
ଚନ୍ଦ୍ର ଚନ୍ଦ୍ର ରାଜପଣ କରୁଥିଲେ ରାଜା ବାହାନ ପତି
ଜୟନ୍ତ ପ୍ରଥମ କୁମର ତାଙ୍କର ଜୟନ୍ତ ନାମ
ବଳେ ଶକ୍ରଧର ଜିଣିଥିଲା ସେହି ଲାବଣ୍ୟ ଧାମ ।

— — —

ସେହି ଜଳ ପ୍ରାନ୍ତେ ବରାତ ଜୟନ୍ତ ପର୍ଣ୍ଣ କୁଟୀର
ମୃଗୟା ବେଶରେ ଥିଲା ନିମଗନ ନିରତେ ବୀର
ମହେନ୍ଦ୍ର ଅଚଳେ ଭାର୍ଗବ ଋଷିଙ୍କୁ ଭେଟିବା ଆଶେ
ଯାଉଥିଲେ ବନେ ଶିଖିଧ୍ୱଜ ଶିଖିପୃଷ୍ଠେ ଆକାଶେ ।
ବନଦେବୀ ଅନୁରୋଧେ ଶିଖିଧ୍ୱଜ ଶୈଳେ ଓହ୍ଲାଇ
ଗୁଣ୍ଡ ଦେଲେ ଶିଖୀ ବଳାଙ୍ଗୀ-ନିର୍ଝରେ ଚଢ଼ିବା ପାଇଁ ।

— — —

ଭାବେ ଲୁବ୍ଧକ ଲୋଭୀ ହେଲେ ସେହି କଳାପ ଦେଖି
ମନେ ମନାସିଲେ ବଧିବେ ଶିଖିଙ୍କୁ ଅପୂର୍ବ କେକୀ
ଗୁଣେ ଶରଗଂଜ ଆକର୍ଣ୍ଣ ଶିଞ୍ଜିନୀ ଟାଣନ୍ତେ ଧର
ଶର ଆଗେ ଉଭା ହୋଇ ନିବାରିଲା ନୃପ କୁମାର
ଶରବନ-ଭବ ଦେବ ଜାଣି ଏହା ଜୟନ୍ତ ପ୍ରତି
ବାହନ ବତ୍ସଳ ଅନ୍ତର୍ଗତେ ହେଲେ ପ୍ରସନ୍ନ ଅତି ।

— — —

ବାହନ ଶିଖରୁ ପଡ଼ିଲା ସେକାଳେ ବର୍ହି ରୁଚିର
ମହାଦରେ ତୋଳି ନେଲା ସେ କଳାପ ଜୟନ୍ତ ବୀର ।
ଭେଟିଲା ଭୂପତି ଗ୍ରାମୁରେ ତାହା ନେଇ ନୃପ ସନ୍ତତି
ମୁକୁଟର ଭୂଷା କଲେ ସେ ବର୍ହିକୁ ବାହାନ ପତି ।

## ପୃ ୧୧୨ ଓ ୧୧୩ର ସଂଯୋଗ ପତ୍ର

ଯେବେଲେ "ମୟୂରଧ୍ୱଜ" ପ୍ରଭୁ ସେବନ୍ତୁ ରଞ୍ଜନ
ସେହୁଦିନୁ ରାଜ୍ୟ ମୟୂର ନିଧନ ହେଲା ବାରଣ ।"

ପୁସ୍ତକର ପାଦ ଟୀକାରେ କବି ଲେଖିଛନ୍ତି "ମୟୂରଧ୍ୱଜ" ବଂଶୀୟ ରାଜାମାନେ ମୟୂରଭଞ୍ଜର ପୂର୍ବତନ ରାଜାଥିଲେ । ସେହି ରାଜବଂଶର ଗର୍ବ ଭଞ୍ଜନ କରି ରାଜପୁତନା କାଶୀ ଜୟସିଂହଙ୍କର ପୁତ୍ର ଆଦିଭଞ୍ଜ ଓ ଜ୍ୟୋତିଭଞ୍ଜ ଯଥାକ୍ରମେ ମୟୂରଭଞ୍ଜ ଓ କେନ୍ଦୁଝର ରାଜ୍ୟ ଗଠନ କରିଥିଲେ ମାତ୍ର ଓଡ଼ିଶାରେ ଭଞ୍ଜ ରାଜବଂଶର ପ୍ରତିଷ୍ଠାତା ଗଣ୍ଡଦଣ୍ଡାପତି ବୀରଭଦ୍ର ଆଦିଭଞ୍ଜ ଓ ଜୟସିଂହଙ୍କର ପୁତ୍ର ଆଦିଭଞ୍ଜ ଯେ ଏକ ନଥିଲେ ଏକଥା କେବଳ ବୁଝାଯାଏ ।

ଭାରତରେ ରାଜନ୍ୟ ମଣ୍ଡଳୀର ବଂଶାନୁଚରିତ ବିଷୟରେ ଥିବା ପୌରାଣିକ ବର୍ଣ୍ଣନାରୁ ଜଣାଯାଏ ଯେ ବିଷ୍ଣୁଙ୍କର ଗରୁଡ଼ଭୂଜର ସାଦୃଶ୍ୟ ନେଇ ଐରାବତ ହସ୍ତୀର ଶୁଣ୍ଡଦଣ୍ଡର ବର୍ଣ୍ଣନା କରାଯାଇଅଛି ।

ଏହି କାରଣରୁ ଆର୍ଯ୍ୟାବର୍ତ୍ତର ରାଜାମାନେ, ବଶିଷ୍ଠ-କୃପା ଶିଷ୍ୟ, ପରାଶର ଓ ଭୃଗୁ ଏହି ଚାରି ଋଷିଙ୍କ ବଂଶରୁ ପ୍ରତିହାର, ପରମାର୍ଦ୍ଦକ, ଷଂଠୋର ଓ ଚୌହାନ ନାମକ ଚାରି ଗୋଷ୍ଠି ରାଜବଂଶ ଜାତ ହୋଇ ଆର୍ଯ୍ୟାବର୍ତ୍ତ ଶାସନ କଲେ ।

"ଜନ୍ମିଲେ ସର୍ବେ ଏହି ଚାରିବୀର କୂଳେ, ଭାରତର ନାନା ରାଜ୍ୟେ ରାଜଗଣ ଗଲେ, ଏ ବୀରଙ୍କ ବଂଶଧରେ ରକ୍ଷିବେ ନିରନ୍ତର ନଦ୍ୟ-ବାତ୍ର ଗ୍ରାସୁ ଭାରତ ଜନନୀ।"

ମହାଯାତ୍ରା କାବ୍ୟରୁ ଏହି ପଂକ୍ତିର 'ବାଖ୍ୟାନ୍ତ' ଭଞ୍ଜବଂଶର ଉତ୍ପତ୍ତି ବଶିଷ୍ଠ ଋଷିଙ୍କ ଆଶ୍ରମରେ ସଂରକ୍ଷିତ ମୟୂରଅଣ୍ଡାରୁ ହୋଇଥିବା ଜଣାଯାଏ । ମହାଭାରତରେ ବର୍ଣ୍ଣିତ ଭରଦ୍ଵାଜ ଋଷିଙ୍କ ଆଶ୍ରମରେ ସଂରକ୍ଷିତ ଦ୍ରୋଣ ପକ୍ଷୀର ଡିମ୍ବରୁ କୁରୁକୁଳ ଗୁରୁ ଦ୍ରୋଣଙ୍କର ଜନ୍ମ ଉପାଖ୍ୟାନ ସହିତ ଭଞ୍ଜ ବଂଶର ଉତ୍ପତ୍ତି ଉପାଖ୍ୟାନ ପ୍ରାୟ ସମାନ ଅଟେ ।

ସେହିପରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ସ୍ଵରଚିତ କାବ୍ୟ କବିତାରେ ନିଜ ବଂଶର ଉତ୍ପତ୍ତି ସମ୍ବନ୍ଧରେ ବର୍ଣ୍ଣିତ ହୋଇଛି ।—

କ) "ଯେ ବଂଶେ ଇଷ୍ଟ ଦୁର୍ଗ ଦେବୀ
ବରହି କୋଷରୁ ସମ୍ଭବ ।"

ଖ) ବରହୀ ବଂଶେ ଉଦ୍ଭବ ନୃପ ଧନଞ୍ଜୟ
ବଶିଷ୍ଠେ ସମ୍ଭବ ଅଧିକ ଗୁଣାଳୟ ।

ଏହି ସବୁ ବର୍ଣ୍ଣନାରୁ ଜଣାଯାଉଛି ଯେ ଭଞ୍ଜ ରାଜବଂଶ "ମୟୂରଡିମ୍ବ"ରୁ ଉତ୍ପତ୍ତି ହୋଇଅଛି । କେଉଁ ଓଡ଼ିଶାରେ ଭଞ୍ଜ ରାଜବଂଶ ଦ୍ଵାରା ପ୍ରଦତ୍ତ ବହୁତ ତାମ୍ର ଶାସନରେ ଭଞ୍ଜ ମାନେ ସୂର୍ଯ୍ୟ ବଂଶ ଓ କାଶ୍ୟପ ବା କଶ୍ୟପ ଗୋତ୍ରୀ ବୋଲି ବର୍ଣ୍ଣିତ ହୋଇ ଅଛନ୍ତି ।

## ଭଞ୍ଜ ଓ ମୌର୍ଯ୍ୟ ବଂଶ ମଧ୍ୟରେ ସମ୍ପର୍କ

ତବକାତ୍ୟ ଭାଷାରେ ରଚିତ "ପାଗ-ସାମ୍-ଜନ-ଜଙ୍ଗ" ପୁସ୍ତକରେ ବର୍ଣ୍ଣିତ ଅଛି ଯେ, ମୌର୍ଯ୍ୟ ବଂଶର ପ୍ରତିଷ୍ଠାତା ରାଜା ମୌର୍ଯ୍ୟ ବଶିଷ୍ଠ ଋଷିଙ୍କ କୋଟିପୁାଶ୍ରମରେ ସଂରକ୍ଷିତ ଗୋଟିଏ ମୟୂର ଡିମ୍ବ ସୂର୍ଯ୍ୟ କିରଣରେ ଫାଟିଯାଇ ତହିଁରୁ ଏକ ପୁତ୍ର ଜାତ ହୋଇ ଭାରତରେ ମୌର୍ଯ୍ୟ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କର କାଶ୍ୟପ ଗୋତ୍ର ଥିଲା । ମହାବଂଶ ପୁସ୍ତକର ରଚନାରୁ ଜଣାଯାଏ ଯେ ମୌର୍ଯ୍ୟ ସମ୍ରାଟ ଚଂଦ୍ରଗୁପ୍ତ ମୌର୍ଯ୍ୟଙ୍କର ବଂଶୋତ୍ପତ୍ତି ସହିତ ଭଞ୍ଜ ବଂଶାବଳୀ ପ୍ରାୟତଃ ସମାନ ହୋଇଥିବାରୁ ଉଭୟ ବଂଶ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିବା ମନେ ହୁଏ ।

ଐତିହାସିକ ବେଗଲରଙ୍କ ମତରେ ଓଡ଼ିଶାର ଭଞ୍ଜ ରାଜବଂଶ ଭାରତର ସୁପ୍ରସିଦ୍ଧ ମୌର୍ଯ୍ୟ ରାଜ ବଂଶରୁ ଉତ୍ପତ୍ତି ହୋଇ ଅଛନ୍ତି ଯେଉଁ ବଂଶରେ ମହାମନସ୍ଵୀ

ଧର୍ମାଶୋକ ଅଶୋକ ଜନ୍ମଲାଭ କରିଥିଲେ । ବେଗଲରଙ୍କ ମତରେ ମୌର୍ଯ୍ୟ ଓ ମୟୂର ଶବ୍ଦ ଦ୍ୱୟ ମଧ୍ୟରେ ଶାବ୍ଦିକ ସାମଞ୍ଜସ୍ୟ ପରିଲକ୍ଷିତ ହେଉଥିବାରୁ ଏବଂ ଉଭୟ ସ୍ୱକବଂଶ ମୟୂର ଅଙ୍କିତ ବଂଶ ପ୍ରଭବ ହୋଇଥିବାରୁ ସେ ଏହିପରି ମୀମାଂସାରେ ଉପନୀତ ହୋଇଥିବା ମନେହୁଏ । ମାତ୍ର ମୌର୍ଯ୍ୟ ବଂଶର ଉତ୍ପତ୍ତି ବହୁତ ଆଗରୁ ଉତ୍କଳର ଭଞ୍ଜମାନେ ଶୁଦ୍ଧ କ୍ଷତ୍ରୀୟ ଜାତି ରୂପେ ପ୍ରତିଷ୍ଠିତ ହୋଇଥିବା ଦୃଷ୍ଟିକୋଣରୁ ମୌର୍ଯ୍ୟ ବଂଶରୁ ଭଞ୍ଜ ବଂଶର ଉତ୍ପତ୍ତି ହୋଇଥିବା ଧାରଣା ଭ୍ରମପୂର୍ଣ୍ଣ ମନେହୁଏ ।

ଓଡ଼ିଶାର ପ୍ରସିଦ୍ଧ ଐତିହାସିକ ବିନାୟକ ମିଶ୍ର ଓ ପରମାନନ୍ଦ ଆଚାର୍ଯ୍ୟଙ୍କ ମତରେ କେଉଁଝର ମଣ୍ଡଳର ମୌର୍ଯ୍ୟ ଓ ଖିଜିଙ୍ଗ ମଣ୍ଡଳର ଭଞ୍ଜରାଜାମାନେ ମୟୂର ବା ମୌର୍ଯ୍ୟ ବଂଶରୁ ଉତ୍ପତ୍ତି ହୋଇଥିବା କଥା ବର୍ଣ୍ଣନା କରି ଅଛନ୍ତି । ଏମାନଙ୍କ ମତକୁ ସମର୍ଥନ କରି ଐତିହାସିକ ହରପ୍ରସାଦ ଶାସ୍ତ୍ରୀ କହନ୍ତିଯେ ଭଞ୍ଜ ରାଜ ବଂଶ, ମୌର୍ଯ୍ୟ ଏବଂ ମୟୂର ଶବ୍ଦ ମୟୂରୁ ଉତ୍ପତ୍ତି ହୋଇଅଛି । ତେଣୁ କେନ୍ଦୁଝର ମଣ୍ଡଳର ବରାହ ନାଜକୁ ମୌର୍ଯ୍ୟ ବଂଶଧର ବୋଲି ନିଶ୍ଚୟ ହେବାକୁ ଯାଇ ସେମାନେ ବାମକୁ ମୁଖ କରିଥିବା ଏକ ମୟୂର ପକ୍ଷୀକୁ ରାଜକୀୟ ସଙ୍କେତ ରୂପେ ବ୍ୟବହାର କରିଥାନ୍ତି । ସେମାନେ କହନ୍ତିଯେ ସେମାନଙ୍କର ପୂର୍ବ ପୁରୁଷ ଚିତ୍ରକୂଟ ଠାରୁ ସେଠାକୁ ଆସିଥିଲେ । ଐତିହାସିକମାନେ କହନ୍ତିଯେ ସେମାନଙ୍କର ପୂର୍ବପୁରୁଷମାନେ ଚିତ୍ରକୂଟ ଠାରୁ ସେଠାକୁ ଆସିଥିଲେ । ଐତିହାସିକ ଘଟଣା ବଳୀରୁ ଜଣାଯାଏଯେ ମୌର୍ଯ୍ୟ ବଂଶର ଗୋଟିଏ ଶାଖା ରାଜପୁତନାର ଚିତ୍ରକୂଟ ଠାରୁ ବଣାଇ ମଣ୍ଡଳକୁ ପଳାଇ ଆସି ସେଠାରେ ଶାସନ କ୍ଷମତା ହସ୍ତଗତ କରିଥିଲେ ।

ବଣାଇ ମଣ୍ଡଳରୁ ପ୍ରାପ୍ତ ତାମ୍ର ଫଳକରୁ ଜଣାଯାଏଯେ ଉଦୟ ବରାହ ନାମକ ଜଣେ ବୌଦ୍ଧ ଧର୍ମାବଲମ୍ବୀ ମୌର୍ଯ୍ୟ ବଂଶଧର ରାଜକୁମାର ଚିତ୍ରକୂଟ ସ୍ଥିତ ବଶିଷ୍ଠ ଋଷିଙ୍କ କୋଟିମ୍ବାଶ୍ରମରୁ ଚାଲି ଆସିଥିଲେ । ବଣାଇ ମଣ୍ଡଳ ତାଙ୍କର ରାଜଧାନୀ ଥିଲା ଓ ତାହାଙ୍କ ପିତାଙ୍କର ନାମ ତେଜ ବରାହ ଥିଲା ।

ଏକଥା ସତ୍ୟଯେ ମୌର୍ଯ୍ୟ ବଂଶର ବରାହ ମାନେ ଯେଉଁ ସମୟରେ ବଣେଇ ମଣ୍ଡଳରେ ରାଜ୍ୟ ଶାସନ କରୁଥିଲେ ସେହି ସମୟରେ ଭଞ୍ଜ ରାଜମାନେ ତାହାର ପଡ଼ୋଶୀ ରାଜ୍ୟ ଖିଜିଙ୍ଗ ମଣ୍ଡଳରେ ରାଜତ୍ୱ କରୁଥିଲେ । ତେଣୁ ଉଭୟ ରାଜବଂଶ ମଧ୍ୟରେ ସମ୍ପର୍କ ସ୍ଥାପିତ ହୋଇଥିବା ସ୍ୱାଭାବିକ ଅଟେ ।

ବୌଦ୍ଧ ଧର୍ମ ଗ୍ରନ୍ଥ ବିନୟ ପିଟକ ପଠନରୁ ଜଣାଯାଏ ଖ୍ରୀ: ପୂ: ୬୦୦ରେ ଖିଜିଙ୍ଗ ମଣ୍ଡଳ ଉତ୍କଳ ରାଜ୍ୟର ଅଙ୍ଗ ବିଶେଷ ଥାଇ ଭଞ୍ଜ ବଂଶ ଦ୍ୱାରା ଶାସିତ ହେଉଥିଲା ସେତେବେଳେ ଉତ୍କଳବାସୀ ଆଟବିକ ବାସୀ ବା ବିନ୍ଧ୍ୟବାସୀ ବୋଲି ପରିଚିତ ଥିଲେ ।

ଖିଜିଙ୍ଗ ମଣ୍ଡଳରୁ ପ୍ରଦତ୍ତ ଖିଚିଙ୍ଗକୋଟ ତାମ୍ର ଫଳକରୁ ପ୍ରମାଣ ମିଳେ ଯେ ସେଠାରେ ରାଜା ରଣ ଭଞ୍ଜଙ୍କ ଶାସନ କାଳରେ ବଣେଇ ମଣ୍ଡଳର ରାଜକୁମାର ଧରଣୀ ବରାହ ତାହାଙ୍କ ଧର୍ମପତ୍ନୀ ପୃଥ୍ୱୀ ଦେବୀଙ୍କ ପରାମର୍ଶରେ ରାଜଧାନୀ ଖିଚିଙ୍ଗକୋଟ ଠାରେ ଅବଲୋକିତେଶ୍ୱର ମନ୍ଦିର ନିର୍ମାଣ କରି ବିଗ୍ରହ ପ୍ରତିଷ୍ଠା କରିଥିଲେ ।

ଜୈନ ଧର୍ମଗ୍ରନ୍ଥ ଭଗବତୀ ସୂତ୍ରରେ ଲେଖାଅଛି ଯେ ଜମ୍ବୁଦ୍ୱୀପ ଭାରତବର୍ଷରେ ତାମ୍ରଲିପ୍ତ ନାମକ ରାଜଧାନୀରେ ମୌର୍ଯ୍ୟ ବଂଶୋଦ୍ଭବ ତାମିଲ ମୌର୍ଯ୍ୟ ନାମକ ଜଣେ ରାଜା ଥିଲେ

"ହଣ୍ଟରସ୍ ଓଡ଼ିଶା" ପୁସ୍ତକରେ ଲେଖାଅଛି ଯେ, ପ୍ରାଗ ଐତିହାସିକ ଭାରତରେ ତାମ୍ରଲୁକ ବା ତାମ୍ରଲିପ୍ତ ବନ୍ଦର ଏକଦା କଳିଙ୍ଗର ସାମୁଦ୍ରିକ ବନ୍ଦର ଓ ବହିର୍ବାଣିଜ୍ୟ କେନ୍ଦ୍ର ଥିଲା । ପରବର୍ତ୍ତୀ ସମୟରେ ଖିଜିଙ୍ଗ ମଣ୍ଡଳର ଅନେକ ଭଞ୍ଜରାଜ ତାମ୍ରଲୁକ୍ ମୌର୍ଯ୍ୟ ନାମରେ ନିଜକୁ ପରିଚିତ କରାଇ ମୟୂରଧ୍ୱଜ ବା ଶିଖିଧ୍ୱଜ- ଉପାଧିରେ ଭୂଷିତ କରାଇଥିଲେ । ଏହାଙ୍କର ପରବର୍ତ୍ତୀ ବଂଶଧରମାନେ କ୍ରମାନ୍ୱୟରେ ବତିଶ ପୁରୁଷ ଯାଏ ସେଠାରେ ନିରବଚ୍ଛିନ୍ନ ଭାବରେ ରାଜତ୍ୱ କରିଥିଲେ । ଏଥିରୁ ଅନୁମିତ ହୁଏ ଯେ ଏକଦା ବଣାଇ ମଣ୍ଡଳ ଠାରୁ ଖିଜିଙ୍ଗ ମଣ୍ଡଳ ସମେତ ତାମ୍ରଲିପ୍ତ ଯାଏ ସମଗ୍ର ପୂର୍ବ ଉପକୂଳରେ ମୌର୍ଯ୍ୟ ଓ ଭଞ୍ଜମାନେ ଶାସନ କ୍ଷମତା ବିସ୍ତାର କରିଥିଲେ । ମୌର୍ଯ୍ୟମାନେ ନିଜକୁ କାଶ୍ୟପ ଗୋତ୍ର ବୋଲି ପରିଚୟ ଦେଉଥିବା ସମୟରେ ଖିଜିଙ୍ଗ ମଣ୍ଡଳର ଭଞ୍ଜ ରାଜାମାନେ ମଧ୍ୟ ନିଜକୁ କଚ୍ଛପ ଗୋଷ୍ଠୀ ବୋଲି ପରିଚୟ ଦେଇଥାନ୍ତି । ଉଭୟ ବଂଶ ଯେ "ମୟୂର ଅଣ୍ଡଜ ପ୍ରଭବ" ଏଥିରେ ଦ୍ୱିମତ ନାହିଁ । ଏହି କାରଣରୁ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ ଦ୍ୱାରା ରଚିତ ଧଉଳି ଶିଳାଲେଖରେ ମୟୂର ବଧକୁ ନିଷେଧ କରାଯାଇ ଅଛି ଓ ରାଜାଙ୍କର ଖାଦ୍ୟ ନିମନ୍ତେ ମୟୂର ମାଂସ ଭକ୍ଷଣ ବନ୍ଦ କରିଦିବା ପାଇଁ ପ୍ରତିଶ୍ରୁତି ଦିଆଯାଇଛି । ମୟୂର ବାହନ କୁମାରଙ୍କ ସହିତ ନାଗ ବଂଶର ବିବାଦର ସମାଧାନ ନିମନ୍ତେ ଏହିପରି ପ୍ରତିଶ୍ରୁତି ଦିଆଯାଇଥିବା ମନେହୁଏ ତେଣୁ ବଣେଇ ମଣ୍ଡଳର ବରାହ ଓ ଖିଜିଙ୍ଗ ମଣ୍ଡଳର ଭଞ୍ଜ ରାଜାମାନେ ମୟୂରକୁ ରାଜକୀୟ ସମ୍ମାନ ପ୍ରଦର୍ଶନ କରି ରାଜ୍ୟ ଭିତରେ ମୟୂର ବଧକୁ ନିଷେଧ କରିଅଛନ୍ତି ।

ଓଡ଼ିଶାର ଭଞ୍ଜ ରାଜାମାନେ ନିଜକୁ ମୌର୍ଯ୍ୟ ବଂଶଧର ବୋଲି କହିବାର ନିମ୍ନ ମତେ ଧାରଣା କରାଯାଇପାରେ ।

ମୌର୍ଯ୍ୟ ସମ୍ରାଟ ଅଶୋକ କଳିଙ୍ଗ ବିଜୟ କରିଥିଲେହେଁ ସେ ପଶ୍ଚିମାଞ୍ଚଳରେ ଅବସ୍ଥିତ ଆଟବିକ ରାଜ୍ୟ ସମୂହ ଜୟ କରି ପାରିନଥିଲେ । ସେତେବେଳେ କଳିଙ୍ଗର ଏହି ମାଳଭୂମିରେ ଅନେକ ଗୁଡ଼ିଏ ସାମନ୍ତ ରାଜା ରାଜ୍ୟ ଶାସନ କରୁ- ଥିଲେ । ସେମାନଙ୍କ ମଧ୍ୟରେ ଭଞ୍ଜରାଜବଂଶ ଅନ୍ୟତମ ଅଟେ । ଧଉଳି ପାହାଡ଼ରେ ରଚିତ ସମ୍ରାଟ ଅଶୋକଙ୍କର ପ୍ରଥମ ସ୍ୱତନ୍ତ୍ର ଅନୁଶାସନରେ ଲେଖା ଅଛି .—

ଅପରାଜିତ ସୀମାନ୍ତବାସୀ ମାନେ ପଚାରି ପାରନ୍ତି "ରାଜା ଆମ ପାଇଁ କଣ କରୁଛନ୍ତି ?" ତାହାର ଉତ୍ତରରେ ମୁଁ କହେ :—

"ରାଜାଙ୍କର ଇଚ୍ଛା ସେମାନେ ତାଙ୍କୁ ଭୟ ନକରନ୍ତୁ । ସେମାନେ ମୋ ଠାରୁ ସୁଖ ପାଇବେ, ଦୁଃଖ ନୁହେଁ, ରାଜା ସେମାନଙ୍କ ପ୍ରତି ସହନଶୀଳ ହେବେ ଓ ମୋ ଖ୍ୟାତିରେ ସେମାନେ ଧର୍ମ ଆଚରଣ କରି ଇହଲୋକ ଓ ପରଲୋକରେ ସୁଖ ଲାଭ କରିବେ । ଏ ଦୁଇଟି ସତ୍ୟ ସେମାନେ ଦୃଢ ଭାବରେ ଗ୍ରହଣ କରିବା ଉଚିତ ।

ସେହି ଅନୁସାରେ ମୁଁ ତୁମ୍ଭମାନଙ୍କୁ ନିର୍ଦ୍ଦେଶ ଦେଉଅଛିଯେ ମୋର ଅଟଳ ପ୍ରତିଜ୍ଞା ଓ ଇଚ୍ଛାକୁ ସେମାନଙ୍କୁ ଜଣାଇ ଦେଇ ମୋର ନିର୍ଦ୍ଦେଶ ପାଳନ କରି ମୋ ପ୍ରତି ଋଣ-ମୁକ୍ତ ହୁଅ ।

ତଦନୁସାରେ କାର୍ଯ୍ୟ କରି ଉକ୍ତ ସୀମାନ୍ତବାସୀଙ୍କ ମନରେ ମୋ ପ୍ରତି ବିଶ୍ବାସ ଜନ୍ମାଅ ଓ ସେମାନଙ୍କ ମନରେ ଏ ଧାରଣା ବଦ୍ଧମୂଳକ କରାଅଯେ ରାଜା, ଆମର ପିତା ସଦୃଶ ।

ସେ ନିଜକୁ ଯେପରି ସୁଖ ପାଆନ୍ତି; ଆମକୁ ମଧ୍ୟ ସେହିପରି ସୁଖ ପାଆନ୍ତି । ଆମେ ରାଜାଙ୍କ ସନ୍ତାନ ସଦୃଶ ।

ତୁମ୍ଭମାନଙ୍କୁ ଏ ନିର୍ଦ୍ଦେଶ ଦେଇ ମୋର ଧ୍ରୁବ ପ୍ରତିଜ୍ଞା ଓ ଇଚ୍ଛା ଜଣାଇ ମୁଁ ମୁଁ ଆଶା କରେ ଯେ ମୋର ସ୍ଥାନୀୟ କର୍ମଚାରୀମାନେ ତଦନୁସାରେ ବ୍ରତୀ ହେବେ । ସେମାନଙ୍କ ମନରେ ବିଶ୍ବାସ ଜନ୍ମାଇବା ପାଇଁ ଇହ ଓ ପରତ୍ର ସୁଖ ବିଧାନ କରିବା ପାଇଁ କାର୍ଯ୍ୟ କରିବାକୁ ତୁମ୍ଭେମାନେ ଅଛ, ସେ କାର୍ଯ୍ୟକଲେ ତୁମ୍ଭେମାନେ ସ୍ୱର୍ଗଲାଭ କରିବ ଓ ମୋ ଋଣରୁ ମୁକ୍ତ ହେବ ।

ସେଥିପାଇଁ ଏହି ଧର୍ମାନୁଶାସନ ଲିପିବଦ୍ଧ ହେଉଛିଯେ ମହାପାତ୍ର ମାନେ ସୀମାନ୍ତ ବାସୀ ମାନଙ୍କ ମନରେ ବିଶ୍ବାସ ଜନ୍ମାଇବା ପାଇଁ ଓ ସେମାନଙ୍କୁ ଧର୍ମ ପଥରେ ଚଳାଇବା ପାଇଁ ଅବିଶ୍ରାନ୍ତ ଚେଷ୍ଟା କରିବେ ।"

ରାଜା ଅଶୋକଙ୍କର ସ୍ୱତନ୍ତ୍ର କଳିଙ୍ଗ ଅନୁଶାସନ ସୀମାନ୍ତବାସୀ ବନଜାତି ମାନଙ୍କ ପ୍ରତି ଉଦ୍ଦିଷ୍ଟ । ଗିରି କଳିଙ୍ଗର ସେହି ଗିରିଜନମାନେ ଏ ଯାବତ ଅବହେଳିତ ହୋଇ ରହିଛନ୍ତି । ଦୁଇହଜାର ବର୍ଷର ଦୀର୍ଘ ଶୂନ୍ୟତା ଅତିକ୍ରମ କରି ଆଜି ମଧ୍ୟ ଗିରି ଗହ୍ୱରରୁ ଅଶୋକଙ୍କର ଡାକ ଶୁଭୁଛି ।

ସୀମାନ୍ତବାସୀ ଅରଣ୍ୟକ ମାନଙ୍କୁ ଧର୍ମ ମାର୍ଗକୁ ଅଣାଅ । ଯଦି ଶାସନ ଓ ସମାଜ ସେ ଡାକ ନଶୁଣେ, ତେବେ ସେଥିପାଇଁ ପ୍ରାୟଶ୍ଚିତ୍ତ ଭୋଗ କରିବାକୁ ହେବ ।

ଯାହାହେଉ ମୌର୍ଯ୍ୟ ରାଜବଂଶର ଏହିପରି ପବିତ୍ର ଶାସନ ପଦ୍ଧତି ସମଗ୍ର ଭାରତର ହିନ୍ଦୁ ରାଜବଂଶ ଦ୍ୱାରା ଊଣା ଅଧିକେ ଅନୁସୃତ ହୋଇ ଆସିଅଛି । ସେହି ଶାସନ ପ୍ରଣାଳୀ ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ବିଚକ୍ଷଣ ମନ୍ତ୍ରୀ କୌଟିଲ୍ୟଙ୍କ 'ଅର୍ଥଶାସ୍ତ୍ର'

ଉପରେ ପ୍ରତିଷ୍ଠିତ ଓ ତାହାଙ୍କ ଚିରକାଳ ପାଇଁ ଭାରତୀୟ ଶାସନ ତନ୍ତ୍ରର ଆଦର୍ଶ ହୋଇ ରହିଥିବ ଏଥିରେ ସନ୍ଦେହ ନାହିଁ ।

ରାଜାଙ୍କର କର୍ତ୍ତବ୍ୟ ସମ୍ବନ୍ଧରେ କୌଟଲ୍ୟଙ୍କର ନିର୍ଦ୍ଦେଶ ହେଉଛି—

"ପ୍ରଜାଙ୍କ ସୁଖରେ ରାଜାଙ୍କର ସୁଖ ନିହିତ ଅଛି । ସେମାନଙ୍କର ମଙ୍ଗଳରେ ରାଜାଙ୍କର ମଙ୍ଗଳ । ରାଜାଙ୍କୁ ଯାହା ସୁଖ ଲାଗିବ ତାକୁ ମଙ୍ଗଳ ବୋଲି ମନେ କରିବା ଉଚିତ ନୁହେଁ । କିନ୍ତୁ ପ୍ରଜାଙ୍କୁ ଯାହା ସୁଖ ଲାଗିବ ତାହାକୁ ସାଧୁ ବୋଲି ମନେ କରିବା ରାଜାଙ୍କ କର୍ତ୍ତବ୍ୟ ।"

ଏଥିରୁ ଅନୁମିତ ହୁଏ ଯେ କୌଟଲ୍ୟଙ୍କ- ପରିକଳ୍ପିତ ଭାରତୀୟ ରାଜତନ୍ତ୍ର ଆଧୁନିକ ଗଣତନ୍ତ୍ର ଠାରୁ ବହୁ ଗୁଣରେ ଶ୍ରେଷ୍ଠ ଓ ଧେୟ ଥିଲା ।

ମୌର୍ଯ୍ୟ ରାଜବଂଶର ଏହି ମହାନୁଭବତାରେ ଆକୃଷ୍ଟ ହୋଇ ଭଞ୍ଜ ରାଜାମାନେ ସେମାନଙ୍କର ବଂଶ ମୌର୍ଯ୍ୟ ବଂଶରୁ ଉତ୍ପତ୍ତି ହୋଇଥିବା କଥା କହିବାରେ ବିଚିତ୍ରତା ନାହିଁ ।

ଭଞ୍ଜ ଓ ମୌର୍ଯ୍ୟ ବଂଶ ମଧ୍ୟରେ ସୁସମ୍ପର୍କ ସ୍ଥାପିତ ହେବାର ଅନ୍ୟତମ କାରଣ ହେଉଛି ଯେ ଜଗତ ଇତିହାସ ଲୋମହର୍ଷଣ କଳିଙ୍ଗ ଯୁଦ୍ଧର ଅବସାନ ପରେ ମୌର୍ଯ୍ୟ ସମ୍ରାଟ ଚଣ୍ଡାଶୋକ ବୌଦ୍ଧଧର୍ମ ଗ୍ରହଣକରି ଧର୍ମାଶୋକରେ ପରିଣତ ହେବାରୁ କଳିଙ୍ଗର ଭଞ୍ଜମାନେ ବୌଦ୍ଧ ଧର୍ମାବଲମ୍ବୀ ଥାଇ ଅଶୋକଙ୍କୁ ଗୁରୁଭାଇ ରୂପେ ଲାଭକରି ନିଜକୁ ଗର୍ବିତ ମନେ କଲେ । ଫଳରେ କଳିଙ୍ଗରେ ଭଞ୍ଜ ରାଜବଂଶ ଓ ମୌର୍ଯ୍ୟ ରାଜବଂଶ ମଧ୍ୟରେ ସମନ୍ୱୟ ସ୍ଥାପିତ ହୋଇପାରିଥିଲା ।

କେବଳ ଭଞ୍ଜ ଓ ମୌର୍ଯ୍ୟ ବଂଶର ଉତ୍ପତ୍ତି ସମ୍ବନ୍ଧୀୟ କଳ୍ପନା ସହିତ ବଣାଇ ମଣ୍ଡଳର ଅନ୍ୟତମ ରାଜବଂଶ କଦମ୍ବ ବଂଶ ମଧ୍ୟ ମୟୂର ପକ୍ଷୀକୁ ରାଜକୀୟ ସମ୍ମାନ ଓ ସଂକେତ ରୂପେ ବ୍ୟବହାର କରିଅଛନ୍ତି । କଦମ୍ବ ଗାଥା ନାମକ ରଚନାରୁ ଜଣାଯାଏ ଯେ ସିଂହଳର ରାଜା ଭୀରୁ ଭ୍ରାତାଗଣ ସଙ୍ଗରେ ପୁରୀ ଶ୍ରୀଜଗନ୍ନାଥ ଦର୍ଶନ କରିବା ନିମନ୍ତେ ସିଂହଳରୁ ଆସି ଶ୍ରୀରାମେଶ୍ୱର ସେତୁବନ୍ଧ ଠାରେ ପହଞ୍ଚି ସେଠାରୁ ପୁରୀକୁ ଅଶ୍ୱ ପୃଷ୍ଠରେ ବସି ଯାତ୍ରାକରନ୍ତି କରି ପଥ ମଧ୍ୟରେ ଶ୍ରୀଲିଙ୍ଗରାଜ ଶ୍ରୀ ସାକ୍ଷୀଗୋପାଳ ଓ ସୂର୍ଯ୍ୟ ମନ୍ଦିର ଦର୍ଶନ କରି ଶ୍ରୀକ୍ଷେତ୍ର ପୁରୀର ଅଠରନଳା ଠାରେ ପହଞ୍ଚିଲେ । ଅଠରନଳା ଠାରେ ତୀର୍ଥଯାତ୍ରୀ କର ସଂଗ୍ରହ କରୁଥିବା ଗଜପତିଙ୍କର ରାଜ କର୍ମଚାରୀ ମାନେ ରାଜା ଭୀରୁଙ୍କୁ ମହାସୂଲ ମାଗିବାରୁ ରାଜା ଭୀରୁ ଜଗୁଆଳ ମାନଙ୍କୁ ଉତ୍ତର ଦେଲେ :—

"ବଠୋର କଠୋର ବୃକ୍ଷେ ପକ୍ଷି ଉତ୍ତମ
କଦମ୍ବ ବଂଶୀକ ଆମ୍ଭେ ନୋହୁ ଅଧମ ।

ନକରୁ ଭକତ କାହେ ପ୍ରଣାମ ନୋହୁଁ
ଅଧୀନତାରେ ନରହୁ ସାର ବୋଲଉଁ ।
କେବଳ ଦର୍ଶନ କରି କମଳ ଧାସ
ବାହୁଡ଼ଣ ଯିବୁ ଆମ୍ଭେ ନିଜ ନଗସ ”;

ରଜା ଭୀରୁଙ୍କର ଏହିପରି ଦମ୍ଭପୂର୍ଣ୍ଣ ବାର୍ତ୍ତା ପାଇ ଗଜପତି ଆଜ୍ଞା ଦେଲେ :-

"କରତ ପଥରେ ତୁମ୍ଭେ କସାଇ ଦଅ
ଏହି ପଥେ ଯାଅ ବୋଲି ତାହାଙ୍କୁ କୁହ ।
ଯେବେ ସେହି ପଥେ ଯିବେ ଚଳାଇ ଅଶ୍ୱ
ଜାଣିବ ସତେ ଓର ଛତ୍ରୀ କଦମ୍ବ ବଂଶ ।

ପ୍ରହରୀ ମାନଙ୍କ ଠାରୁ ରଜା ଭୀରୁ ଏହିପରି କଠିନ ପରୀକ୍ଷାର ବାର୍ତ୍ତା ପାଇ ନିଜ ବଂଶର ମର୍ଯ୍ୟାଦା ପ୍ରତିଷ୍ଠା ନିମନ୍ତେ ନିଜଭାଇ ମାନଙ୍କ ସହିତ ଅଶ୍ୱପୃଷ୍ଠରେ ବସି କରତ ବିଛା ପଥରେ ଚାଲିଯିବା ସମୟରେ ରାଜା ଭୀରୁ ଓ ତାଙ୍କର ଦୁଇଭାଇ ପ୍ରାଣ ତ୍ୟାଗ କଲେ । ଗଜପତି ସିଂହଳର ସାର ମାନଙ୍କର ମୃତ୍ୟୁ ସମ୍ବାଦ ପାଇ ବହୁ ଦୁଃଖିତ ହେଲେ ଓ ଅନ୍ୟ ଭାଇମାନଙ୍କୁ ସାଦରରେ ବରଣ କରି କହିଲେ—

"ଶୁଣ କ୍ଷତ୍ରିୟ ଅଟ ତୁମ୍ଭେମାନେ
ବନ୍ଧୁ ନିତି ସେବା କରିବ ରହ ମୋର ଭବନେ ।"

ତତ୍ପରେ କାଦମ୍ବ ବଂଶୀୟ ରାଜପୁତ୍ର ମାନେ ଶ୍ରୀ ଦର୍ଶନ, ପୂଜନ, ଅର୍ଚ୍ଚନ ଓ ମହାପ୍ରସାଦ ସେବନ କରି ପୁରୀରେ କିଛି କାଳ ଅବସ୍ଥାନ କରି ସେଠାରୁ ଶ୍ରୀ-ସାରଜା କ୍ଷେତ୍ର ଦର୍ଶନ କରି ସିଂହଭୂମି ରାଜ୍ୟ ଗଠନ କରି ସେଠାରେ ରାଜା ହେଲେ । ସିଂହଭୂମି ଭଞ୍ଜ ଭୂମିର ଉତ୍ତରରେ ଅବସ୍ଥିତ ଅଟେ । ତାହାର କିଛିକାଳ ପରେ ପ୍ରତାପରୁଦ୍ର ନାମକ ଗୋଟିଏ ରାଜକୁମାର ସିଂହଭୂମି ରାଜ୍ୟର ପଶ୍ଚିମକୁ ଯାଇ ବ୍ରାହ୍ମଣୀ ନଦୀ ଆବକାଣ୍ଡକାରେ ବଣାଇ ରାଜ୍ୟ ଗଠନ କରି ସେଠାରେ ରାଜା ହୋଇଥିଲେ ।

କାଦମ୍ବ ଗାଥାରେ ଲେଖା ଅଛି—

"ଶୁଣିଲେ ବଣାଇ ନଗରେ ବାଣ ଈଶ୍ୱର ଲିଙ୍ଗ
ଅକର୍ମିଗଣ ଦୁଃଖ ଦେଖି ଦିଅନ୍ତି ଅପବର୍ଗ ।"

ତେଣୁ କାଦମ୍ବ କୁମାର ବଣାଇ ରାଜ୍ୟରେ ପ୍ରବେଶ କରି ବାଣେଶ୍ୱର ଲିଙ୍ଗଙ୍କର ପୂଜା ଆରାଧନ କଲେ ।

ସେହି ସମୟରେ ବଣାଇ ମଣ୍ଡଳର ଅଧିପତି ଥିଲେ ବାଣେଶ୍ୱରଙ୍କର ପରମ ପ୍ରିୟଭକ୍ତ ଦୈତ୍ୟପତି 'ବାଣାସୁର । ଏକଦା କାଦମ୍ବ କୁମାର ବାଣେଶ୍ୱରଙ୍କୁ ପୂଜା କରୁଥିବା ସମୟରେ ବାଣାସୁର ସେଠାରେ ପହଂଚି ଯିବାରୁ ରାଜକୁମାର ପ୍ରାଣଭୟରେ

ଦଉଡ଼ି ଯାଇ ବନ ମଧ୍ୟରେ ଥିବା ଗୋଟିଏ କଦମ୍ବ ଗଛର କୋରଡ଼ ମଧ୍ୟରେ ଲୁଚି ରହିଲେ । ଦୈବ ଯୋଗେ ଗୋଟିଏ ମୟୂର [illegible] ରାଜକୁମାରଙ୍କର ବାହାରକୁ ବାହାରିଥିବା ପାଦ ଦୁଇଟିକୁ ଆବୃତ୍ତ କରି ଟେକି ପକ୍ଷ ମେଲି ନାଚିବାକୁ ଆରମ୍ଭ କଲା । ବାଣାସୁର କାଦମ୍ବ କୁମାରଙ୍କୁ ଖୋଜି ଖୋଜି ନପାଇ ସେଠାରୁ ପଳାଇ ଗଲା ପରେ ରାଜକୁମାର କଦମ୍ବ ଗଛର କୋରଡ଼ରୁ ବାହାରିଥିଲେ ଓ ମୟୂରଟି ରାଜକୁମାରଙ୍କୁ ନୃତ୍ୟ ଛଳରେ ଅଭିନନ୍ଦନ ଜ୍ଞାପନ କରିଥିଲା । କଦମ୍ବଗଛ ଓ ମୟୂରପକ୍ଷୀ ରାଜ-କୁମାରଙ୍କର ପ୍ରାଣ ରକ୍ଷା କରିଥିବାରୁ କାଦମ୍ବ ବଂଶୀୟ କ୍ଷତ୍ରୀୟମାନେ କଦମ୍ବ ବୃକ୍ଷକୁ ସ୍ପର୍ଶ କରନ୍ତି ନାହିଁ ଓ ମୟୂର ପକ୍ଷୀର ପୁଚ୍ଛକୁ ରାଜକୀୟ ସଂକେତ ରୂପେ ମୁକୁଟରେ ଧାରଣ କରନ୍ତି ।

ଭଗବାନ ବାଣେଶ୍ୱର ରାଜକୁମାରଙ୍କ ଭକ୍ତିରେ ସନ୍ତୁଷ୍ଟ ହୋଇ ସ୍ୱପ୍ନରେ କହିଲେ --

"କାଲି ଏ ବଣାଇ ରାଜ୍ୟରେ ହେବୁ ନରେଶ୍ୱର
କେବଳ ମୋହର ସେବାରେ ଥିବୁ ନିଶି ଦିବସ ।"

ତତ୍ ସଙ୍ଗେ ସଙ୍ଗେ ଭୂୟାଁ ରାଜାଙ୍କୁ ସ୍ୱପ୍ନାଦେଶ ହେଲା —

ବୋଇଲେ ମୋହର ମନ୍ଦିରେ ଅଛି ମହାପୁରୁଷ
କାଲିଠୁ ବଣାଇ ରାଜ୍ୟରେ ତାକୁ କର ନରେଶ ।
ନହେଁ ବାଣାସୁରେ ପ୍ରବେଶି ତାକୁ କହିଲେ ହର
କାଲି ଭୂମି ଏହି ନବରୁ ତାକୁ ଦୂର ବାହାର
ଭୈରବ ସ୍ୱରୂପ ରହିବୁ ଯାଇଁ ବରାଣସୀରେ
ନହେଲେ ତୋହର ନିପାତ ହେବ ଏହି ନଗରେ ।

× + +

ଶୁଣି ବଣସୁର ନିଜ କୁଟୁମ୍ବ ଧରି
ଚଳାଇ ପଶିଲା ଯାଇଁ ବାଣାସୁର ପୁରି
ଭୈରବ ସ୍ୱରୂପେ ଆଜି ଯାଏ ଅଛି ରହି
ଭକ୍ତ ସେନ ପାଶେ ରଖିଛନ୍ତି ଉମା ସାଇଁ ।

ପରଦିନ ସକାଳୁ କାଦଂବ କୁମାର ପ୍ରତାପ ଦେବ ଭୂୟାଁ ରାଜାଙ୍କ ସହାୟତା-ରେ ବଣାଇ ନଗରରେ ରାଜା ହୋଇ ଇନ୍ଦ୍ରଦେବ ନାମରେ ସେହିଦିନ ଠାରୁ କାଦଂବ ବଂଶ ସ୍ଥାପନ କଲେ । କାଦଂବ ବଂଶରେ ମଧ୍ୟ ମୟୂର ପକ୍ଷୀର ପ୍ରାଧାନ୍ୟ ଥିବା ପରମ୍ପରାରୁ ମନେହୁଏ ଯେ ମୌର୍ଯ୍ୟ; ଭଞ୍ଜ, ବରାହ ଓ କାଦଂବ ମାନଙ୍କ ମଧ୍ୟରେ ଘନିଷ୍ଠ ସମ୍ପର୍କ ଥିଲା । ଏଣୁ ଖିଜିଙ୍ଗ ମଣ୍ଡଳରେ ଭଞ୍ଜ ବଂଶ ଓ ବଣେଇ ମଣ୍ଡଳର ବରାହ ଓ କାଦଂବ ରାଜବଂଶୀୟ ମାନେ ମୟୂର ପକ୍ଷୀକୁ ରାଜକୀୟ ସମ୍ମାନ ଦେଇ ଆସିଛନ୍ତି ।

କେବଳ ମେଣ୍ଟକ ନୁହେଁ ବ୍ରାହ୍ମଣୀ ନଦୀ ଅବବାହିକାରେ ଦୁଇ ଗୋଟି ସାମ୍ରାଜ୍ୟ ସ୍ଥାପିତ ହୋଇ ଉଭୟ ରାଜବଂଶ "ଭଞ୍ଜ ଉପାଧିଧାରୀ ଥିଲେ ।

"ପୁରାଣ ମାନଙ୍କର ପ୍ରତିଷ୍ଠା ବଢ଼ିବା ସଙ୍ଗେ ସଙ୍ଗେ ପ୍ରାୟ ଏକାଦଶ ଶତାବ୍ଦୀର ପ୍ରାରମ୍ଭରେ ରାଜାମାନେ ନିଜର ବଂଶକୁ ସେହି ପୁରାଣ "ବର୍ଣ୍ଣିତ ବଂଶାବଳୀ ସହିତ ମିଶାଇବା ପାଇଁ ଓ ସେମାନଙ୍କ ସ୍ୱ ସ୍ୱ ବଂଶକୁ ସୂର୍ଯ୍ୟ, ଚନ୍ଦ୍ର, ବା ଅନ୍ୟ କୌଣସି ସ୍ୱର୍ଗୀୟ ଦେବତା ସହିତ ଯୋଗ କରିବା ପାଇଁ ବ୍ୟାକୁଳତା ପ୍ରକାଶ କରୁଥିଲେ । ଏଣୁ ଅନେକ ସ୍ଥଳରେ ବଂଶାବଳୀ ବାସ୍ତବତା ତ୍ୟାଗ କରି କଳ୍ପନାର ଆଶ୍ରୟ ନେଇଛି । ଏତଦ୍ୱାରା ସ୍ଥଳେ ଅନ୍ୟାନ୍ୟ ରାଜବଂଶ ଗୁଡ଼ିକ ପରି ଭଞ୍ଜବଂଶର ଉତ୍ପତ୍ତି ଇତିହାସରେ ବ୍ୟାପକ ଛନ୍ଦ ଅନୁସୃତ ହୋଇଥିବା ବିଚିତ୍ର ନୁହେଁ ।

କଦମ୍ବ ବଂଶର ଅଭ୍ୟୁଦୟ ବିଷୟରେ ଓଡ଼ିଶା ଇତିହାସରେ ଲେଖା ଅଛିଯେ ମହୀଶୂରରୁ ଗଙ୍ଗବଂଶ ଯେତେବେଳେ ନିଜର ଭାଗ୍ୟ ଖୋଜି ଖୋଜି କଳିଙ୍ଗ ରାଜ୍ୟକୁ ଆସିଥିଲେ ସେତେବେଳେ ସେମାନଙ୍କ ସହିତ କଦମ୍ବ ବଂଶୀୟ ମାନେ ଆସିଥିଲେ । ମହୀଶୂରର ପୁନାଟ ଓ ଟଲ୍ଲକ ବଂଶୀୟ ରାଜ୍ୟ ମଧ୍ୟରେ କଦମ୍ବ ମାନଙ୍କର ରାଜ୍ୟ ଥିଲା । କଳିଙ୍ଗରେ ଗଙ୍ଗ ବଂଶର ଅଭ୍ୟୁଦୟ ବେଳେ କଦମ୍ବ ମାନେ ଗଙ୍ଗ ବଂଶର ସାମନ୍ତ ରାଜା ଓ ପଦସ୍ଥ କର୍ମଚାରୀ ଥାଇ ନୂତନ ରାଜ୍ୟର ଆଧିପତ୍ୟକୁ ଉପଭୋଗ କରିଥିଲେ । ଗଙ୍ଗ ଓ କଦମ୍ବମାନେ ବ୍ରାହ୍ମଣ ଥାଇ ଶହ ଶହ ବର୍ଷ ରାଜତ୍ୱ କାଳପରେ କ୍ଷତ୍ରିୟ ହୋଇଯାଇଥିଲେ । ଦଶମ ଶତାବ୍ଦୀ ଠାରୁ ପଞ୍ଚଦଶ ଶତାବ୍ଦୀ ଯାଏଁ ଗଙ୍ଗ କଦମ୍ବମାନେ ଓଡ଼ିଶାର ରାଜା ଥାଇ ଓଡ଼ିଆ ଭାଷା ଓ ଓଡ଼ିଆ ଜାତି ଗଠନ କରିଥିଲେ ।

## ଖିଜିଙ୍ଗ ମଣ୍ଡଳ

ଶାରଳା ମହାଭାରତ ପଠନରୁ ଜଣାଯାଏ ଯେ ଆଜକୁ ପ୍ରାୟ ୫୦୦୦ ବର୍ଷ ପୂର୍ବେ ଦ୍ୱାପର ଯୁଗରେ ଆଧୁନିକ ମୟୂରଭଞ୍ଜ ଓ କେନ୍ଦୁଝର ରାଜ୍ୟ ଦ୍ୱୟ ମଦ ଓ ମତ୍ସ୍ୟ ଦେଶ ନାମରେ ପରିଚିତ ଥାଇ ମାଣ୍ଡଳିକ ମାନଙ୍କର ମନ ରାଜ୍ୟ ଥିଲା । ସେହି ସମୟରେ ମଦ ଦେଶରେ ବିରାଟ ବଂଶ ଓ ମତ୍ସ୍ୟ ଦେଶରେ ଗୁହ୍ୟକ ବା ଶବର ମାନେ ରାଜତ୍ୱ କରୁଥିଲେ । ମହାଭାରତ ଯୁଦ୍ଧର ଅବ୍ୟବହିତ ପୂର୍ବରୁ ମତ୍ସ୍ୟ ଦେଶର ଗୁହକ ରାଜା ମଦ ଦେଶ ଜୟ କରି ବିରାଟ ସାମ୍ରାଜ୍ୟକୁ ପଦାନତ କରିଥିଲେ । ତାହାର କିଛି କାଳ ପରେ ରାଜା ବିରାଟ ତାଙ୍କର ଶତ କୀଚକ ଶାଳକ ମାନଙ୍କ ସହାୟତାରେ ପୁନର୍ବାର ନିଜ ରାଜ୍ୟ ଲାଭ କରିବା ସଙ୍ଗେ ସଙ୍ଗେ ମତ୍ସ୍ୟଦେଶକୁ ମଧ୍ୟ ଜୟ କରିଥିଲେ । ସେତେବେଳେ ଏହି ଅଞ୍ଚଳ ଅର୍ବୁଦାଚଳ ନାମରେ କଥିତ ହେଉଥିବା ମନେ ହୁଏ ।

ଖିଜିଙ୍ଗ ଠାରେ ଅବସ୍ଥିତ ଦେବୀ କୀଚକେଶ୍ୱରୀ ଶତକୀଚକଙ୍କର ଇଷ୍ଟଦେବୀ ଥିଲେ । ପରବର୍ତ୍ତୀ ସମୟରେ କୁରୁକ୍ଷେତ୍ର ଯୁଦ୍ଧରେ ବିରାଟ ବଂଶର ପତନ ହୋଇ

ଏହି ଅଞ୍ଚଳ ଖାଟକେଶ୍ୱରଙ୍କ ନାମାନୁସାରେ ଖଟକ ମଣ୍ଡଳ ବା ଖିଜଙ୍ଗ ମଣ୍ଡଳ ନାମରେ କଥିତ ହେଲା । ଏହାର ରାଜଧାନୀ ଥିଲା ଖିଚଙ୍ଗ ନଗ୍ର । ଏହି ଖିଚଙ୍ଗ ଗ୍ରାମ କରଞ୍ଜିଆ ଠାରୁ ୨୫ ମାଇଲ ଦୂରରେ ପଶ୍ଚିମରେ ପୂଣ୍ୟତୋୟା ବୈତରଣୀ ନଦୀ ଉପକୂଳରେ ଅବସ୍ଥିତ । ପ୍ରାଚୀନ କୀର୍ତ୍ତି ମାଳମା ଖିଚଙ୍ଗ ଗ୍ରାମରେ ଖାଟକେଶ୍ୱରଙ୍କ ବିଶାଳ ମନ୍ଦିର ଓ ବିଗ୍ରହ ବର୍ତ୍ତମାନ କରିଅଛି । ଏହା ଖିଜଙ୍ଗ ମଣ୍ଡଳର ରାଜଧାନୀ ଥିଲା । ଐତିହାସିକ ମାନଙ୍କ ମତରେ ଖିଚଙ୍ଗକୋଟ ଭଞ୍ଜରାଜା ନେଟ ଭଞ୍ଜଙ୍କର ରାଜଧାନୀ ଥିଲା ।

## ଖିଜିଙ୍ଗ ମଣ୍ଡଳ

ଓଡ଼ିଶାରେ ଭଞ୍ଜ ରାଜବଂଶର ଉତ୍ପତ୍ତି ଅନୁସନ୍ଧାନରୁ ଜଣାଯାଏ ଯେ ଖିଜଙ୍ଗ ମଣ୍ଡଳ ହେଉଛି ବାସ୍ତବରେ ଭଞ୍ଜରାଜା ମାନଙ୍କର ସର୍ବାଦ୍ୟ ବାସଭୂମି । ଏହାର ଅପର ନାମ ଭଞ୍ଜଭୂମି ଅଟେ । ଏହି ଖିଜଙ୍ଗ ମଣ୍ଡଳର ଭଞ୍ଜରାଜ ବଂଶର ଗୋଟିଏ ଶାଖା ଉତ୍ତରରୁ କ୍ରମଶଃ ଛୋଟନାଗପୁର ପ୍ରଦେଶରେ ରାଜ୍ୟ ଶାସନ କରି ପ୍ରାୟ ୮୨୦ ଖ୍ରୀଷ୍ଟାବ୍ଦରେ ଦକ୍ଷିଣ ଓଡ଼ିଶାରେ ଖିଞ୍ଜିଳ ମଣ୍ଡଳ ନାମକ ସୁଦୃଢ଼ ଭଞ୍ଜ ସାମ୍ରାଜ୍ୟ ଗଠନ କରିଥିଲେ । ଏହି ଖିଞ୍ଜିଳ ମଣ୍ଡଳ ବୌଦ୍ଧ ଘୁମୁସରକୁ ନେଇ ଗଠିତ ହୋଇ-ଥିଲା ବୋଲିମନେହୁଏ ।

ଐତିହାସିକ ବିବରଣରେ କୁହାଯାଇଛି ଯେ ସୋମବଂଶର ରାଜା ଜଯାତି ଧୃତିପୁର ବା ଆଧୁନିକ ସୋନପୁର-ବୌଦ୍ଧ ଅଞ୍ଚଳରୁ ଭଞ୍ଜରାଜା ମାନଙ୍କୁ ତଡ଼ି ଦେବାରୁ ସେମାନେ ଗଞ୍ଜାମ ଜିଲ୍ଲାରେ ଘୁମୁସର ଠାରେ ରାଜ୍ୟ ଵ୍ୟବସ୍ଥା କରି ରାଜ୍ୟର ନାମ ଖିଞ୍ଜିଳି ମଣ୍ଡଳ ରଖିଥିଲେ । ତାହାର ରାଜଧାନୀ ଥିଲା କୁଳଡ଼ ।

ବୌଦ୍ଧରୁ ପ୍ରାପ୍ତ ନେଟ ଭଞ୍ଜଙ୍କର ତାମ୍ର ଶାସନରୁ ଜଣାଯାଏ ଯେ ସେ ଅଙ୍ଗୁଲକ ପତ୍ତନ ବା ଅନୁଗୁଳରୁ ତାହା ପ୍ରଦାନ କରିଥିଲେ । ଏଥିରୁ ଅନୁମିତ ହୁଏ ଯେ ଖିଜଙ୍ଗ ମଣ୍ଡଳର ଭଞ୍ଜବଂଶର ଗୋଟିଏ ଶାଖା ଅଙ୍ଗୁଲକ ପତ୍ତନକୁ ପଳାଇଯାଇ ସେଠାରେ ରାଜ୍ୟ ବିସ୍ତାର କରିଥିଲେ । ମାତ୍ର ଶୁଭକରଙ୍କ ସମୟରେ ସେମାନେ ସୁଲ୍କି ବଂଶ ଦ୍ୱାରା ସେଠାରୁ ବିତାଡ଼ିତ ହୋଇ ଧୃତିପୁର ବା ସୋନପୁର-ବୌଦ୍ଧ ମଣ୍ଡଳକୁ ପଳାଇ ଯାଇଥିଲେ । ପୁନଶ୍ଚ ସୋମବଂଶ ଶାସନ କାଳରେ ଏହି ଭଞ୍ଜ ରାଜାମାନେ ସେଠାରୁ ତଡ଼ାଖାଇ ଘୁମୁସର ଠାରେ ରାଜା ଶିଳାଭଞ୍ଜ ୮୨୦ ଖ୍ରୀଷ୍ଟାବ୍ଦରେ ଖିଞ୍ଜିଲ ମଣ୍ଡଳ ନାମରେ ନୂତନ ଭଞ୍ଜ ରାଜ୍ୟ ଗଠନ କରି ତାହାର ରାଜଧାନୀ କୁଳଡ଼ ରଖିଥିଲେ । କିନ୍ତୁ ରାଜା ନେଟ ଭଞ୍ଜଙ୍କ ପ୍ରଦତ୍ତ ତାମ୍ର ଶାସନରୁ ଜଣାଯାଏ ସେ ଦ୍ରୁମ ରାଜବଂଶର ୯୯ ପୁରୁଷରେ ଜନ୍ମ ହୋଇଥିଲେ । ସେ ଦ୍ରୁମ ବଂଶୀୟ ଥାଇ ଭଞ୍ଜ ଉପାଧି ଧାରଣ କରିଥିଲେ ।

କେନ୍ଦୁଝରର ଅସନପାଟ ଶିଳାଲେଖରୁ ପ୍ରଖ୍ୟାତ ଭଞ୍ଜ ରାଜା ଶତ୍ରୁଭଞ୍ଜ ଦ୍ୱିତୀୟ ଖ୍ରୀଷ୍ଟାବ୍ଦରେ ସମଗ୍ର ପୂର୍ବ ଭାରତରେ ନିଜର ରାଜତ୍ୱ ବିସ୍ତାର କରିବା ସଙ୍ଗେ

ସଙ୍ଗେ ଉତ୍ତର ଭାରତରେ ମଧ୍ୟ ପ୍ରଭାବ ବିସ୍ତାର କରିଥିଲେ । ସେ ବନ୍ଧ୍ୟାଟବୀ ରାଜ୍ୟ ବା ଗଣରାଷ୍ଟ୍ରକୁ ନିଜର ଅଧୀନରେ ରଖିସେ ନାଗବଂଶୀୟ ଥିବାର ପ୍ରମାଣ ମିଳେ । ଚତୁର୍ଥ ଖ୍ରୀଷ୍ଟାବ୍ଦରେ ଏହି ନାଗବଂଶ ଓ ଗଣରାଷ୍ଟ୍ର ମଗଧର ଗୁପ୍ତ ଶାସନ କାଳରେ ସମୁଦ୍ରଗୁପ୍ତଙ୍କ ଦ୍ୱାରା ବିନଷ୍ଟ ହୋଇ ଯାଇଥିଲା ।

ସେହିପରି ପଞ୍ଚମ ଶତାବ୍ଦୀରେ ରଚିତ ସୀତାବିଞ୍ଜି ଶୈଳଚିତ୍ରାଙ୍କନ ଓ ଶିଳା-ଉତ୍କୀର୍ଣ୍ଣ ଲେଖରୁ ଖିଜଂଗ ମଣ୍ଡଳର ଭଂଜ ବଂଶର ପ୍ରାଚୀନତା ସମ୍ବନ୍ଧରେ ସମ୍ୟକ ଧାରଣା କରାଯାଇ ପାରେ ।

ଐତିହାସିକ ରାଖାଲ ଦାସ ବାନାର୍ଜୀ ଖିଞ୍ଜିଲି ମଣ୍ଡଳ ମହାନଦୀ କୂଳରେ ଅବସ୍ଥିତ ଥିଲା ବୋଲି ବର୍ଣ୍ଣନା କରିଛନ୍ତି । ଏହି ମତାନୁଯାୟୀ ମହାନଦୀ କୂଳରେ ଅବସ୍ଥିତ ବଉଦ ଓ ଦଶପଲ୍ଲା ରାଜ୍ୟ ଖିଂଜଳି ମଣ୍ଡଳର ଅନ୍ତର୍ଗତ ଥିବା ଜଣାଯାଏ ।

ଭଂଜଭୂମିର ପୂର୍ବରେ ବୈତରଣୀ ନଦୀର ପାଦ ଦେଶରେ କର୍ଣ୍ଣିକା ବା କନିକାର ରାଜବଂଶ ନିଜକୁ ଭଞ୍ଜ ବଂଶ ବୋଲି ଦାବି କରନ୍ତି । କନିକାର ଭଂଜ ରାଜବଂଶର କଥି ନାମାରୁ ଜଣାଯାଏଯେ ତ୍ରୟୋଦଶ ଶତାବ୍ଦୀର ଭ୍ରାତୃବିବାଦ ଜନିତ କଳହରୁ ମୟୂରଭଞ୍ଜର ରାଜକୁମାର ଭୁଜବଳ ଭଞ୍ଜ ପଳାଇ ଯାଇ ସେଠାରେ ଭଂଜ ରାଜ୍ୟ ଗଠନ କରିଥିଲେ । ଏହା ପୂର୍ବରୁ ସେଠାରେ କୈବର୍ତ୍ତ ଜାତିର ଦାସ ରାଜା ରାଜ୍ୟ ଶାସନ କରୁଥିଲେ । ସମ୍ରାଟ ଖାରବେଳଙ୍କ ଶାସନ କାଳରୁ କନିକା କଳିଂଗର ପ୍ରଧାନ ନୌବାଣିଜ୍ୟ କେନ୍ଦ୍ର ଥାଇ ସୌଦାଗର ମାନଙ୍କ ଦ୍ୱାରା ଅଧ୍ୟୁଷିତ ଥିଲା ।

ରାଜା ଭୁଜବଳଙ୍କ ଠାରୁ ରାଜା ବଳଭଦ୍ର ଭଞ୍ଜଙ୍କ ଯାଏଁ କନିକାର ସର୍ବ-ମୋଟ ୨୮ ଜଣ ଭଂଜ ରାଜା ରାଜ୍ୟ ଶାସନ କରିଥିଲେ । ଏଥିରୁ ଜଣାଯାଏ ଯେ ବୈତରଣୀ ନଦୀର ଆପାଦ ମସ୍ତକ ସମଗ୍ର ଅଞ୍ଚଳ ଭଂଜ ରାଜ୍ୟ ବା ଭଞ୍ଜଭୂମି ନାମରେ ଖ୍ୟାତ ଥିଲା । ବୈତରଣୀ; ବ୍ରାହ୍ମଣୀ, ଶାଳନ୍ଦୀ, ସୁବର୍ଣ୍ଣରେଖା ପ୍ରଭୃତି ନଦୀ ଗୁଡ଼ିକ ହେଉଛନ୍ତି ଏହି ଭଂଜଭୂମିର ପ୍ରାଣ ସଞ୍ଚାରକ ।

ଭଂଜ ବଂଶୋତ୍ପତ୍ତି ସମ୍ବନ୍ଧରେ ଲେଖାଅଛି ଯେ ଏହି ବଂଶର ଆଦ୍ୟ ନରପତି "ଗଣ୍ଡଦଣ୍ଡ ବୀରଭଦ୍ର ଆଦି ଭଂଜ" ଥିଲେ । ତାହାଙ୍କର ଶାସନ କାଳ ନିର୍ଦ୍ଦିଷ୍ଟ ରୂପେ ଜଣାଯାଇନଥିଲେ ମଧ୍ୟ ଐତିହାସିକମାନେ ଏହା ନବମ ଶତାବ୍ଦୀରେ ହୋଇଥିବା ମନେ କରନ୍ତି । ସେମାନଙ୍କ ମତରେ ଗୁଡ଼ିଏ ଶାଖାରେ ବିଭକ୍ତ ହୋଇ ଭଂଜ ରାଜାମାନେ ଓଡ଼ିଶାର କେନ୍ଦୁଝର, ମୟୂରଭଂଜ, ଅନୁଗୁଳ, ବୌଦ-ସୋନପୁର, ଘୁମୁସର, ଦଶପଲ୍ଲା ଓ କନିକା ପ୍ରଭୃତି ଦେଶୀୟ ରାଜ୍ୟ ଗୁଡ଼ିକରେ ରାଜତ୍ୱ କରୁଥିଲେହେଁ ମୂଳ ଭଂଜ ରାଜବଂଶ ପ୍ରଥମେ ମୟୂରଭଂଜ-କେନ୍ଦୁଝର ବା ଆଦିପୁର ରାଜ୍ୟରେ ବସବାସ କରି ସେମାନଙ୍କର ତାମ୍ର ଶାସନ ଗୁଡ଼ିକ ବାମନଘାଟି

ଦେଉଳୀ, ଖଣ୍ଡ, ଉଖୁଣ୍ଡା, କେଶରୀ ଓ ଆଦିପୁର ଠାରୁ ପ୍ରଦାନ କରିଥିଲେ । ଏହି ସବୁ ତାମ୍ର ଶାସନ ପଠନରୁ ଜଣାଯାଏ ଯେ ଭଞ୍ଜବଂଶର ଆଦି ନରପତି "ଗଣଦଣ୍ଡ ଆଦିଭଞ୍ଜ ମୟୂର ଅଣ୍ଡାରୁ ଜାତ ହୋଇ ବଶିଷ୍ଠ ଋଷିଙ୍କ ଆଶ୍ରମରେ ପାଳିତ ହୋଇଥିଲେ । :

"ଆସୀତ୍ ମୟୂରାଣ୍ଡଂ ଭିତ୍ୱା ଗଣଦଣ୍ଡ ବୀରଭଦ୍ରାଖ୍ୟ ପ୍ରଖ୍ୟାତ ନିଧନ ଦକ୍ଷୋ ବଶିଷ୍ଠ ମୁନି ପାଳିତ ନମସ୍ତଃ ।"

ଆଦି ଭଞ୍ଜଙ୍କ ରାଜ୍ୟର ନାମ ଆଦିପୁର ଥିଲା । ଏହି ଆଦିପୁର ବୈତରଣୀ ଓ ଭଇଁରବଭଙ୍ଗୀ ନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ବର୍ତ୍ତମାନ ଏହା ରହୁଆଁ ଥାନାର ଅନ୍ତର୍ଗତ ଅଟେ । ରାଜା ଆଦି ଭଞ୍ଜ "ଭବଭବାମାଶଃ" ଥିବାର ନିଦର୍ଶନ ସ୍ୱରୂପ ସେଠାରେ ଏକାଦଶ ରୁଦ୍ର ନାମରେ ୧୧ ଗୋଟି ଶିବ ମନ୍ଦିର ରହିଅଛି । ଏହି ଆଦି ଭଞ୍ଜଙ୍କ ରାଜ୍ୟ ଉତ୍ତରରେ ଗଙ୍ଗା ଠାରୁ ଦକ୍ଷିଣରେ ମହେନ୍ଦ୍ର ପର୍ବତ ପର୍ଯ୍ୟନ୍ତ ବ୍ୟାପ୍ତ ଥାଇ ସମଗ୍ର ଉତ୍ତର ପୂର୍ବ ଭାରତରେ ଏକ ବିଶାଳ ଗଣରାଷ୍ଟ୍ର ଗଠିତ ହୋଇଥିଲା । ମାତ୍ର ତାହାଙ୍କର ନିର୍ଦ୍ଦିଷ୍ଟ ଶାସନକାଳ ଏପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇପାରି ନାହିଁ ।

## ଗଣ ଦଣ୍ଡପତି

ଗଣ ଦଣ୍ଡପତି ଶବ୍ଦର ଅର୍ଥ ହେଉଛି ଗଣତନ୍ତ୍ର ରକ୍ଷାକର୍ତ୍ତା । ଭଞ୍ଜ ରାଜବଂଶର ପ୍ରତିଷ୍ଠାତା ରାଜା ବୀରଭଦ୍ର ଆଦି ଭଞ୍ଜ ଗଣ ଦଣ୍ଡପତି ଥିବାରୁ ଭଞ୍ଜ ରାଜବଂଶ ପ୍ରତିଷ୍ଠା ମୂଳରେ ଯେ ଗଣତନ୍ତ୍ର ଚେତନା ନିହିତ ଥିଲା ଏହା ବେଶ ବୁଝାଯାଏ । ଏଥିରୁ ଅନୁମିତ ହୁଏ ଯେ ରାଜ୍ୟର ସାଧାରଣ ପ୍ରଜା ମିଳିତ ଭାବରେ ଜଣେ ଗୁଣସମ୍ପନ୍ନ ସୁଦକ୍ଷ ବ୍ୟକ୍ତିଙ୍କୁ ସମାଜର ରକ୍ଷଣାବେକ୍ଷଣ ନିମନ୍ତେ ନିଯୁକ୍ତ କରୁଥିଲେ । ତତ୍ପରେ ସେହି ମନୋନୀତ ବ୍ୟକ୍ତି ଯଶ ଓ ନିଜର କ୍ଷମତା କ୍ରମଶଃ ବିସ୍ତାର କରି ଶେଷରେ ରାଜା ବା ମହାରାଜା ଉପାଧିରେ ଭୂଷିତ ହେଉଥିଲେ । ପୃଥିବୀର ମାନବ ଜାତିର ଇତିହାସରେ ରାଜାର ସୃଷ୍ଟି ଏହିପରି ଗଣ ଚେତନାରୁ ସୃଷ୍ଟି ହୋଇଥିବା ମନେହୁଏ ।

ଭଞ୍ଜଭୂମିର ଆଦିମ ଅଧିବାସୀ ଭୂୟାଁ ମାନଙ୍କର ରାଜନୈତିକ ଚେତନାରୁ ଭଞ୍ଜ ରାଜବଂଶର ଶାସନତନ୍ତ୍ର ସ୍ଥାପିତ ହୋଇଥିବା ଜଣାଯାଏ । କାରଣ ପ୍ରାଚୀନ କାଳରୁ ରାଜ୍ୟ ଗଠନର ମୂଳଭିତ୍ତି ବିବାଦ ଓ ବ୍ୟକ୍ତିଗତ ସମ୍ପତ୍ତି ନାମକ ଦୁଇ-ଗୋଟି ପ୍ରତିଷ୍ଠାନ ଉପରେ କେନ୍ଦ୍ରୀଭୂତ ହୋଇ ଆସିଛି ।

ରାଜଶକ୍ତିର ଉତ୍ପତ୍ତି ଏହି ଦୁଇଗୋଟି ମୌଳିକ ପ୍ରତିଷ୍ଠାନ ପାଇଁ ସୃଷ୍ଟି ହୋଇ-ଥାଏ । ତେଣୁ ରାଜଶକ୍ତି ଓ ସମାଜ ମାନବ ସହିତ ଯୁଗପତ୍ ଅବସ୍ଥିତ । ସମାଜକୁ ରକ୍ଷା କରିବାକୁ ହେଲେ ଏବଂ ସାମାଜିକ ବୃଦ୍ଧି ସମୃଦ୍ଧ କାର୍ଯ୍ୟରେ ପରିଣତ ହେଲେ ଗୋଟିଏ ରାଜଶକ୍ତିର ଆବଶ୍ୟକ ପଡ଼େ । ପ୍ରଜାଙ୍କୁ ପାଳନ କରିବା ରାଜଶକ୍ତିର

ଆବଶ୍ୟକ ପଡେ । ପ୍ରଜାଙ୍କୁ ପାଳନ କରିବା ରାଜଶକ୍ତିର ଧର୍ମ ଅଟେ । ତେଣୁ ପ୍ରାଚୀନ ମାନବ ସମାଜରେ ଲୋକେ ସମାଜର ତଥା ବ୍ୟକ୍ତିର ସୁରକ୍ଷା ନିମନ୍ତେ ଜଣେ ବିନୟ ଗୁଣ ସମ୍ପନ୍ନ ବଳବାନ ବ୍ୟକ୍ତିଙ୍କୁ ସେମାନଙ୍କର ନିର୍ବାଚିତ ରାଜା ରୂପେ ମାନୁଥିଲେ । ଏହି ବ୍ୟବସ୍ଥା ବସ୍ତୁତଃ ଗୋଟିଏ ଜାତି, ଗୋଷ୍ଠୀ ବା ପରିବାରକୁ ନେଇ ଗଠିତ ହୋଇଥିଲା । ପ୍ରଜାଗଣଙ୍କର ସିମ୍ପୂର୍ଣ୍ଣ ସମ୍ମତିରେ ଯେଉଁ ବ୍ୟକ୍ତିଙ୍କର ପ୍ରାଧାନ୍ୟ ପ୍ରତିଷ୍ଠା କରା ଯାଇଥିଲା ତାହାଙ୍କୁ ଗୋଷ୍ଠୀର ମଙ୍ଗଳ ଉଦ୍ଦେଶ୍ୟରେ ପ୍ରୟୋଗ କରିବା ପାଇଁ ସେହି ଜାତି ବା ଗୋଷ୍ଠୀର କେତେକ ମୁଖ୍ୟ ବ୍ୟକ୍ତିଙ୍କୁ ନେଇ ଗୋଟିଏ ପରାମର୍ଶଦାତା କମିଟି ବା ମନ୍ତ୍ରୀସଭା ରହୁଥିଲା । ଏହାପରେ ଏକ ଗଣସଂସ୍ଥା ଦରବାରରେ ଗୋଷ୍ଠୀ ପରାମର୍ଶଦାତା ମାନେ ନିଜ ନିଜ ଜାତି ଗୋଷ୍ଠୀ, ବର୍ଣ୍ଣ, ଧର୍ମ, କର୍ମ ସାମାଜିକ ଆଚାର ବ୍ୟବହାର ଓ ବ୍ୟକ୍ତିଗତ ସମ୍ପତ୍ତି ସୁରକ୍ଷା ବିଷୟରେ ଗଣ ଦଣ୍ଡପତିଙ୍କୁ ବହୁତ ପରାମର୍ଶ ଦେଉଥିଲେ । ଏହା ଦ୍ୱାରା ଗଣ ଦଣ୍ଡପତି ନିଜ ରାଜ୍ୟ ମଧ୍ୟରେ ବାସ କରୁଥିବା ବିଭିନ୍ନ ଜାତିର ପ୍ରଜାମାନଙ୍କ ସମ୍ବନ୍ଧରେ ସମ୍ପୂର୍ଣ୍ଣ ସଚେତନ ରହି ବହୁତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଥିଲେ ।

ଗଣ ଦଣ୍ଡପତିଙ୍କ ଶାସନ ଅଧୀନରେ ବାସ କରୁଥିବା ପ୍ରଜାଗଣ ସମାଜରେ ଏକତା ରହି ଶୃଙ୍ଖଳିତ ଜୀବନ ଯାପନ ପ୍ରଣାଳୀରେ ତଦାରଖ କରିବା ପାଇଁ ଜଣେ ବ୍ରହ୍ମା ନିଯୁକ୍ତ ରହୁଥିଲେ । ଏହି ବ୍ରହ୍ମା ବଶିଷ୍ଠ ଗୋତ୍ରୀୟ ବ୍ରାହ୍ମଣ ଥିଲେ । ସେ ରାଜାଙ୍କର ଧର୍ମ ପ୍ରତିନିଧି ରୂପେ ଦଣ୍ଡଦଣ୍ଡ ବିଧି ଅନୁଯାୟୀ ସାମାଜିକ ରୀତି ନିୟମ ଗୁଡ଼ିକ ତଦାରଖ କରୁଥିଲେ ।

ଅପର ପକ୍ଷରେ ଗଣଦଣ୍ଡପତି ଫୌଜଦାରୀ ମାମଲା ଗୁଡ଼ିକ ବାଦୀ ପ୍ରତିବାଦୀଙ୍କ ଯବାବ ସୁଆଲ ଶୁଣିବା ପରେ ରାଜା ନିଜ ଇଚ୍ଛାରେ ଯେଉଁ ବିଚାର ଦେଉଥିଲେ ତାହା "ଇଚ୍ଛାଦଣ୍ଡ" ନାମରେ ଖ୍ୟାତ ଥିଲା । ଏହି ଇଚ୍ଛାଦଣ୍ଡ ପାଇ ପ୍ରଜାମାନେ ସନ୍ତୋଷ ରହୁଥିଲେ । ସେତେବେଳେ ପ୍ରଚଳିତ ଗଣଦଣ୍ଡପତି ଶାସନ ବ୍ୟବସ୍ଥାନୁଯାୟୀ ରାଜା ପ୍ରଜା ଓ ରାଜପ୍ରତିନିଧି ମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସମ୍ପର୍କ ରହୁଥିଲା । ଏହି ରାଜପ୍ରତିନିଧି ମାନେ ରାଜାଙ୍କ ଆଜ୍ଞାକୁ ମାନିନେଇ ସମାଜରେ କାର୍ଯ୍ୟକାରୀ କରାଉଥିଲେ ଏବଂ ଲୋକ ସମାଜର ଆପତ୍ତି ଅଭିଯୋଗ ଗୁଡ଼ିକୁ ରାଜ ଦରବାରରେ ଉପସ୍ଥାପନ କରି ସମାଧାନ କରାଇ ଦେଉଥିଲେ । ଏମାନେ ହିଁ ସମାଜରେ ଦୁଇଧାର ତରବାରୀ ରୂପେ ବ୍ୟବହୃତ ହେଉଥିଲେହେଁ ଆଜିକାଲିର ଲୋକପ୍ରତିନିଧିଙ୍କ ପରି ପ୍ରଜାଠାରୁ ଚାନ୍ଦା କାଟୁ ନଥିଲେ । ଏମାନେ ଏହି ରାଜପ୍ରତିନିଧି ମାନେ ପୁରୁଷାନୁକ୍ରମିକ ରାଜ କାର୍ଯ୍ୟ ସମ୍ପାଦନାରେ ନିଯୁକ୍ତ ରହିଥିବାରୁ ଏବଂ ପ୍ରତ୍ୟେକ ଗୋଟିଏ ଗୋଟିଏ ଜାତି ବା ଗୋଷ୍ଠୀର ସରଦାର ଥିବାରୁ ରାଜାଙ୍କ ଆଦେଶକୁ ସହଜରେ ଲୋକଙ୍କ ପାଖରେ ପହଞ୍ଚାଇ ଦେଉଥିଲେ । ତାହା ଦ୍ୱାରା ରାଜା ପ୍ରଜାଙ୍କ ମଧ୍ୟରେ ସୁସମ୍ପର୍କ ରହୁଥିଲା ।

ପ୍ରାଚୀନ ସମାଜରେ ଜାତି, ଧର୍ମ, ବର୍ଣ୍ଣ ଚ୍ୟୁତ, ସ୍ନାନ, ଶୌଚ, ଶୁଦ୍ଧି-ବିଧି, ବିବାହ-ବ୍ରତ, ସ୍ପୃଶ୍ୟ-ଅସ୍ପୃଶ୍ୟ ପ୍ରଭୃତି ନିୟମର ଭାବରେ ଗ୍ରାମାଧିପତିଙ୍କ ଦ୍ଵାରା ସୁରକ୍ଷିତ ହେଉଥିଲା । ସେ ତାଙ୍କର ବେତନ ସ୍ୱରୂପ ଗୋଟିଏ ହଳର ଚାଷ ପରିମାଣ ଜମି ନିଷ୍କର ଭୋଗ କରୁଥିଲେ ଓ ମାଗଣାରେ ଜଙ୍ଗଲଜାତ ଦ୍ରବ୍ୟ ବ୍ୟବହାର କରୁଥିଲେ । ସେ ସମୟରେ କର ବୋଲି କିଛି ନଥିଲା । ପଶୁ ଓ ସ୍ୱର୍ଣ୍ଣ ମୂଲ୍ୟର ଷଷ୍ଠ, ଅଷ୍ଟମ ବା ଦ୍ୱାଦଶ ଭାଗ କର ସ୍ୱରୂପ ଗ୍ରହଣ କରାଯାଉଥିଲା । କାରିଗର ଶିଳ୍ପୀ ମାନଙ୍କ ପ୍ରତି ମାସରେ ଏକ ଦିନର କାର୍ଯ୍ୟ କର ସ୍ୱରୂପ ଗ୍ରହଣ କରାଯାଉଥିଲା । ଅର୍ଥ ପରିବର୍ତ୍ତେ ଶସ୍ୟ, ପଶୁ, ସ୍ୱର୍ଣ୍ଣ ଓ ଶ୍ରମକୁ କର ସ୍ୱରୂପ ଗ୍ରହଣ କରାଯାଉ ଥିଲା ।

## ଶାସନ କାର୍ଯ୍ୟ

ଶାସ୍ତ୍ରାଭିଜ୍ଞ ବ୍ରାହ୍ମଣ ଓ ମନ୍ତ୍ରଣା କୁଶଳୀ ମନ୍ତ୍ରୀ ମାନେ ରାଜାଙ୍କର ବିଚାର ସଭାରେ ବସୁଥିଲେ । ବ୍ରାହ୍ମଣ ମାନେ ଅଭିଯୋକ୍ତାଙ୍କର ଓ ମନ୍ତ୍ରୀମାନେ ଜୁରିର କାର୍ଯ୍ୟ କରୁଥିଲେ । ରାଜା ସ୍ୱୟଂ ଦରବାରରେ ବସି ବିଚାର କରୁଥିଲେ । ମାତ୍ର ରାଜ୍ୟର ସବୁ ସ୍ଥାନରେ ରାଜାଙ୍କର ଉପସ୍ଥିତି ଅସମ୍ଭବ ହେଉଥିବାରୁ ସୁବିଜ୍ଞ ବ୍ରାହ୍ମଣମାନେ ବିଚାର କାର୍ଯ୍ୟରେ ନିଯୁକ୍ତ ରହୁଥିଲେ । ରାଜ ଦରବାରରେ ଅପରାଧୀର ଦଣ୍ଡାଦେଶ ହେଉଥିଲା ଏବଂ ପୁରୋହିତ ସଭାରେ ଅପରାଧୀର ପ୍ରାୟଶ୍ଚିତ ହେଉଥିଲା । ମିଥ୍ୟା ସାକ୍ଷ୍ୟ ପାଇଁ କଠିନ ଦଣ୍ଡର ବ୍ୟବସ୍ଥା ଥିଲା ।

ବ୍ରାହ୍ମଣ ସଭାରେ କେବଳ ଫୌଜଦାରୀ ମୋକଦ୍ଦମାର ବିଚାର ହେଉଥିଲା ସମ୍ଭବତଃ ଦଣ୍ଡର କଠୋରତା ହ୍ରାସ ପାଇଁ ବ୍ରାହ୍ମଣ ବିଚାର ସଭାର ଉତ୍ପତ୍ତି ହୋଇଥିଲା । କୌଣସି ଅପରାଧୀ ଏହି ବ୍ରାହ୍ମଣ ସଭାରେ ଦୋଷ ସ୍ୱୀକାର କରି ରାଜକୀୟ କଠୋର ଦଣ୍ଡରୁ ନିଷ୍କୃତି ଲାଭ କରୁଥିଲା । ବାଦୀ ପ୍ରତିବାଦୀ ବା ସାକ୍ଷୀଙ୍କର କୌଣସି ଦରକାର ନଥିଲା । ବ୍ରାହ୍ମଣ ପୁରୋହିତ ଜାତି କୂଳଧର୍ମ, ଶ୍ରେଣୀଧର୍ମ ଓ ଜାନପଦ ଧର୍ମ ପ୍ରତି ସର୍ବଦା ତୀକ୍ଷଣ ଦୃଷ୍ଟି ଦେଉଥିଲେ ।

ଗଣଦଣ୍ଡପଦ୍ଧତି ଶାସନ କାଳରେ ଅପରାଧ ଗୁରୁତର ନିରାକରଣ ପାଇଁ ଭର୍ତ୍ସନା, ବାକ୍‌ଦଣ୍ଡ, ଧିକ୍‌ଦଣ୍ଡ, ଧନଦଣ୍ଡ ଓ ବଧଦଣ୍ଡ (ନିର୍ବାସନ, ବ୍ରହ୍ମଅଙ୍କନ ଅଙ୍ଗଚ୍ଛେଦନ ଓ ପ୍ରାଣନାଶ) ପ୍ରଧାନ ଥିଲା ।

ପ୍ରାଚୀନ ସମାଜରେ ବ୍ୟବସାୟ ଜାତି ଧର୍ମ ଉପରେ ପର୍ଯ୍ୟବସିତ ଥିଲା । ବ୍ରାହ୍ମଣ ମାନେ ବେଦ କର୍ମ କରିବା, କ୍ଷତ୍ରିୟ ମାନେ ରାଜ୍ୟ ରକ୍ଷା କରିବା, ବୈଶ୍ୟ ମାନେ ଶିଳ୍ପବାଣିଜ୍ୟ, ପଶୁପାଳନ ଓ କୃଷିକର୍ମ କରିବା ଏବଂ ଶୁଦ୍ରମାନେ ଏହି ତିନି ଜାତିର ସେବା କରିବା ବ୍ୟବସ୍ଥା ଥିଲା । ଏହି ପରିପ୍ରେକ୍ଷୀରେ ଖିଚିଙ୍ଗ ଭୂମି କେନ୍ଦୁଝରର ଆଦିମ ଅଧିବାସୀ ଭୂୟାଁ ମାନଙ୍କର ଗଣତାନ୍ତ୍ରିକ ଚେତନାରୁ ଭଞ୍ଜ ରାଜତନ୍ତ୍ର ସ୍ଥାପିତ ହୋଇଥିବା ଜଣାଯାଏ । ଏହି ତଥ୍ୟର ପ୍ରମାଣ ସ୍ୱରୂପ କେନ୍ଦୁଝରରେ ନୂତନ ରାଜା ଅଭିଷେକ ହେବା ପୂର୍ବରୁ ସେ ପ୍ରଥମେ ଭୂୟାଁ ସରଦାର ପିଠିରେ ବସି ଅଭିଷେକ

ହୋଇଥାନ୍ତି । ଏହି ବ୍ୟବସ୍ଥା ରାଜା ଜ୍ୟୋତି ଭଞ୍ଜଙ୍କ ଠାରୁ ଆରମ୍ଭ ହୋଇ ଅଦ୍ୟାବଧି ରହିଅଛି । ପୃଥିବୀର ମାନବ ସମାଜରେ ଏହିପରି ବ୍ୟବସ୍ଥା ଅନ୍ୟତ୍ର କୁତ୍ରାପି ଅଛି କି ନା ସନ୍ଦେହ ? କେନ୍ଦୁଝରରେ ଭଞ୍ଜ ରାଜତନ୍ତ୍ର ପ୍ରତିଷ୍ଠା ବିଗରେ ଭୂୟାଁ ମାନଙ୍କର ସବିଶେଷ ଅବଦାନ ଥିବା କଥା ଏଥିରୁ ପ୍ରମାଣିତ ହେଉଅଛି । ଜନଶ୍ରୁତି ଅଛିଯେ ଭଞ୍ଜ ରାଜବଂଶର ପ୍ରତିଷ୍ଠାତା ଗଣଦଣ୍ଡପତି ବୀରଭଦ୍ର ଆଦି ଭଞ୍ଜଙ୍କର କନିଷ୍ଠ ଭ୍ରାତା ଜ୍ୟୋତି ଭଞ୍ଜଙ୍କୁ ଭୂୟାଁମାନେ ଘେରାଇ ଆଣି କେନ୍ଦୁଝରରେ ରାଜା କରାଇଥିଲେ । ଏହି ଜ୍ୟୋତି ଭଞ୍ଜଙ୍କ ଠାରୁ କେନ୍ଦୁଝର ରାଜ୍ୟ ଗଠିତ ହୋଇଥିବା କଥା ଐତିହାସିକ କ୍ଷେତ୍ର ମୋହନ ମିଶ୍ର ଲେଖି ଅଛନ୍ତି । ଭଞ୍ଜ ମହୋଦୟଙ୍କ ନାଟକରେ ଲେଖାଅଛି :—

"ଆଦୌ ଶ୍ରୀକେନ୍ଦୁଝରସ୍ୟାମିହ ନୃପତିରଭୂତ୍ ଜ୍ୟୋତିରାଦିତ୍ୟ ଭଞ୍ଜ"

କେନ୍ଦୁଝରର ନିଜସ୍ବ ସାହିତ୍ୟ କୃତି ଅମ୍ବିକା ବିଳାସ କାବ୍ୟରେ ରାଜକବି ପ୍ରତାପ ବଳଭଦ୍ର ନାରାୟଣ ଭଞ୍ଜ କେନ୍ଦୁଝର ରାଜ୍ୟ ବର୍ଣ୍ଣନାରେ ଲେଖିଛନ୍ତି—

ଅର୍କ ବଂଶେ ଜାତ  କ୍ଷିତିଏ ବିଦିତ
ଭଞ୍ଜ ସଜ୍ଞା କ୍ଷିତି ଖ୍ୟାତ
ଅସି ବହୁ କାଳ  ଯେତୁ କେନ୍ଦୁଝର
ରାଜ୍ୟେ ହେଲେ ନରନାଥ
ଅନୁ ପୁରୁଷେ  ପୃଥ୍ୱୀକି ଭୋଗ କଲେ
ଯଥାବିଧି ରାଜ ଗୁଣେ ।

କେନ୍ଦୁଝର ରାଜ୍ୟର ଭୌଗଳିକ ଅବସ୍ଥିତି ହେଉଛି :—

ଅମ୍ବୁନିଧି ତଟ ବଟ ନିକଟେ
ପ୍ରକଟ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ର ଈଶେ ।
ଅଛି ଏହି ପୁଣ୍ୟ କ୍ଷେତ୍ର  ଉତ୍ତରେ ସୁଚିତ୍ର
ରାଜ୍ୟ ନାମ କେନ୍ଦୁଝର
ଅଦ୍ରି ଅରଣ୍ୟ ଆବୃତ  ଅତ୍ୟନ୍ତ ନିଶ୍ଚିନ୍ତ
ଶତ୍ରୁ ଅଲଙ୍ଘିତ ଦୁର୍ଗ ।
ଅନୁକମ୍ପା ମାତ୍ର କରି  ତ୍ରୈଲୋକ୍ୟ ଗୋସାଇଁ
ବଳଭଦ୍ର ପ୍ରଭୁ ସର୍ବଂସହେ
ଅବଜ, କର୍ପୂର; ସୁନ୍ଦର  ଆନନ୍ଦ କନ୍ଦର
ଅଟନ୍ତି ଦେବାଧିଦେବ ରାଜେ ।
ଅନ୍ତର୍ଯ୍ୟାମୀ ଅଭୀଷ୍ଟ  ଫଳ ଦାତା କଷ୍ଟ
ନାଶନ ମଳ ବସନ ବଳ
ଅନ୍ୟ ଆଶ୍ରା କରି ଦୂର  ତାଙ୍କ ଶ୍ରୀ ପୟର
ବଳଭଦ୍ର ଭଞ୍ଜ କରେ ମୁକ୍ ।

ଅଖିଳ ପ୍ରସିଦ୍ଧି     ବୈତରଣୀ ନଦୀ
ଯେଉଁ ସ୍ଥଳରୁ ଜନ୍ମୁଛି
ଅନ୍ଧକର ଚଣ୍ଡକର     ଦଣ୍ଡ ଖଣ୍ଡ
ନାମ ଗୋନାସିକା ତୀର୍ଥ

\+     \+     \+

ଅଘ ସଂଘଟନ ପ୍ରାଣୀ     ମାନଙ୍କ ନିଶାଣୀ
ସ୍ୱର୍ଗ ଅପବର୍ଗ ମାନଙ୍କୁ ଯେ,
ଅମ୍ବୁ ସ୍ନାନ ପାନ କରି     ସୁଖେ କେନ୍ଦୁଝର
ନୃପ ବଳଭଦ୍ର ଭଞ୍ଜ ମତଜ ।"

ଏହି ହେଉଛି ମୋର ମାନସୀ "ଶ୍ରୀଭଞ୍ଜଭୂମି କେନ୍ଦୁଝର" । ଏହି ମନୋଜ୍ଞ ସଂକଳନ ଶ୍ରୀକେନ୍ଦୁଝର ରାଜ୍ୟ ଗଠନ ଓ ରାଜା ଜ୍ୟୋତି ଭଂଜଙ୍କ ଠାରୁ ଭଂଜ ରାଜ-ବଂଶର ଶାସନ ତନ୍ତ୍ର ବିଷୟରେ ସମ୍ୟକ ଆଲୋଚନା କରିବା ପୂର୍ବରୁ ଓଡ଼ିଶାର ଭଂଜ ରାଜବଂଶର ତଥାକଥିତ ରାଜପୁତ ବଂଶଧରତ୍ୱ ବିଷୟରେ ଆଲୋକପାତ କରିବା ।

ଗୌରବ ମାଳିମା ଓଡ଼ିଶାର ପ୍ରଖ୍ୟାତ ଭଂଜ ରାଜନ୍ୟବର୍ଗ ୧୯୧୦ ଖ୍ରୀଷ୍ଟାବ୍ଦରେ ଇଂରେଜ ସରକାରଙ୍କୁ ଦେଇଥିବା ନିଜ ବଂଶର କୁଷିନାମାରେ ନିଜକୁ ରାଜପୁତ ବଂଶଧର ବୋଲି ଉଲ୍ଲେଖ କରି ବିଭିନ୍ନ କାଳ୍ପନିକ ଗଳ୍ପର ଅବତାରଣା କରିବାକୁ ଭୁଲିଯାଇ ନାହାନ୍ତି । ଐତିହାସିକ ଘଟଣାବଳୀରେ ଏହି ସବୁ କଳ୍ପନା ନିତାନ୍ତ ଅସାର ଓ ଅସମର୍ଥନୀୟ ଅଟେ ।

ଐତିହାସିକ ରାଖାଲଦାସ ବାନାର୍ଜୀ ମହୋଦୟ ଓଡ଼ିଶାର ରାଜନ୍ୟ ବର୍ଗଙ୍କର ରାଜପୁତ ବଂଶଧରତ୍ୱର ସମାଲୋଚନା ନିମ୍ନମତେ କରିଅଛନ୍ତି ।

ଓଡ଼ିଆ ରାଜ ମାନେ ନିଜନିଜର ରାଜପୁତ ବଂଶଧରତ୍ୱ ବୋଲାଇବା ପାଇଁ ଏହି ଯେଉଁ ଐକାନ୍ତିକ ଇଚ୍ଛା ମୋ ମତରେ ତାହାର ଏକମାତ୍ର କାରଣ ଏହିଯେ, ସପ୍ତଦଶ ଶତାବ୍ଦୀରେ ମୋଗଲ ଶାସନ ଅଧୀନରେ ରାଜପୁତମାନେ ଅତି ବହୁଳ ସଂଖ୍ୟାରେ ଯୋଦ୍ଧା ଓ ପେଷାଦାର ସୈନିକ ରୂପେ ନିଜର ଯଶ ବିସ୍ତାର କରିଥିଲେ । ମାଳବର ରାଜପୁତମାନେ ଅହ୍ମଦାବାଦ ଓ ଗୋଲକୁଣ୍ଡାର ପରାକ୍ରାନ୍ତ ରାଜାମାନଙ୍କର ସେନାବାହିନୀରେ କାର୍ଯ୍ୟକରି ଜୀବିକାର୍ଜ୍ଜନ କରିବା ସଙ୍ଗେ ସଙ୍ଗେ ସାମରିକ ଖ୍ୟାତି ଅର୍ଜ୍ଜନ କରିଥିଲେ । ତେଣୁ ମୋଗଲ ସାମ୍ରାଜ୍ୟରେ ରାଜପୁତ ଜାତିର ବୀରତ୍ୱରେ ଆକୃଷ୍ଟ ହୋଇ ଦେଶୀୟ ରାଜାମାନେ ନିଜ ବଂଶ ସେହି ବୀର ରାଜପୁତ ବଂଶରୁ ଉତ୍ପତ୍ତି ହୋଇଅଛି ବୋଲି ପ୍ରମାଣ କରାଯାଇଅଛି । ଏପରିକି ରାଜପୁତ ଜବାନ ଦେହରେ ରଙ୍ଗ ମାଟି ବୋଲି ହୋଇ ଅସଭ୍ୟ ଗୋଷ୍ଠୀରେ ବୁଲୁଥିବା ବେଳେ ଭାରତୀୟ ରାଜନ୍ୟବର୍ଗଙ୍କ ମଧ୍ୟରୁ ଯେଉଁ ମାନଙ୍କ ଧମନୀରେ ଆର୍ଯ୍ୟଜାତିର ଶୁଦ୍ଧତମ ରକ୍ତ

ପ୍ରକାଶିତ ହୋଇଥିଲେ, ସେମାନଙ୍କର ଆଧୁନିକ ବଂଶଧରଗଣ ଏହି ପ୍ରଚେଷ୍ଟାରେ ଯୋଗ ଦେବାକୁ ଭୁଲିଯାଇ ନାହାନ୍ତି । ଉଦାହରଣ ସ୍ୱରୂପ ଭାରତରେ ପ୍ରାଚୀନତମ ଶୁଦ୍ଧ କ୍ଷତ୍ରୀୟ ବଂଶ ରୂପେ ସୁଖ୍ୟାତି ଅର୍ଜନ କରିଥିବା ମୟୂରଭଞ୍ଜ ରାଜବଂଶର ସୂତ୍ରଧାର ମହାରାଜା ରାମଚନ୍ଦ୍ର ଭଞ୍ଜ ଦେବ ଇଂରେଜ ସରକାରଙ୍କ ନିଜ ବଂଶର ଯେଉଁ ବଂଶାବଳୀ [illegible] ଦେଇଥିଲେ ସେଥିରେ ମୟୂରଭଞ୍ଜର ଭଞ୍ଜ ରାଜାମାନେ ରାଜପୁତ ବଂଶଧର ବୋଲି ଉଲ୍ଲେଖ କରିଥିଲେ । ସେହିପରି କେନ୍ଦୁଝରର ଭଞ୍ଜ ବଂଶାବଳୀରେ ରାଜପୁତ ବଂଶଧରଙ୍କୁ ମଧ୍ୟ ସ୍ୱୀକାର କରାଯାଇଅଛି । ଉକ୍ତ ବୃକ୍ଷନାମାରେ ଜୟସିଂହଙ୍କ ପୁତ୍ର ଆଦି ଭଞ୍ଜ ଓ ଯୋଗୀ ଭଞ୍ଜ ବୋଲି ଯାହା କୁହାଯାଉଛି ତାହା ସମ୍ପୂର୍ଣ୍ଣ ଅସାର ଓ ଭ୍ରମପୂର୍ଣ୍ଣ ଅଟେ । ଏହି ସବୁ ତଥ୍ୟ ଗୁଡ଼ିକ ଯେ ସମ୍ପୂର୍ଣ୍ଣ ଅସାର ଏଥିରେ ସନ୍ଦେହ ନାହିଁ । ଭଞ୍ଜ ରାଜାମାନଙ୍କୁ ଛାଡ଼ି ଦେଲେ ଅନ୍ୟ ଛୋଟ ଛୋଟ ଗଡ଼ଜାତର ରାଜାମାନେ ମଧ୍ୟ ରାଜପୁତ ଆଭିଜାତ୍ୟ ବ୍ୟାମୋହରେ ପଡ଼ି ନିଜର ପ୍ରକୃତ ଜାତିଗୋଷ୍ଠୀକୁ ବିସ୍ମୃତ ହୋଇ ଅଛନ୍ତି ।

ଏଠାରେ ସ୍ମରଣ କରାଯାଇ ପାରେଯେ ଓଡ଼ିଶାର ଇତିହାସ ରାଜପୁତନା ଇତିହାସ ଠାରୁ କୌଣସି ଅଂଶରେ କମ୍ ଗୌରବମୟ ହୋଇନଥିବା ସମୟରେ ଆଧୁନିକ ଯୁଗର ରାଜାମାନେ ନିଜର ବଂଶଧରଙ୍କୁ ଭୁଲିଯିବା ବଡ଼ ଦୁଃଖର ବିଷୟ ଅଟେ । ହୁଏତ ପ୍ରାକୃତିକ ଅବସ୍ଥାର ବଶିଷ୍ଟତା ହେତୁ ଓଡ଼ିଶାର ବାହୁ ବିକ୍ରମ ବ... କାଳ ଯାଏଁ ପ୍ରଦେଶର ଚତୁଃସୀମା ମଧ୍ୟରେ ଆବଦ୍ଧ ଥିଲେ । ଏପରିକି ବେଳେବେଳେ ମଧ୍ୟ ମହାରାଷ୍ଟ୍ରୀୟ ଆଧିପତ୍ୟ ଓଡ଼ିଆ ରାଜା ମାନଙ୍କର କରଗତ ହୋଇଥିବା ସମୟରେ ସାରା ଭାରତ ନିଜର ସ୍ୱାଧୀନତା ହରାଇ ଯେଉଁ କାଳରେ ମୋଗଲ ଓ ଇଂରେଜ ସାମ୍ରାଜ୍ୟାଧୀନ ଥିଲା ସେତେବେଳେ ଓଡ଼ିଶା ସ୍ୱାଧୀନ ଥିଲା. ଓଡ଼ିଆମାନେ ମହାପ୍ରଭୁ ଥିଲେ ସେମାନେ ମେଷ ଦାଉ ସୈନ୍ୟରୂପେ ଅନ୍ୟର ଗୋଲାମୀ କରି ଜୀବିକାର୍ଜ୍ଜନ କରୁନଥିଲେ । ରାଜପୁତ ଜାତିର ଗୌରବ ମୁକୁଟ ରାଣା ପ୍ରତାପ ସିଂହଙ୍କର ପରାଜୟ ଓ ନି... ପତନ ହୋଇଥିଲା ବେଳେ ଦିଲ୍ଲୀର ବାଦସାହା ଆକବର ବଙ୍ଗ ବିଜୟ ନିମନ୍ତେ ସ୍ୱାଧୀନ ଓ ସୁଦୃଢ଼ ଉତ୍କଳ ରାଷ୍ଟ୍ରର ଗଜପତିଙ୍କର ସାହାଯ୍ୟପ୍ରାର୍ଥୀ ହୋଇଥିଲେ । ଇଂରେଜ ଶାସନ ସମୟରେ ସେହି ବୀରପ୍ରସୂ ଉତ୍କଳର ରାଜନ୍ୟବର୍ଗ ନିଜ ବଂଶର ପ୍ରାଚୀନ ବଂଶ ପରମ୍ପରା ଓ ଆଭିଜାତ୍ୟକୁ ଭୁଲିଯାଇ ରାଜପୁତ ଆଭିଜାତ୍ୟ ନିମନ୍ତେ ପ୍ରୟାସୀ ହୋଇଥିବା ଓଡ଼ିଶାର ରାଜନ୍ୟବର୍ଗଙ୍କର ଏକ କଳଙ୍କମୟ ଅଧ୍ୟାୟର ପରିଚୟ ଦିଏ । ଏକଥା ମନେ ରଖିବା ଉଚିତଯେ ଯେଉଁ ସମୟରେ ଓଡ଼ିଶାର ରାଜନ୍ୟବର୍ଗ ସମ୍ମାନର ହିମାଳୟ ଆରୋହଣ କରିଥିଲେ ସେତେବେଳେ ରାଜପୁତ ଜାତି ଯାଯାବର ଗୁର୍ଜ୍ଜର ଅଥବା ମ୍ଲେଚ୍ଛ ହୂଣ ଛଡ଼ା ଅନ୍ୟ କିଛି ନଥିଲେ । ଏହା ଇତିହାସର ଅଭ୍ରାନ୍ତ ବାଣୀ ଅଟେ । ଏପରି କ୍ଷେତ୍ରରେ ଭାରତୀୟ ରାଜ କୁଳର ମଉଡ଼ମଣି ଭଞ୍ଜ ରାଜାମାନେ ନିଜକୁ ବଂଶ ରାଜପୁତ ବଂଶରୁ ଉତ୍ପତ୍ତି ହୋଇଥିବା କଥା ଦାବୀ କରିବା ଅଜ୍ଞାନତା ବ୍ୟତୀତ ଆଉ କଣ ହୋଇପାରେ ? ଏହି ପୃଷ୍ଠଭୂମିରେ କେନ୍ଦୁଝର ରାଜ୍ୟ ଗଠନର ପୁରୋଧା ରାଜା ଜ୍ୟୋତି ଭଞ୍ଜଙ୍କ ଠାରୁ ପ୍ରକୃତ ଇତିହାସ ଭାଗ ଆରମ୍ଭ କରିବା ।

— ୦ —